# ଇନ୍ଦ୍ରଂକ ମର୍ତ୍ତ୍ୟଗସ୍ତ

ବୈକୁଣ୍ଠ ତ୍ରିପାଠୀ



ଓଡ଼ିଶା ବୁକ୍ ଷ୍ଟୋର

# ଇନ୍ଦ୍ରଙ୍କ ମର୍ତ୍ତ୍ୟଗସ୍ତ

ଲେଖକ :
ବଟକୃଷ୍ଣ ତ୍ରିପାଠୀ, ଆଇ. ପି. ଏସ୍

ପ୍ରକାଶକ :
ବିଜୟ ଶଙ୍କର ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ-୨

ପ୍ରଚ୍ଛଦ : ଅସିତ୍ ମୁଖାର୍ଜୀ

ପ୍ରଥମ ପ୍ରକାଶ :
ରଥଯାତ୍ରା—୧୯୯୪

ମୁଦ୍ରଣ :
ଗୁରୁପ୍ରସନ୍ନ ପ୍ରେସ୍
ଝୋଲସାହି (ନଉ କଲୋନୀ), କଟକ-୧

ମୂଲ୍ୟ :
ସାଧାରଣ—ପଇଁତିରିଶ ଟଙ୍କା
ଶୋଭନ—**ଚାଳିଶ ଟଙ୍କା**

**INDRANKA MARTYAGASTA**

Written by
Batakrishna Tripathy, I. P. S

Published by
Bijoy Shankar Patra
Orissa Book Store
Binod Behari, Cuttack-2

1st Edition : 1994

Price : Rs. 40/-

ISBN 81-7400-039-9

ମୋତେ ବିବିଧ ବିଷୟରେ ଲେଖିବା, ଚଳଚ୍ଚିତ୍ରରେ ଅଭିନୟ କରିବାରେ ଯେଉଁ ମହାନ୍ ସାହିତ୍ୟିକ ଓ ସଂଗଠକଙ୍କ ପ୍ରତ୍ୟକ୍ଷ ପ୍ରେରଣା ଏଯାବତ୍ ଅଭିଭୂତ କରି ରଖିଛି, ସେଇ ପରମ ପ୍ରଜ୍ଞା-ପୁରୁଷ ସ୍ୱର୍ଗତଃ **କମଳଲୋଚନ ମହାନ୍ତିଙ୍କୁ......**

# ଭୂମିକା

ବ୍ୟଙ୍ଗ ବିଦ୍ରୂପାତ୍ମକ ରଚନା ସାହିତ୍ୟର ଏକ ଅଙ୍ଗ ବିଶେଷ । କିନ୍ତୁ ଏହା ସାହିତ୍ୟ ପାଇଁ ଯେତେ ନୁହେଁ, ସମାଜ ପାଇଁ ଏହାର ଆବଶ୍ୟକତା ଖୁବ୍ ବେଶୀ । ବିଶେଷତଃ ପ୍ରଚଳିତ ସମାଜରେ ଅବାଧ ଭାବେ ତିଷ୍ଠି ରହିଥିବା ତ୍ରୁଟି ବିଚ୍ୟୁତିକୁ ଏହା କଠିଣ ଭାବେ ଆଘାତ କରେ । ପୃଥିବୀରେ ଅଧର୍ମ ବଢ଼ିଗଲେ ଏବଂ ଧର୍ମ ହାନି ହେଲେ ଯେପରି ଭଗବାନ ନାନା ରୂପରେ ପୃଥିବୀକୁ ଅବତରି ଆସନ୍ତି, ସେହିପରି ଯେତେବେଳେ ଆମର ସାମାଜିକ ଓ ସାଂସ୍କୃତିକ ଜୀବନରେ ଘୂଣ ଧରେ, ଅନୀତି ଓ ଶଠାଚାର ବଢ଼ିଚାଲେ, ଯେତେବେଳେ ସମାଜର ପ୍ରତିଟି ଅଙ୍ଗ ଗଳିତ ଓ ସ୍ଖଳିତ ହୋଇପଡ଼େ, ଯେତେବେଳେ ରକ୍ଷକମାନେ ଛଦ୍ମବେଶ ଧରି ଭକ୍ଷକ ପାଲଟି ଯାଆନ୍ତି, ଶାସନ କଳ ହୁଗୁଳି ଯାଏ, ଯେତେବେଳେ ସର୍ବତ୍ର ଭ୍ରଷ୍ଟାଚାର, ମିଥ୍ୟାଚାର, ଅନାଚାର ଓ ଅବିଧିମାନେ ବିଧିର ଆସନ ମାଡ଼ି ବସନ୍ତି, ଯେତେବେଳେ ଚକ୍ଷୁଷ୍ମାନ୍‌ମାନେ ହଠାତ୍ ଅନ୍ଧ ବନି ନିଜେ ବାଟ ଚାଲନ୍ତି ଓ ଅପରକୁ ବାଟ ଦେଖାଇ ଚାଲନ୍ତି—ଏବଂ ପୁଣି ଯେତେବେଳେ "ଅନ୍ଧ ଅନ୍ଧେନ ନିୟମାନ" ରୀତିରେ ମୋହାନ୍ଧ ସମାଜପତିମାନେ, ହୃତବିବେକ ଅଥବା ନଷ୍ଟଦୃଷ୍ଟି ସମାଜକୁ ଘୋର ତାମସ ରାତ୍ରି ଭିତରେ ଧ୍ୱଂସ ଆଡ଼କୁ ଅଡ଼ାଇ ଚାଲନ୍ତି—ସେତେବେଳେ ବାକ୍‌ଦେବୀ ସାହିତ୍ୟ ଭିତରକୁ ଏହି ବ୍ୟଙ୍ଗ ଓ ବିଦ୍ରୂପର ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ପ୍ରତିଭାଶାଳୀ ଲେଖକମାନଙ୍କୁ ଅବତରଣ କରାଇ ଆଣନ୍ତି । ବ୍ୟଙ୍ଗ, ବିଦ୍ରୂପର ସାହିତ୍ୟ ସୃଷ୍ଟି କରିବା ଏତେ ସହଜ ନୁହଁ । ଅନେକ ସମୟରେ ଲେଖକର ବ୍ୟକ୍ତିଗତ ଈର୍ଷା, ହିଂସା, ଅସୂୟା ପ୍ରଭୃତି ଗୌଣ ଓ ଲଘୁ ମନୋବୃତ୍ତି ତା'ର ବ୍ୟଙ୍ଗାତ୍ମକ ଲେଖାକୁ ବ୍ୟକ୍ତିଗତ କୁତ୍ସାରଟନା ଅଥବା ସାମାଜିକ ଆକ୍ଷେପ ବିକ୍ଷେପରେ ପରିଣତ କରିଦିଏ । ଆଉ ମଧ୍ୟ ସ୍ୱୟଂ ଲେଖକ ସମ୍ମୁଖରେ ଏକ ସମୁଜ୍ଜ୍ୱଳ ନୀତି ଓ ଉଦାର ଆଦର୍ଶ ନଥିଲେ, ତାର ବ୍ୟଙ୍ଗାତ୍ମକ ଲେଖା ଭିତରେ ଘୋର ଅଶାଳୀନତା ଓ ନିର୍ମମ ଆକ୍ରୋଶ ମଧ୍ୟ ପ୍ରକାଶ ପାଇଯାଏ । ଉତ୍ତମ ବ୍ୟଙ୍ଗକାର ବ୍ୟକ୍ତିଗତ ହିଂସା ପ୍ରତି-ହିଂସାରୁ ଖୁବ୍ ଊର୍ଦ୍ଧ୍ୱରେ ରହିବା ଉଚିତ । ସେଥିପାଇଁ କୁହାଯାଇଛି—ଏକ ଶୁଭେଚ୍ଛା-ପ୍ରଣୋଦିତ ସରଳ ଓ ପ୍ରତ୍ୟକ୍ଷଭର୍ତ୍ସନା ନିଶ୍ଚିତ ଭାବେ ବ୍ୟକ୍ତିଗତ ଉଦ୍ଦେଶ୍ୟ-ପ୍ରଣୋଦିତ ପରୋକ୍ଷବାଚୀ ବ୍ୟଙ୍ଗ ବିଦ୍ରୂପ ଅପେକ୍ଷା ବହୁଗୁଣରେ ଉପକାରୀ ଓ ଫଳପ୍ରଦ ।

ସେଥିପାଇଁ ବିଶ୍ୱ ସାହିତ୍ୟରେ ବିଭିନ୍ନ ସମୟରେ ବହୁ ବ୍ୟଙ୍ଗ ବିଦ୍ରୂପ

ସାହିତ୍ୟ ସୃଷ୍ଟି ହୋଇଥିଲେହେଁ, ଖୁବ୍ ମୁଷ୍ଟିମେୟ ଲେଖକ ହିଁ ଏ ବିଭାଗରେ ଉଚ୍ଚ-ମାନର ସ୍ଥାୟୀ ସ୍ଥିତି ଅର୍ଜନ କରି ପାରିଛନ୍ତି । ଆମ ଓଡ଼ିଆ ସାହିତ୍ୟରେ କବିବର ରାଧାନାଥଙ୍କ "ଦରବାର" ଓ "ବିବେକୀ" ଏବଂ ବ୍ୟାସକବି ଫକୀରମୋହନଙ୍କର ବହୁ ଗଳ୍ପ ଓ ଉପନ୍ୟାସ ସେହି କ୍ଷେତ୍ରରେ ଆମ ପାଇଁ ଦେଦୀପ୍ୟମାନ ଆଲୋକ ସ୍ତମ୍ଭ ରୂପେ ଏ ଯାବତ ତିଷ୍ଠି ରହିଛନ୍ତି । ପରବର୍ତ୍ତୀ କାଳରେ ଗୋପାଳ ପ୍ରହରାଜ ଓ ଗୋଦାବରୀଶ ମହାପାତ୍ର ମଧ୍ୟ ଉତ୍କୃଷ୍ଟ ବ୍ୟଙ୍ଗ ବିଦ୍ରୂପାତ୍ମକ ସାହିତ୍ୟ ସୃଷ୍ଟି କରିବାରେ ଅଗ୍ରଗଣ୍ୟ ସ୍ଥିତିର ଅଧିକାରୀ ହୋଇ ପାରିଛନ୍ତି ।

ସାଂପ୍ରତିକ କାଳରେ ମଧ୍ୟ ବହୁ ଲେଖକ ଓ କବି ବ୍ୟଙ୍ଗବିଦ୍ରୂପକୁ ସେମାନଙ୍କ ଲେଖାରେ ଏକ ବ୍ୟାପକ ରୂପେ ବ୍ୟବହାର କଲେଣି ଏବଂ ବର୍ତ୍ତମାନ ଆମ ସମାଜର ଯାହା ଦୁରବସ୍ଥା, ସେଥିରେ ବ୍ୟଙ୍ଗ ବିଦ୍ରୂପାତ୍ମକ ସାହିତ୍ୟ ପ୍ରତି ପାଠକ ପାଠିକାମାନଙ୍କର ଖୁବ୍ ଆକର୍ଷଣ ବଢ଼ି ଯାଇଛି । ଏ ପରିପ୍ରେକ୍ଷୀରେ ଶ୍ରୀ ବଟକୃଷ୍ଣ ତ୍ରିପାଠୀଙ୍କ ଲିଖିତ ସଦ୍ୟ ପ୍ରକାଶମାନ "ଇନ୍ଦ୍ରଦେବଙ୍କ ମର୍ତ୍ତ୍ୟଗସ୍ତ" ରଚନାବଳି ସମାଜ ସଚେତନ ପାଠକ ପାଠିକାମାନଙ୍କର ପ୍ରଖର ଆଗ୍ରହ ଦୃଷ୍ଟି ଆକର୍ଷଣ କରିଛି । ଏଥିରେ ବର୍ଣ୍ଣିତ ବିଷୟଗୁଡ଼ିକ ବହୁପୂର୍ବରୁ ଜନବାର୍ତ୍ତା ନାମକ ସମ୍ବାଦ ପତ୍ରରେ ଧାରାବାହିକ ସ୍ତମ୍ଭରେ ପ୍ରକାଶ ପାଇ ଆସୁଥିଲା । ସେତିକବେଳୁ ମୁଁ ଏଗୁଡ଼ିକୁ ଖୁବ୍ ଆଗ୍ରହ ସହକାରେ ପାଠକରି ଖୁବ୍ ଆନନ୍ଦ ଅନୁଭବ କରି ଆସିଛି । ସେଗୁଡ଼ିକ ବର୍ତ୍ତମାନ ଦୁଇଟି ବୃହତ ଗ୍ରନ୍ଥରେ ସଂକଳିତ ହୋଇ ପ୍ରକାଶ ପାଉଛି ଜାଣି ଅତୀବ ଆନନ୍ଦ ଅନୁଭବ କଲି ।

ଶ୍ରୀ ପାଠୀ ଜଣେ ସ୍ୱନାମଧନ୍ୟ ଉଚ୍ଚପଦସ୍ଥ ପୋଲିସ ଅଫିସର । ତାଙ୍କ ବିଭାଗରେ ସେ ଅତ୍ୟନ୍ତ ଦକ୍ଷତାର ସହିତ କାର୍ଯ୍ୟକରି ରାଜ୍ୟବାସୀଙ୍କ ପ୍ରଶଂସାଭାଜନ ହୋଇଛନ୍ତି । ତାଙ୍କର ପ୍ରବୃତ୍ତିଗତ ଜୀବନ ସହିତ ତାଙ୍କର ବ୍ୟକ୍ତିଗତ ଜୀବନ ମଧ୍ୟ ନାନାବିଧ ରହସ୍ୟ ରୋମାଞ୍ଚପୂର୍ଣ୍ଣ ଅଭିଜ୍ଞତାରେ ଭରିତ । ଆଶ୍ଚର୍ଯ୍ୟ ଲାଗେ ଯେ, ଅପରାଧ ଓ ଅପରାଧୀଙ୍କ ନାରକୀୟ ଜଗତରେ ଅହରହ କର୍ତ୍ତବ୍ୟରତ ଥାଇ ମଧ୍ୟ ସେ ତାଙ୍କର ସ୍ୱଳ୍ପ ଅବସର ସମୟ ଭିତରେ ସାହିତ୍ୟ, ସଂସ୍କୃତି ଓ ନାନାଦି ସାମାଜିକ ଶୁଭ କାର୍ଯ୍ୟରେ ନିଜକୁ ଆବଦ୍ଧ ରଖିଥାନ୍ତି । ସମର୍ଥ ପ୍ରତିଭା ନଥିଲେ ଏହା ସହଜ ବା ସୁଲଭ ହୁଏନାହିଁ । ସେ ମଧ୍ୟ ଜଣେ ବହୁ ଶାସ୍ତ୍ରବିଦ୍ ସତ୍ୟାନ୍ୱେଷୀ ଜ୍ଞାନପ୍ରବଣ ବ୍ୟକ୍ତି । ଏଣେ ପୁଣି ତାଙ୍କର ପ୍ରଶାସନିକ ବୃତ୍ତି ତାଙ୍କୁ ପ୍ରଚଳିତ ସମାଜର ବିଭିନ୍ନ ଅବସ୍ଥା ଓ ବ୍ୟବସ୍ଥାକୁ ତନ୍ନତନ୍ନ ଭାବେ ନିରୀକ୍ଷଣ କରିବାରେ ଯଥେଷ୍ଟ ସାହାଯ୍ୟ କରିଛି । ସମାଜର ବିଭିନ୍ନ ସମସ୍ୟା ଓ ଜଟିଳ ପରିସ୍ଥିତିଗୁଡ଼ିକୁ ସେ କେବେ ଉପରଠାଉରିଆ ଭାବେ ଦେଖିନାହାନ୍ତି । ତାଙ୍କର ଦୃଷ୍ଟି ଯେପରି ତୀକ୍ଷ୍ଣ,

ସେହିପରି ବ୍ୟାପକ ଓ ନିରୂପଣକ୍ଷମ । ଆଧୁନିକ କାଳର ଓଡ଼ିଶାର ପ୍ରତିଟି ସମସ୍ୟାକୁ ସେ ଯେତିକି ବାହ୍ୟ ଆଖିରେ ଦେଖିଛନ୍ତି, ସେତିକି ମଧ୍ୟ ବୁଦ୍ଧିରେ କଳିଛନ୍ତି । ଆମର ସାମାଜିକ ଜୀବନ ଓ ପ୍ରଶାସନିକ ସଂସ୍ଥାମାନଙ୍କରେ ବର୍ତ୍ତମାନ ଯେଉଁସବୁ ଅବାଞ୍ଛନୀୟ ତ୍ରୁଟି ବିଚ୍ୟୁତି ଦେଖା ଦେଇଛି—ସେ ସବୁକୁ ସେ ଖୁବ୍ ପୁଙ୍ଖାନୁପୁଙ୍ଖ ଭାବେ ବିଶ୍ଳେଷଣ କରି ଆଲୋଚନା କରିଛନ୍ତି । ପ୍ରାୟ ଚାଳିଶିବର୍ଷ ତଳେ ଚିନ୍ତାମଣି ମିଶ୍ରଙ୍କ ଲିଖିତ "ଦେବଦେବଙ୍କ ଦୁର୍ଗତି" ଭଳି କେତେକ ବ୍ୟଙ୍ଗାତ୍ମକ ରଚନା ବ୍ୟତୀତ, ଆମର ଆଧୁନିକ ଭାଷା ସାହିତ୍ୟରେ ଏଭଳି ଖଣ୍ଡିଏ ସରସ ସାହିତ୍ୟ ପୁସ୍ତକ ଦେଖି ନାହିଁ, ଯେଉଁଥିରେ ଆମ ରାଜ୍ୟର ଉପସ୍ଥିତ କାଳର ପୁଙ୍ଖାନୁପୁଙ୍ଖ ଛବି ଏତେ ସୁନ୍ଦର ଓ ବିଦଗ୍ଧ ଭାବେ ରୂପାୟିତ ହୋଇଛି । ସମସାମୟିକ ସମାଜର ସାମଗ୍ରିକ ବିପର୍ଯ୍ୟୟର ଶତଶତ ଛବିରେ ପରିପୂର୍ଣ୍ଣ ଏହି ସଙ୍କଳନଟିର ଏକ ଐତିହାସିକ ଗୁରୁତ୍ୱକୁ ମଧ୍ୟ କେହି ଅସ୍ୱୀକାର କରିନପାରେ ।

ବହୁ ଦୃଷ୍ଟିରୁ ଶ୍ରୀ ତ୍ରିପାଠୀଙ୍କ ଲିଖିତ "ଇନ୍ଦ୍ରଦେବଙ୍କ ମର୍ତ୍ତ୍ୟଗସ୍ତ" ପୁସ୍ତକ ଦୁଇଟି ଆମଲାଗି ଏକ ଉଲ୍ଲେଖଯୋଗ୍ୟ ରଚନା । ଏହି ପୁସ୍ତକର ରଚନା ଶୈଳୀ ହାସ୍ୟ ଓ ବ୍ୟଙ୍ଗଧର୍ମୀ ହେଲେ ହେଁ, ଏହା ଏକ ଭ୍ରମଣ କାହାଣୀର ଲଳିତ ଆଙ୍ଗିକରେ ଲିଖିତ । ଏକ ବିଶେଷ କାରଣରୁ ସ୍ୱର୍ଗର ଦେବରାଜ ଇନ୍ଦ୍ର ମର୍ତ୍ତ୍ୟଭୂମିର ଓଡ୍ରରାଷ୍ଟ୍ରମଣ୍ଡଳ (ସାଂପ୍ରତିକ ଓଡ଼ିଶା)କୁ ଗସ୍ତ କ୍ରମରେ ଆସି ଏହି ରାଜ୍ୟର ବହୁ ବହୁ ଗ୍ରାମ, ସହର, ବଜାର, ତୀର୍ଥସ୍ଥଳ, ବାଣିଜ୍ୟପେଣ୍ଠ ଓ ପ୍ରଶାସନିକ ଅନୁଷ୍ଠାନମାନ ବୁଲି ଦେଖିଛନ୍ତି ଏବଂ ସେହି କ୍ରମରେ ବହୁଜାତୀୟ ଚରିତ୍ରଙ୍କ ସାନ୍ନିଧ୍ୟରେ ଆସିଛନ୍ତି । ସେ ମଧ୍ୟ ଘଟଣାକ୍ରମେ ଏହି ରାଜ୍ୟର ସାହିତ୍ୟ, ସଂସ୍କୃତି, ରାଜନୀତି, ଶିକ୍ଷାକେନ୍ଦ୍ର ଓ ଧର୍ମାନୁଷ୍ଠାନମାନଙ୍କରେ ଯୋଗ ଦେଇ ବହୁ ବିଚିତ୍ର ହାସ୍ୟକର ଅଭିଜ୍ଞତା ଲାଭ କରିଛନ୍ତି । ସେ ଅନୁଭବ କରିଛନ୍ତି ଯେ ଏଠାରେ କିପରି ସବୁ କ୍ଷେତ୍ରରେ ଘୋର ହା ହୁତାଶମୟ, ଅସହାୟ ଓ ପ୍ରତିକାରହୀନ ଅବକ୍ଷୟ ଆମର ସବୁ ସଂସ୍ଥା, ଅନୁଷ୍ଠାନ, ପ୍ରତିଷ୍ଠାନ ଓ ବ୍ୟବସ୍ଥାଦିକୁ ରାହୁପରି ଗ୍ରାସ କରିଗଲାଣି । ରାଜ୍ୟବାସୀମାନେ ସବୁ କ୍ଷେତ୍ରରେ ନିଶାଗ୍ରସ୍ତ ହେଲ ପ୍ରାୟେ କଳିକାଳ ଦ୍ୱାରା ମୋହିତ ହୋଇ ଏକ ଘୋର ଅନୀତି, ଦୁର୍ନୀତି, ପାପ ଓ ଦୁର୍ବିପାକର ଧ୍ୱଂସାତ୍ମକ ଅନ୍ଧକାର ପୂର୍ଣ୍ଣ ନାରକୀୟ ଗହ୍ୱର ଭିତରକୁ ଜାଣି ନଜାଣି ପଶି ଚାଲିଛନ୍ତି । ବହିଟି ପଢ଼ିଲେ ମନେ ହେବ, ଆମର ଉପସ୍ଥିତ ସାମାଜିକ ଜୀବନର ଏପରି କିଛି ଶୋଚନୀୟ ଦୃଶ୍ୟ ବାକି ନାହିଁ, ଯାହା ଲେଖକଙ୍କ ସଜାଗ ଦୃଷ୍ଟି-କ୍ୟାମେରା ଭିତରେ ଧରା ନପଡ଼ିଛି ।

ଏହି ଗ୍ରନ୍ଥର ଗୋଟିଏ ବଡ଼ ସଦ୍‌ଗୁଣ ହେଉଛି ଏହାର ସହଜ ସରଳ ପଠନୀୟତା । ପ୍ରଥମ ପୃଷ୍ଠାରେ ଆଖି ପଡ଼ିଲା ମାତ୍ରେ ବହିଟିକୁ ସମ୍ପୂର୍ଣ୍ଣ ନକଲା ପର୍ଯ୍ୟନ୍ତ ମନରେ ଶାନ୍ତି ଆସେନା । ତ୍ରିପାଠୀଙ୍କର ଭାଷାଶୈଳୀ ଏକାଧାରରେ ସରସ ଓ ଭାବକମଳ, ମାର୍ଜିତ ଓ ହୃଦୟସ୍ପର୍ଶୀ । ବ୍ୟଙ୍ଗ ବିଦ୍ରୂପର ସ୍ୱର ମଧ୍ୟ ଶତ୍ରୁତାପୂର୍ଣ୍ଣ ନୁହେଁ—ଶୁଭେଚ୍ଛା ମୂଳକ ଓ ବନ୍ଧୁତ୍ୱପୂର୍ଣ୍ଣ । ସେ ସ୍ୱରରେ ମଧ୍ୟ କାହାପ୍ରତି ବା କାହାପ୍ରତି ତାଙ୍କର ବ୍ୟକ୍ତିଗତ ଆକ୍ଷେପ ନାହିଁ କି ଆକ୍ରୋଶ ମଧ୍ୟ ନାହିଁ । ଜଣେ ଆରୋଗ୍ୟ-କାମୀ ଶୁଭଦର୍ଶୀ, ସୁଦକ୍ଷ ସ୍ଥିରଲକ୍ଷ୍ୟ ଶଲ୍ୟ-ଚିକିତ୍ସକ ସଦୃଶ ସେ ଆମ ସମାଜର ଭଗ୍ନ ଓ ବ୍ୟାଧି-ବିକୃତ ଅଙ୍ଗ ପ୍ରତ୍ୟଙ୍ଗ ଉପରେ ତାଙ୍କର ଲେଖନୀ-ରୂପ ଅସ୍ତ୍ର-ଚାଳନା କରିଛନ୍ତି ମାତ୍ର । ତେଣୁ ବ୍ୟଙ୍ଗାସ୍ତ୍ର ପ୍ରୟୋଗ ବେଳେ ତାହା କେବେ ହେଲେ ବି ନିଷ୍ଠୁର ଓ ନିର୍ମମ ଭାବେ ଆମର ସାମାଜିକ ଚେତନାକୁ ଆଘାତ ଦେଇ କ୍ଷତବିକ୍ଷତ କରିନାହିଁ—ରକ୍ତସ୍ନାତ କରିନାହିଁ । ବରଂ ଅନ୍ୟ ପକ୍ଷରେ ବର୍ଣ୍ଣିତ ବିଷୟଗୁଡ଼ିକ ପଢ଼ିଲା ମାତ୍ରେ ଆମର ମନରେ ଯୁଗପତ୍‌ ହାସ୍ୟ ବିଷାଦ, ବିବ୍ରତଭାବ ଓ ସମ୍ବେଦନା ଭାବ ଜାଗ୍ରତ ହୋଇଥାଏ । ଏହି ପୁସ୍ତକଟି ଏକ ସାମାଜିକ ଦର୍ପଣ ସଦୃଶ । ସେଥିରେ ଆମେ ଯେ କେହି, ସେ ଶିକ୍ଷକ ହେଉ ବା ପୁଲିସ୍ ହେଉ, ଛାତ୍ର ହେଉ ବା ଶିକ୍ଷକ ହେଉ, କୃଷୀ ହେଉ ବା ନେତା ହେଉ, ଡାକ୍ତର ହେଉ ବା ରୋଗୀ ହେଉ, କବି ହେଉ ବା ସଙ୍ଗୀତଜ୍ଞ ହେଉ, ଧର୍ମଧ୍ୱଜୀ ହେଉ ବା ପାପୀ ହେଉ, ସମସ୍ତେ ନିଜ ନିଜର ବିକୃତ ମୁହଁଟିକୁ ସ୍ପଷ୍ଟଭାବେ ଦେଖି ପାରିବା ।

ଏକ ସ୍ୱଚ୍ଛ, ନିର୍ମଳ ଉଜ୍ଜ୍ୱଳ ସାମାଜିକ ମୁକୁର ସଦୃଶ ଏଇ ଗ୍ରନ୍ଥ ଆମ ଭାଷାରେ ନିଶ୍ଚୟ ଏକ ବିଶେଷ କୃତି ଏବଂ କୀର୍ତ୍ତି, ଏହା ସ୍ୱୀକାର କରିବାରେ ମୋର ସାମାନ୍ୟତମ କୁଣ୍ଠା ବା ସନ୍ଦେହ ନାହିଁ । ମୁଁ ଆଶା କରୁଛି, ସାଂପ୍ରତିକ ଓଡ଼ିଶାର ଆଯୁବବୃଦ୍ଧବନିତା ଏହି ପୁସ୍ତକଟିକୁ ଶ୍ରଦ୍ଧାର ସହିତ ପାଠ କରିବେ, ପ୍ରମୁଦିତ ହେବେ ଏବଂ ଇଚ୍ଛାକଲେ ନିଜକୁ ମଧ୍ୟ ତା'ଭିତରେ ଆବିଷ୍କାର କରିବେ ।

ଆମେ ଏହି ପ୍ରତିଭାଶାଳୀ ଶୁଭକାମୀ ସାରସ୍ୱତ ସାଧକ ପୋଲିସ୍ ଅଫିସରଙ୍କ ସୃଜନକ୍ଷମ ଲେଖନୀରୁ ଏହିଭଳି ବହୁ ଉପାଦେୟ ସରସ ଓ ନିର୍ଦ୍ଦେଶମୂଳକ ରଚନା ଆଶା କରୁଛୁ ଓ ତାଙ୍କୁ ଉତ୍କଳ ଭାରତୀ ମା' ଶାରଳାଙ୍କର ପୂଜା ମଣ୍ଡପକୁ ତାଙ୍କର ସ୍ଥାନ ଗ୍ରହଣ କରିବାପାଇଁ ସାଦରେ ସ୍ୱାଗତ କରୁଛୁ । ଇତି ।

୨୮୭, ଆକାଶପାତାଳ
ସହିଦ ନଗର
ଭୁବନେଶ୍ୱର

**ମହାପାତ୍ର ନୀଳମଣି ସାହୁ**
ତା ୧୦ । ୬ । ୯୪

## ଆଭିମୁଖ୍ୟ :

ସାଂପ୍ରତିକ ସମାଜରେ ପ୍ରତ୍ୟହ କିଛୁନା କିଛୁ ଅଘଟଣ ଘଟୁଛି, ଯାହାକି ଆମ ସୁସ୍ଥ ସାମାଜିକ ସହାବସ୍ଥାନ ଦିଗରୁ ସ୍ୱାଭାବିକ ନୁହେଁ । ଦୁର୍ନୀତି, ଅପାଚାର, ଶୋଷଣ ଆଜି ପ୍ରତ୍ୟେକ ସ୍ତରର ମଣିଷଙ୍କ ଆତ୍ମାକୁ ଦଂଶନ କରୁଛି । ଏଇ ପେଷଣ-ପିଷ୍ଟ ସମାଜର ଅନ୍ତର୍ରୂପ ଓ ଯେଉଁ ସବୁ ସମସ୍ୟା ତଥା ବ୍ୟକ୍ତି ବିଶେଷ ସେ ସବୁର କାରଣ ତାକୁ ମୁଁ ଅବଲୋକନ କରିଛି ମୋର କାର୍ଯ୍ୟ ସଂପାଦନ କାଳରେ ଅତି ମାର୍ମିକ ଭାବେ । ଏଇସବୁ ସାମାଜିକ ନୈତିକ ଅଧୋଗତିରୁ ମୁକ୍ତିକାମୀ ଜନତାକୁ ଏକ ସଚେତନତାର ବ୍ୟୂହ ମଧ୍ୟକୁ ନେଇ ଆସିବାର ପ୍ରବଳ ଆକାଂକ୍ଷା ନେଇ ମୋର ଏଇ ପୁସ୍ତକ 'ଇନ୍ଦ୍ରଙ୍କ ମର୍ତ୍ତ୍ୟଗସ୍ତ' । ଏଥିରେ ଇନ୍ଦ୍ର ଉପରୋକ୍ତ ସାମାଜିକ ଅଧୋଗତି ଜନିତ ସମସ୍ୟାକୁ ଅବଲୋକନ କରିବାର ମାଧ୍ୟମ ରୂପେ ମର୍ତ୍ତ୍ୟ ଭୂମିରେ ଅବତୀର୍ଣ୍ଣ ହୋଇଛନ୍ତି । ଅନେକ ରମ୍ୟ କଥନରେ ଲେଖକ ନିଜେ ଏଇ ଭୂମିକାରେ ଥା'ନ୍ତି; ମାତ୍ର ଏ କ୍ଷେତ୍ରରେ ମୁଁ ସେଇ ଭୂମିକାରେ ନରହି ଦେବରାଜ ଇନ୍ଦ୍ରଙ୍କୁ ତାହା ସମର୍ପି ଦେଇଛି । ସ୍ୱର୍ଗର ମଣିଷ ମର୍ତ୍ତ୍ୟର ଅନୈତିକ ଦୃଶ୍ୟପଟକୁ ଦେଖି ଅଧୀର ହେବାବେଳେ ମର୍ତ୍ତ୍ୟମାନବ ଯେ ନିମିତ୍ତ ମାତ୍ର, ତାହା ଅସ୍ୱୀକାର କରିଯାଇ ପାରିବ ନାହିଁ । ଇନ୍ଦ୍ରଙ୍କ ଅବଲୋକନରେ ପ୍ରତିଭାତ ହୋଇଥିବା ବିବିଧ ସାମାଜିକ ଅତିଷ୍ଟତାର ଦୃଶ୍ୟପଠ ଗୁଡ଼ିକୁ ପ୍ରକାଶ କରାଯାଇଛି କେବଳ ଜନସଚେତନତାର ଅଃବୋଧ ପାଇଁ ଓ ସାମାଜିକ ଅଧୋଗତିକୁ ଆଖି ଆଗରେ ରଖି ।

'ଇନ୍ଦ୍ରଙ୍କ ମର୍ତ୍ତ୍ୟଗସ୍ତ'ରେ ଏଇ ଆଭିମୁଖ୍ୟକୁ ରମ୍ୟକଥନ ରୂପେ ମୁଁ ଅବତାରଣା କରିଛି । ନିଜେ ନହସି ଅନ୍ୟକୁ ହସାଇବା ଓ କିଛି ବୌଦ୍ଧିକ ସଚେତନତା ସୃଷ୍ଟି କରିବା ଯଦି ରମ୍ୟକଥନର ଲକ୍ଷ୍ୟ ହୋଇଥାଏ ତେବେ ଇନ୍ଦ୍ରଙ୍କ ମର୍ତ୍ତ୍ୟଗସ୍ତ ସେଇ ପର୍ଯ୍ୟାୟର ଏକ ରମ୍ୟ କଥନ ବୋଲି ମୋର ମତ । ଏଇ ପୁସ୍ତକଟିର ବିବିଧ ପର୍ଯ୍ୟାୟରେ ବହୁବିଧ ଘଟଣାର ଆରୋପ କରାଯାଇଥିଲେହେଁ ପ୍ରତ୍ୟେକଟିର ଆଭିମୁଖ୍ୟ ଏକ ଓ ଆଦର୍ଶ ଅଭିନ୍ନ । ଏଥିରେ ସଂଯୋଜିତ ସବୁ ପର୍ଯ୍ୟାୟ ଗୁଡ଼ିକ ଦୈନିକ "ଜନଭାଷା"ର ସ୍ତମ୍ଭରେ ଏକଦା ପ୍ରତ୍ୟହ ପ୍ରକାଶିତ ହୋଇଥିଲା । ସେତେବେଳେ ଜନଭାଷାର ସଂପାଦକ ଶ୍ରୀଯୁକ୍ତ ନଗେନ୍ ବେଉରିଆ ଅସମ୍ଭବ ପ୍ରକାର ପ୍ରୋତ୍ସାହନ ଦେଇ ଏସବୁକୁ ମୋଠାରୁ ଏକ ପ୍ରକାର ଲେଖାଇ ନେଇଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ଆଜି ପୁସ୍ତକଟିର ପ୍ରକାଶନ ଅବସରରେ ଶ୍ରୀଯୁକ୍ତ

ନଗେନ୍ ବେଉରିଆ ଓ ଜନଦୃଷ୍ଟି ପରିବାରର ସମସ୍ତ ସଦସ୍ୟଙ୍କ ଠାରେ ମୁଁ ମୋର କୃତଜ୍ଞତା ଜ୍ଞାପନ କରୁଛି । ପୁନଶ୍ଚ ସ୍ୱଳ୍ପକାଳ ମଧ୍ୟରେ ଗ୍ରନ୍ଥଟିକୁ ଯଥା ସମ୍ଭବ ତ୍ରୁଟି ଶୂନ୍ୟକରି ପ୍ରକାଶ କରି ଲୋକଲୋଚନକୁ ଆଣିଛନ୍ତି ଓଡ଼ିଶା ବୁକ୍‌ଷ୍ଟୋରର ସ୍ୱତ୍ତ୍ୱାଧିକାରୀ ଶ୍ରୀଯୁକ୍ତ ଗୋବିନ୍ଦ ଚରଣ ପାତ୍ର ଓ ତାଙ୍କ ପୁତ୍ର ବିଜୟ ଶଙ୍କର ପାତ୍ର । ସେମାନେ ମୋର ଧନ୍ୟବାଦାର୍ହ । ଏହି ଗ୍ରନ୍ଥର ଭୂମିକା ଲେଖି ମୋତେ ଅନୁଗୃହୀତ କରିଛନ୍ତି ସୁସାହିତ୍ୟିକ ମହାପାତ୍ର ନୀଳମଣି ସାହୁ । ତାଙ୍କଠାରେ ମୁଁ କୃତଜ୍ଞ । ଶେଷରେ ପୁସ୍ତକର ଯଥାସମ୍ଭବ ପ୍ରକାଶନ ନିମନ୍ତେ ମତେ ଉତ୍ସାହିତ କରିଛନ୍ତି ଅଧ୍ୟାପକ ଡ଼କ୍ଟର ନୃସିଂହ ଷଡ଼ଙ୍ଗୀ ଓ ମୁଦ୍ରଣ କାର୍ଯ୍ୟକୁ ତ୍ୱରାନ୍ୱିତ କରିଛନ୍ତି ଗୁରୁ ପ୍ରସନ୍ନ ପ୍ରେସର ସ୍ୱତ୍ତ୍ୱାଧିକାରୀ ଶ୍ରୀ ପ୍ରସନ୍ନ କୁମାର ମହାପାତ୍ର । ଏମାନେ ଧନ୍ୟବାଦାର୍ହ । ଗ୍ରନ୍ଥଟି ପାଠକଙ୍କ ଶ୍ରଦ୍ଧା ଲଭିଲେ ଶ୍ରମ ସାର୍ଥକ ମଣିବି ।

**ବୈକୁଣ୍ଠ ତ୍ରିପାଠୀ**

# ( ୧ )

ଦେବରାଜ ଇନ୍ଦ୍ରଙ୍କର ସ୍ୱତନ୍ତ୍ର ବାର୍ତ୍ତାବହ ସୁଧର୍ମା ସଭାର ଜରୁରୀ କାଳୀନ ବୈଠକ ବସିବାର ସମ୍ବାଦ ସମସ୍ତ ଦେବତାମାନଙ୍କୁ ଜଣାଇ ଦେଇସାରିଲା ପରେ ସ୍ୱର୍ଗପୁରୀରେ ଚହଳ ପଡ଼ିଯାଇଥିଲା । କାର୍ଯ୍ୟକାରୀ କମିଟିର ସଭ୍ୟମାନେ ପ୍ରତିବାଦ କରିବାକୁ ସମୟ ପାଇ ନଥିଲେ କି ଘଟଣା ବିଷୟରେ ଇନ୍ଦ୍ରଦେବ କିଛି ସୂଚନା ଦେଇ ନଥିଲେ । କେତେକ ଦେବତା, ଦୈତ୍ୟମାନେ ସ୍ୱର୍ଗ ଆକ୍ରମଣର ସନ୍ଦେହ-ରେ ସାବଧାନ ହୋଇ ନିଜ ନିଜର ସ୍ତ୍ରୀମାନଙ୍କୁ ବାହାରେ ପଦ ବନ୍ଦାବନ୍ଦ କରିବାକୁ ନିର୍ଦ୍ଦେଶ ଦେଇ ସାରିଥାଆନ୍ତି ।

ସଭା ସ୍ଥଳରେ ଦେବରାଜ ଇନ୍ଦ୍ର ଅତି ଚିନ୍ତିତଭାବେ ଆସନ ଗ୍ରହଣ କରନ୍ତେ ଦେବଗୁରୁ ବୃହସ୍ପତି, ମନ୍ତ୍ରଣାଦାତା ନାରଦ ଏବଂ ଅନ୍ୟାନ୍ୟ କାର୍ଯ୍ୟକାରୀ କମିଟିର ସଭ୍ୟ ଦେବରାଜଙ୍କର ବ୍ୟସ୍ତ ମନୋଭାବକୁ ଲକ୍ଷ୍ୟ କରି ନିଜ ମୁହଁରେ ବ୍ୟସ୍ତତାର ଭାବ ଫୁଟାଇଥାନ୍ତି । ଏହିପରି ଏକ ଗାମ୍ଭୀର୍ଯ୍ୟ ତଥା ଅସ୍ଥିରତା ପୂର୍ଣ୍ଣ ପରିବେଶ ଭିତରେ ବୃହସ୍ପତି ପଚାରିଲେ, "ହେ-ଇନ୍ଦ୍ର !" ଆଜି ଏ ଜରୁରୀ କାଳୀନ ବୈଠକର ଏଜେଣ୍ଡା କାହିଁ ? ସଭାମଧ୍ୟରେ ମୃଦୁ ଗୁଞ୍ଜନ ଖେଳିଗଲା ।

ଏଜେଣ୍ଡା କଅଣ ? ସଭାସଦ୍‌ଙ୍କ ଉପରେ ଶାନ୍ତ ଅଥଚ ତୀକ୍ଷ୍ଣ ଦୃଷ୍ଟି ବୁଲାଇ ଆଣି ଇନ୍ଦ୍ରଦେବ ଆରମ୍ଭ କଲେ—ଆଜି ସନ୍ଧ୍ୟାର ଏହି ଜରୁରୀ କାଳୀନ ବୈଠକର ବିଷୟବସ୍ତୁ ଆପଣମାନେ ଜାଣି ନାହାନ୍ତି । ମୁଁ ଜାଣି ଜାଣି ଏ ଖବର ଆପଣମାନଙ୍କୁ ଦେଇ ନଥିଲି । ଆପଣମାନେ ଜାଣନ୍ତି, ଆଜି ସକାଳୁ ସ୍ୱର୍ଗପୁରୀର ଖେଚରଶାଳାରୁ ଏକଶତ ଖେଚର ପ୍ରାଣତ୍ୟାଗ କରିଛନ୍ତି । ଆଶ୍ଚର୍ଯ୍ୟର କଥା, ଏକା ଦିନକେ ଏକ-ଶତ ଖେଚରଙ୍କ ପ୍ରାଣତ୍ୟାଗ । ପୁଣି ପ୍ରାଣ ହରାଇବା ସଙ୍ଗେ ସଙ୍ଗେ ଯମରାଜ ତାଙ୍କୁ ମର୍ତ୍ତ୍ୟ ଲୋକକୁ ଫେରାଇ ଦେବା ପାଇଁ ଆଦେଶ ଦେଇଛନ୍ତି । ସେମାନେ ମର୍ତ୍ତ୍ୟର ଯନ୍ତ୍ର; ଦେବତାମାନଙ୍କୁ ସାହାଯ୍ୟ କରିବାକୁ ସ୍ୱର୍ଗପୁରୀକୁ ଆସିଥିଲେ । ସେମାନଙ୍କ

ପ୍ରତିନିଧିଙ୍କୁ ମୁଁ ଏଠାକୁ ଡ଼କାଇଛନ୍ତି—ମର୍ତ୍ତ୍ୟକୁ ଯିବା ପୂର୍ବରୁ ତାଙ୍କର ଶେଷ ଇଚ୍ଛା ପ୍ରକାଶ କରିବା ପାଇଁ ।

ଟେବୁଲ ବାଡେଇ ବରୁଣ ଦେବ କହିଲେ, ମୁଁ ଏ ପ୍ରସ୍ତାବ ଉପରେ ସମସ୍ତ ସଭ୍ୟଙ୍କ ଦୃଷ୍ଟି ଆକର୍ଷଣ କରି ପଚାରିବାକୁ ଚାହେଁ—ଦେବ ବୈଦ୍ୟ ଅଶ୍ୱିନୀ କୁମାର କଣ କରୁଅଛନ୍ତି ? ହଁ ! ଆମ ପାଖରେ ଖବର ଅଛି ଯେ, ମର୍ତ୍ତ୍ୟର ଶହ ଶହ ପକ୍ଷୀମାନେ ଅଚାରେ ପ୍ରାଣତ୍ୟାଗ କରନ୍ତି । ମାତ୍ର ସ୍ୱର୍ଗରେ ଏଭଳି ସମ୍ଭବ କିପରି ? ଏଥିରୁ ଜଣା ପଡ଼ୁଛି ଅଶ୍ୱିନୀ କୁମାର ଚିକିତ୍ସାଳୟକୁ ନଯାଇ ଘରେ ବସି ଗପ୍ପଟିଏ ମାରୁଛନ୍ତି । ଔଷଧକୁ ଏପଟ ସେପଟ କରୁଛନ୍ତି ।

ତାଙ୍କୁ ସମର୍ଥନ କରି କେତେକ ଦେବତା ମଧ୍ୟ ଟେବୁଲ ବାଡ଼େଇଲେ । ସଙ୍ଗେ ସଙ୍ଗେ ବରୁଣ ଆରମ୍ଭ କଲେ—ମୁଁ ଏ ଗୃହର ସମସ୍ତ ସଭ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିବା ସଙ୍ଗେ ସଙ୍ଗେ ଏହି ଦୁର୍ଘଟଣା ତଥା ଅପମୃତ୍ୟୁ ପାଇଁ ଦେବବୈଦ୍ୟ ଅଶ୍ୱିନୀ କୁମାରଙ୍କ କୈଫିୟତ ମାଗିବାକୁ ଅନୁରୋଧ କରୁଛି । ଫ୍ଲାଷ୍ଟ୍ରୀ ସଭାପତି ବୃହସ୍ପତି ଅଶ୍ୱିନୀ କୁମାରଙ୍କୁ ତାଙ୍କର ଏ ପ୍ରସ୍ତାବ ଉପରେ ମତାମତ ଲୋଡ଼ିଲେ । ଯୋଡ ହସ୍ତରେ ଅଶ୍ୱିନୀ କୁମାର ଠିଆ ହୋଇ ଆରମ୍ଭ କଲେ—ସାର ଆପଣମାନେ ସମସ୍ତେ ଜାଣନ୍ତି ସ୍ୱର୍ଗରେ ଅର୍ଥ ପରାମର୍ଶଦାତା କୁବେର ଦେବଙ୍କ ପରାମର୍ଶ କ୍ରମେ ବିଗତ ବହୁ ବର୍ଷ ଧରି ଆମ୍ଭର ଏହି "ଖଚର" ଶାଳାକୁ ମର୍ତ୍ତ୍ୟରୁ ଖାଦ୍ୟ ସଂଗ୍ରହ କରାଯାଉଛି ଏବଂ ଆମେ ତାହା ପୃଥିବୀ ପ୍ରସିଦ୍ଧ ଉତ୍କଳ ମହାଭାରତରୁ ଆମର ପ୍ରତିନିଧି ଶ୍ରୀ ଜଗନ୍ନାଥଙ୍କ ଜରିଆରେ ଏଠାକୁ ଆଣୁ । କିନ୍ତୁ ଏବେ ସେହି ପୂର୍ଣ୍ଣଭୂମି ଉତ୍କଳ ଦେଶର ଖାଦ୍ୟଶସ୍ୟରେ ଭୀଷଣ ଭାବେ ଭେଜାଲ ମିଶାଯାଉଛି । ଖାଦ୍ୟଶସ୍ୟକୁ ଛାଡ଼ି ଦେଲେ ଘାସ ତଥା ଗୋ ଖାଦ୍ୟରେ ମଧ୍ୟ ଭେଜାଲ । ବହୁତ ପୋକମରା ଔଷଧ ପକେଇ ପକେଇ ପୋକ ତ ମରୁ ନାହାଁନ୍ତି, ସେ ଘାସ ବିଷାକ୍ତ ହୋଇଗଲଣି । ଏବଂ ପୋକମାନେ ମଧ୍ୟ ବିଷପାନ କରି "ନୀଳକଣ୍ଠ" ହୋଇଗଲେଣି । ସେହି ପୋକମାନେ ଲୁକାୟିତ ଭାବେ ଘାସର କଣ୍ଠାଗ୍ରତରେ ଲୁଚି ରହିଥିଲେ ଏବଂ ସେଇ ଘାସ ଖାଇ ଏ ଖଚରମାନଙ୍କର ମୃତ୍ୟୁ । ଏଥିପାଇଁ ମୁଁ ବା କ'ଣ କରି ପାରିଥାନ୍ତି ?

କିଓ ସେ ଘାସକୁ ପରୀକ୍ଷାନିରୀକ୍ଷା କରି ନାହିଁ କାହିଁକି ? କହିଲେ ବରୁଣ ।

ଉତ୍ତରରେ ଅଶ୍ୱିନୀ କୁମାର କହିଲେ—ଜାଣନ୍ତି, ଆମର ଯେଉଁ ଚିକିତ୍ସାଗାରରେ ଯେଉଁ ପରୀକ୍ଷାଗାର ଅଛି ସେଥିରେ ଏପରି କିଛି ଯନ୍ତ୍ରନାହିଁ ଏ ପୋକମାନଙ୍କୁ ଧରିବା ପାଇଁ ।

ହଁ ଧରିବ କେମିତି ? ତୁମେ ସେଇ ତାଳପତ୍ର ପୋଥି ବୈଦ୍ୟଶାସ୍ତ୍ର ଧରି ବସ । ହଇହେ ! ଯୁଗ କେଉଁଠି ଆସି ହେଲାଣି, ତୁମର ସେହି ପୁରୁଣା ଚିକିତ୍ସା ପଦ୍ଧତି ! ମୁଁ ତ ଦେଖୁଛି ତୁମେ ଯଦି ତୁମର ପଦ୍ଧତି ନବଦଳାଅ, ତାହେଲେ ଦେବତାମାନେ ଅଚିରେ ରୋଗଗ୍ରସ୍ତ ହେବେ । ଦେବପୁରୀରେ ମହାମାରୀ ଆରମ୍ଭ ହୋଇପାରେ । ମୁଁ ଅର୍ଥ ପରାମର୍ଶ ଦାତା ମାନ୍ୟବର ସଭ୍ୟ କୁବେର ସାହେବଙ୍କୁ ଅନୁରୋଧ କରୁଛି ଏବର୍ଷ ବଜେଟ୍‌ରେ ସ୍ୱର୍ଗପୁରୀରେ ଚିକିତ୍ସାଳୟକୁ ଆଧୁନିକୀକରଣ ପାଇଁ ଅଧିକା ପାଣ୍ଠି ଦିଆଯାଉ ।

ଏକଥା ଶୁଣି କୁବେର କେନ୍ଦି ଉଠିଲେ, ଖାଲି କହିଦେଲେ ହେବନାହିଁ । ଆର୍ଥିକ ସମ୍ବଳ ବିଷୟରେ ମାନ୍ୟବର ସଭ୍ୟଙ୍କର କିଛି ଧାରଣା ଅଛି କି ? କିଓ ଇନ୍ଦ୍ରଙ୍କ ନନ୍ଦନ କାନନରେ ନୂଆ ନୂଆ ସେକ୍‌ସନ । ଅନ୍ତରୀକ୍ଷରେ ବିଭିନ୍ନ ନକ୍ଷତ୍ରକୁ ବୁଲିଯିବାରେ ଏ ବର୍ଷର ଅଧିକା ସମ୍ବଳ ସବୁ ଶେଷ । ଆର ବର୍ଷକୁ ବିଚାର କରିବା ।

ତାହେଲେ କଣ ଆମେ ମହାମାରୀରେ ପ୍ରପୀଡ଼ିତ ହେବୁ ? କହି କେତେକ ସଭ୍ୟ ଅଣ୍ଟାରେ ଲୁଗା ଭିଡ଼ି କୁବେର ଦେବଙ୍କ ଆଡକୁ ମାଡ଼ି ଚାଲିଲେ । ସଭାଟା ସରଗରମ ହେବାରୁ ଦେବ ସଭାପତି ଓଁ ଶାନ୍ତି, ଓଁ ଶାନ୍ତି କହିକହି ଟେବୁଲ ପିଟିବା ଆରମ୍ଭ କରିଦେଲେ । କିଛି ସମୟ ଟେବୁଲ ପିଟା ପରେ ଶାନ୍ତପରିବେଶ ସୃଷ୍ଟି ହୁଅନ୍ତେ ଇନ୍ଦ୍ରଦେବ ସମସ୍ତ ସଭ୍ୟଙ୍କ ଦୃଷ୍ଟି ଆକର୍ଷଣ କରି ଆରମ୍ଭ କଲେ— ଦେବଗଣ ! ଯାହାତ ହେବାର ହେଲାଣି । ଖେଚରମାନେ ମଲେ । ଯମରାଜ ତାଙ୍କୁ ମର୍ତ୍ତ୍ୟଲୋକକୁ ଯିବାକୁ ଆଦେଶ ଦେଇ ସାରିଛନ୍ତି । ଏବେ ମୁଁ ଆପଣମାନଙ୍କୁ ଅନୁରୋଧ କରୁଛି, ଗୃହ କମିଟି ତରଫରୁ, ସେମାନଙ୍କୁ ପଦେ ପଚାରିଯାଉ—ମର୍ତ୍ତ୍ୟ ଲୋକରେ କେଉଁ ଯୋନିରେ ସେମାନେ ଜନ୍ମ ଗ୍ରହଣ କରିବେ ।

ଆଦେଶ ପାଇ ପାଞ୍ଚଜଣ ଖେଚର ପ୍ରତିନିଧି ଆସି ହାଜର ହେଲେ । ସଭାପତି ପଚାରିଲେ—କେଉଁ ଯୋନିକୁ ଯାଇ କି ପ୍ରକାର ଭାବରେ ତୁମେ ଜନ୍ମ ଗ୍ରହଣ କରିବାକୁ ଚାହୁଁଛ କୁହ ?

ପ୍ରଥମ ପ୍ରତିନିଧି କହିଲେ, ମହାଶୟ, ମର୍ତ୍ତ୍ୟଲୋକକୁ ଯିବୁ ଯେତେବେଳେ ମାନବ ଯୋନିରେ ଜନ୍ମତ ନିଶ୍ଚୟ ଗ୍ରହଣ କରିବୁ । ହେଲେ ମାନବ ଭିତରେ ଆମକୁ ପୋଲିସ ବିଭାଗରେ ରଖିବେ । ଆଉ ଜଣେ କହିଲେ, ନାହିଁ ଆଜ୍ଞା, ସେ କିଛି ଜାଣିନ, ଆମକୁ ଇଞ୍ଜିନିୟର କରିଦେବେ । ସେ କହୁ କହୁ ତାଙ୍କୁ ଆଉଜଣେ ପ୍ରତିନିଧି ଧକ୍‌କାଟାଏ ମାରି କହିଲେ, ସେ ଆଜ୍ଞା କିଛି ଜାଣନ୍ତି ନାହିଁ । ଆପଣତ ସବୁ,

ହର୍ତ୍ତାକର୍ତ୍ତା ହୋଇବ ବିଧାତା । ଆପଣଙ୍କର ଏ ଅକିଞ୍ଚନମାନଙ୍କ ପ୍ରତି ଦୟା ଯଦି ତାହେଲେ ଆମ୍ଭମାନଙ୍କୁ ମନ୍ତ୍ରୀ କରି ଦିଅନ୍ତୁ ।

ସଭାପତି ପଚାରିଲେ, ହେ-ଇନ୍ଦ୍ର ! କଥା କଣ କହ ? ଏମାନେ ମର୍ତ୍ତ୍ୟକୁ ଯିବା ପୂର୍ବରୁ କେଉଁ ବିଭାଗକୁ ଯିବେ ସେଇଟା କଣ ଦାବୀ କଲେଣି ? ଏହାର ଗୂଢ଼ ରହସ୍ୟ ତ କିଛି ମୁଁ ବୁଝି ପାରୁନ ! ଇନ୍ଦ୍ର ତାଙ୍କର ଅଜ୍ଞତା ପ୍ରକାଶ କରିବାରୁ ସଭାପତି ପୁନର୍ବାର ସଭ୍ୟମାନଙ୍କୁ ପଚାରିଲେ—ଭାଇମାନେ ଆପଣମାନେ ଏଇ ଆମର 'ଝଚର'ମାନେ ଯେଉଁ ଯେଉଁ ବିଭାଗକୁ ଯିବାକୁ ଚାହୁଁଛନ୍ତି, ସେ ବିଷୟରେ କିଛି ଜାଣନ୍ତି କି ? ଯଦି ଜାଣନ୍ତି ତାହାଲେ ଆମ୍ଭମାନଙ୍କୁ ଅବଗତ କରାନ୍ତୁ । ସେହି ବିଭାଗର ଭଲମନ୍ଦ ବିଷୟରେ ସବୁ ସଭ୍ୟ ତାଙ୍କର ଅଜ୍ଞତା ପ୍ରକାଶ କଲେ । କିଛି ସମୟ ପାଇଁ ନୀରବତା ବିରାଜମାନ କଲା ।

ସେତେବେଳକୁ 'ଗଣେଶ ବାବୁ' ଘୁଙ୍ଗୁଡ଼ି ମାରୁଥାନ୍ତି । ବାଁ'ପଟ କଲରୁ ଧାରେ ନାଲ ଗଡ଼ି ତାଙ୍କ ବେକ ଛୁଇଁଲାଣି । ହଠାତ୍ ପେଟରେ କିଏ କୁତ୍‌କୁତ୍ କରି-ଦେଲାରୁ ତାଙ୍କ ନିଦ ଭାଙ୍ଗିଗଲା ଏବଂ ଶେଷ ପଦକ ଶୁଣି ସେ କହିଲେ, ମହାଶୟ ମୁଁ ଗୋଟିଏ ପ୍ରସ୍ତାବ ଦେଉଛି । ବର୍ତ୍ତମାନ ଝଚରମାନେ ମରିଥିଲେ ବି ତାଙ୍କର ପ୍ରେତାତ୍ମା ଏହି ସ୍ୱର୍ଗରେ ବୁଲନ୍ତି । ଅବଶ୍ୟ ଏଥିପାଇଁ ଯମରାଜାଙ୍କୁ ଅନୁରୋଧ କରା-ଯାଉ । ଏହି କିଛି ଦିନ ଭିତରେ ଆମ ଭିତରୁ ଜଣେ କିଏ ମର୍ତ୍ତ୍ୟ ଲୋକକୁ ଯାଇ ଏହି ତିନି ବିଭାଗ ବିଷୟରେ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ କରି ଆସନ୍ତୁ ଏବଂ ଆସିଲା ପରେ, ସେମାନଙ୍କୁ ପଠାଇବାର ବ୍ୟବସ୍ଥା କରାଯିବ ।

ସମସ୍ତଙ୍କୁ ଏ ପ୍ରସ୍ତାବଟା ବେଶ ଭଲ ଲାଗିଲା । ସଭାପତି କହିଲେ, ଏବେ କିଏ ଯିବ ବାବୁ ? ହେ-ଇନ୍ଦ୍ର ! କିଏ ଯିବ କୁହ ?

ଇନ୍ଦ୍ର କହିଲେ, "ଆଜ୍ଞା କିଏ ଆଉ ଯିବ ? ଆପଣ ତ ଜାଣିଛନ୍ତି କିଛି ଦିନ ତଳେ ଦେବ ସଭାରେ ନୃତ୍ୟରତା ଉର୍ବଶୀର ସାନ ଭଉଣୀର ତାଳଭଙ୍ଗ ଯୋଗୁଁ ଶାପଗ୍ରସ୍ତ ହୋଇ ମର୍ତ୍ତ୍ୟଲୋକକୁ ଯାଇଛି । ବିଚାରୀ ଫେରିବା ଲାଗି ତିନି ତିନିଟା ରିପ୍ରେଜେଣ୍ଟେସନ୍ ପଠାଇଲାଣି । କେଉଁଠି କ'ଣ କରୁଛି, କେମିତି ଅଛି, ଭାବୁଥିଲି ଯାଇ ଟିକିଏ ଦେଖି ଆସିଥାନ୍ତି । ତା ସଙ୍ଗେ ସଙ୍ଗେ ଏଇଟାକୁ ମଧ୍ୟ ତଦନ୍ତ କରିଦେବି ।"

କାମଦେବ ଠୋ କିନା ହସି ଉଠିଥିଲେ କିନ୍ତୁ କାର୍ତ୍ତିକେୟ ତାଙ୍କ ପାଟିରେ ରୁମାଲଟା ମାଡ଼ି ଦେଇ ହସଟା ବନ୍ଦ କରିଦେଲେ । ସମସ୍ତେ ଏ ପ୍ରସ୍ତାବକୁ ଅନ୍ତର ସହିତ ସମର୍ଥନ କଲେ ଏବଂ ଇନ୍ଦ୍ରଦେବ ଅବିଲମ୍ବେ ମର୍ତ୍ତ୍ୟଲୋକକୁ ଯିବାପାଇଁ ପ୍ରସ୍ତାବ ଗ୍ରହଣ କରି ସଭାପତିଙ୍କୁ ଧନ୍ୟବାଦାର୍ପଣାନ୍ତେ ସଭା ସାଙ୍ଗ କଲେ ।

( ୨ )

ସେଦିନ ଇନ୍ଦ୍ରଦେବ ଘରେ ପହଞ୍ଚୁ ପହଞ୍ଚୁ ଡେରି ହୋଇ ଯାଇଥିଲା । ବାଟରେ ଗଲାବେଳେ କୈଳାସପୁରରୁ ସ୍ୱର୍ଗଗସ୍ତରେ ଆସିଥିବା କୈଳାସପତିଙ୍କ ସଙ୍ଗେ ହଠାତ୍ ଦେଖା ହୋଇଗଲା । ମହାଦେବ ତାଙ୍କ ଡେରା ରାଜପଥ ସାଇଡ଼ରେ ପକାଇଥିଲେ । ତାଙ୍କର ହାବଭାବ, ଲୁଗାପଟା ଦୃଷ୍ଟିରୁ ତାଙ୍କୁ ଆଇ. ବି ଫାଇଭ୍‌ରେ ଯୋଗ ଦେବା ପାଇଁ ସମସ୍ତଙ୍କର କୁଣ୍ଠା । ଏ ସବୁ ଜାଣି ସେ ତାଙ୍କର ଅଲଗା ବାଟ କରିଥାନ୍ତି । ସେଦିନ ଯୋଗକୁ ଇନ୍ଦ୍ର ସେଇବାଟ ଦେଇ ଫେରିଲା ବେଳକୁ ମହାଦେବ ଡ଼ାକପକାଇଲେ—ଭୋ ଇନ୍ଦ୍ର-ଭୋ ଇନ୍ଦ୍ର ! ଆହେ କୁଆଡେ ଚାଲିଯାଉଛ ? ଇଆଡ଼େ ଆସ ।

ମହାଦେବଙ୍କ ପାଟିଟା ଶୁଣିଲା ପରେ ଇନ୍ଦ୍ର ମୋଡ଼ି ହୋଇ ତାଙ୍କ ଡେରା ଆଡ଼କୁ ଆସିଲେ ।

ଇନ୍ଦ୍ରଙ୍କୁ ଦେଖି ମହାଦେବ ଆରମ୍ଭ କଲେ—ହଇଓ, ଆମେ ତୁମ ସ୍ୱର୍ଗକୁ ଦୁଇଦିନ ହେଲା ଗସ୍ତରେ ଆସିଲୁଣି । ତାହା ପୂର୍ବରୁ ତୁମ ପାଖକୁ ଟୁର ପ୍ରୋଗ୍ରାମ ପଠାଇଥିଲୁ । ଟିକିଏ ହେଲେ ଆମକୁ ଡ୍ୟାସ୍‌ରେ ପଚାରୁନ ? ତମର ଇମିଡ଼ିଏଟ୍ ବସ୍ ଯେ ବିଷ୍ଣୁ ଏକଥା ଆମେ ଜାଣୁ, ହେଲେ ଆମପ୍ରତି ଏପରି ଅବହେଳା କଅଣ ଶୋଭନୀୟ ?

ଇନ୍ଦ୍ର ଏ ସମସ୍ତ ପାଇଁ ପ୍ରସ୍ତୁତ ନଥିଲେ । ପ୍ରୋଗ୍ରାମ ପାଇଲା ଦିନଠାରୁ ସେ ତାଙ୍କୁ କିପରି ଦେଖା ନଦେବେ ସେଇ ବନ୍ଦୋବସ୍ତରେ ଥିଲେ । ହଠାତ୍ ଏମିତି ଧରା ପଡ଼ିଯିବେ ବୋଲି କେବେହେଲେ ଭାବିନଥିଲେ । ଅବସ୍ଥାକୁ ସମ୍ଭାଳି ନେବାକୁ ଯାଇ କହିଲେ—ସାର୍, ଆଜି ଟିକିଏ ବ୍ୟସ୍ତ ଥିଲି । କିନ୍ତୁ ସାର୍, ପିଅନ ଅର୍ଡ଼ରଲି ସବୁ ପଠାଇ ଦେଇଥିଲି । ସେ ଶଳେ କଅଣ ଆସିନାହାନ୍ତି ? ତାଙ୍କ କୃତ୍ରିମ ରାଗ ଦେଖି ମହାଦେବ କହିଲେ 'ହଁ ହଁ ଭଲ ପିଅନ ପଠେଇଥିଲ ? ସନ୍ଧ୍ୟା ଛଅଟାରୁ ଦିଭରି ଗଞ୍ଜେଇ ପାଇଁ ପଠାଇଥିଲି ସେ ହାକିମ ଆସୁଛି ରାତି ନଅଟା ବେଳକୁ ! ମୋ ଆଖିରୁ ପାଣି ଗଡ଼ିଲାଣି । ହଉ ହଉ ଗୋଟେ ଦମ୍ ମାର ।'

ଇନ୍ଦ୍ର ବଡ଼ ଅଡୁଆରେ ପଡ଼ିଲେ । ସେ ତ ଗଞ୍ଜେଇ ଭକ୍ତ ନୁହନ୍ତି । ତାଙ୍କର ଜିନିଷ ଅଲଗା । କଅଣ କରିବେ ! ସିନିୟର ଯେତେବେଳେ କହୁଛନ୍ତି, ମନା କରିବାଟା ଶୋଭନୀୟ ନୁହେଁ । ଏଟିକେଟ୍‌କୁ ଜଗି ଜଗି ସେ ଦି'ଦମ ଟାଣିଲେ । ଦି ଦମ୍‌ରେ ତାଙ୍କ ଆଖି ନାଲି । କୌଣସିମତେ ଏକ୍‌ସକ୍ୟୁଜ୍ ମାଗି ମହାଦେବଙ୍କ

ଠାରୁ ବିଦାୟ ନେଲେ । ଗଞ୍ଜେଇ ନିଶା ତାଳୁ ଉପରକୁ ଚଢ଼ିଗଲାରୁ ତାଙ୍କ ଗୋଡ଼ ଏପଟ ସେପଟ । ମନେ ମନେ ଭାବୁଥିଲେ ଶାଳା ଏ ଗଞ୍ଜେଇଆଟା ହାବୁଡ଼େ ପଡ଼ି ସନ୍ଧ୍ୟାଟା ବେକାର ହୋଇଗଲା । ମନଟାକୁ ଟିକିଏ ସରସ କରିବାକୁ ଯାଇ ଗୋଟେ ରସରସିଆ ପ୍ରେମ କବିତା ତାଙ୍କ ମନେ ପଡ଼ିଗଲା ।

କବିତାର ଶେଷପଂକ୍ତିକୁ ଉଚ୍ଚ ସ୍ୱରରେ ଗାଇ ଗାଇ ଇନ୍ଦ୍ର ଦୁଆର ମୁହଁରେ ପହଞ୍ଚିଲା ବେଳକୁ 'ଶଚୀଦେବୀ'ଙ୍କ ଘଡ଼ଘଡ଼ିଆ ଗର୍ଜନରେ ଅତରଛିଆ ହୋଇ ପଡ଼ିଲେ । ଗର୍ଜନରତା ଶଚୀଦେବୀ ଆରମ୍ଭ କଲେ 'କୁଆଡ଼େ ଚକର କାଟୁଥିଲ, ଏଁ ? କାହା ଘରେ ଥିଲ ? ରାତି ଅଧି ଦଶ ବାଜିଲାଣି, ଯାଁ'ଙ୍କ ଲାଗି କିଏ ଗୃହିଁ ବସିଥିବ ଖାଇବାକୁ ହୋ' ?

ଇନ୍ଦ୍ରଙ୍କ ଗଞ୍ଜେଇଆ ମନଟା ଭୟରେ ଟିକିଏ ଚହଲି ଗଲା । ତାଙ୍କର ଏକ ଲାଇନିଆ ତାଳଟା ବେତାଳ ହୋଇଗଲା ।

ତାଙ୍କର ଏମିତିଆ ହାବଭାବ ଲକ୍ଷ୍ୟ କରି ଶଚୀ କହିଲେ—କିଓ ଏମିତି କାହିଁକି ଚୁଙ୍ଗ୍ ଚୁଙ୍ଗ୍ ହେଉଛ ? କଥା କ'ଣ ?

ଇନ୍ଦ୍ର ଟିକିଏ ଦମ୍ ମାରି ଆରମ୍ଭ କଲେ—ତମର ତ ସବୁବେଳେ ସନ୍ଦେହ ! କଥାଟା ନ ବୁଝି ଗର୍ଜନ । ଶୁଣ; ଆଜି ଜରୁରୀ ବୈଠକରେ ନିଷ୍ପତ୍ତି ହୋଇଛି ଆସନ୍ତା କାଲି ସକାଳୁ ମୁଁ ମର୍ତ୍ତ୍ୟ ଗସ୍ତରେ ଯିବି । ଜରୁରୀ ଇନକ୍ୱାରୀ ଗୋଟେ କରିବାକୁ ଅଛି । ସଲଦି ଗଣ୍ଡେ ଖାଇବାକୁ ଦେଲେ—ମୋତେ ଭୋରୁ ଭୋରୁ ଉଠି ଯିବାକୁ ହେବ ।

ଇନ୍ଦ୍ରଙ୍କ ଗସ୍ତକଥା ଶୁଣି ଶଚୀଦେବୀ ବେଶ୍ ଖୁସି ହୋଇଗଲେ । ମର୍ତ୍ତ୍ୟ ବିଷୟରେ ସେ ବହୁତ ଖବର ଶୁଣିଛନ୍ତି । ଭଗବାନ ବିଷ୍ଣୁଙ୍କୁ ଯେତେବେଳେ ସ୍ୱର୍ଗ ବୋର୍ ଲାଗେ ସେ ମର୍ତ୍ତ୍ୟକୁ ପଳାଇ ଯାଇ ମଣିଷ ଜନ୍ମଗ୍ରହଣ କରିଥାନ୍ତି । କିନ୍ତୁ ସମସ୍ତଙ୍କୁ କହନ୍ତି ସେ ଦୁଷ୍ଟ ନିବାରଣ କରି ସନ୍ଥଙ୍କୁ ପାଳନ ପାଇଁ ତାଙ୍କର ମର୍ତ୍ତ୍ୟପୁରୀକୁ ଗମନ । ମର୍ତ୍ତ୍ୟ ବାଲାଙ୍କୁ ଏଇଟା କହିଲେ ସେମାନେ ସିନା ବିଶ୍ୱାସ କରିବେ, ହେଲେ ସ୍ୱର୍ଗରେ ସେ ପୁଡ଼ି ମାଇଲେ ଚାଲିବ କିମିତି ?

ଶଚୀଦେବୀ ଏସବୁ ଇତିହାସ ଲକ୍ଷ୍ମୀଙ୍କଠାରୁ ସଂଗ୍ରହ କରିଥିଲେ । ସେହି ବାହାନାରେ ଲକ୍ଷ୍ମୀ ମଧ୍ୟ ବହୁବାର ମର୍ତ୍ତ୍ୟ ଭ୍ରମଣ କରିଛନ୍ତି । ସୁଯୋଗ ଯେତେବେଳେ ଆସିଚି ଶଚୀଦେବୀ ଆରମ୍ଭ କଲେ—ବୁଝିଲ ! ଏଠାରେ ଏକଦମ ବୋର ହେଲିଣି । ଯାହାକୁ ଦେଖିଲେ ତ ସେଇ, ସେମିତିଆ ଚେହେରା, କିଛି ନୂତନତ୍ୱ

ନାହିଁ । ସବୁବେଳେ ଏଠାରେ ବସନ୍ତ । ବର୍ଷା ନାହିଁ କି ଝଡ଼ ନାହିଁ । ଜୀବନରେ ସୁଆଦ ଟିକିଏ ବି ନାହିଁ । ମର୍ତ୍ତ୍ୟରେ କୁଆଡ଼େ ଭଲଭଲିକିଆ ପୋଷାକ, ଚେହେରା, କିଏ ନାଲିପେଣ୍ଟ ପିନ୍ଧୁଛି ତ କିଏ ଲମ୍ବା କଲି ରଖିଛି । ଗଜୁରା ଗଜୁରା ବାଳ । ଆଉ ତମ ସ୍ୱର୍ଗରେ ଲମ୍ବା କୁର୍ତ୍ତିଆ, ପେଣ୍ଟୁଆ । କେତେଦିନ ଏ କୁର୍ତ୍ତିଆ ପେଣ୍ଟୁଆଙ୍କୁ ଦେଖିବି ? ପ୍ଲିଜ, ମୋତେ ଟିକିଏ ସାଙ୍ଗରେ ନିଅ । କିଓ ନେବନି କାହିଁକି ? ମର୍ତ୍ତ୍ୟରେ ତ ଅଫିସରମାନେ ଗସ୍ତରେ ଗଲେ ତାଙ୍କ ଓ୍ୟାଇଫ୍‌ମାନଙ୍କୁ ସାଙ୍ଗରେ ନିଅନ୍ତି । ବଢ଼ିଆ ବଙ୍ଗଳାରେ ରହନ୍ତି ।

ଶଚୀଦେବୀଙ୍କ କଥା ଶୁଣି ଇନ୍ଦ୍ର ବଡ଼ ଅଡ଼ୁଆରେ ପଡ଼ିଲେ । ସ୍ୱର୍ଗର ମାଇକିନିଆ ଲୋକଟାକୁ ଧରି ମର୍ତ୍ତ୍ୟକୁ ଯିବା ବଡ଼ କଷ୍ଟକର କଥା । ତା'ଛଡ଼ା ତାଙ୍କର ଭିତରିଆ ଇନ୍‌କ୍ୱାଇରୀ ଅଛି । ଏ ସବୁ କଥାକୁ ଭାବି କହିଲେ—ହଇହୋ ତମେ ଇନ୍ଦ୍ରର ଘରଣୀ ହୋଇ ମର୍ତ୍ତ୍ୟର ସେ ଲମ୍ବକଲିଆ ଲଫଙ୍ଗା ଟୋକା ଗୁଡ଼ାକୁ ଦେଖିବାକୁ ଚାହିଁଲଣି ? ଛି ଛି ଏକଥା ଯଦି ଆଉ କିଏ ଶୁଣେ ମୋ ପ୍ରେଷ୍ଟିଜ୍ ରହିବ ତ ?

ଶଚୀଦେବୀ ପୁଣି ଗର୍ଜିଉଠି ଆରମ୍ଭ କଲେ—କଅଣ ହେଲା ? ଯେତେ-ହେଲେ ଆମେ ମାଇପିଲୋକ ! ଦେବତାଣୀ ହେଲୁ ବୋଲି କଅଣ ଆମର କିଛି ମନ ନାହିଁ ? ସବୁବେଳେ ଏଇ ଚୁଟିଆ ପେଟୁଆଙ୍କ ସାଙ୍ଗେ ବୁଲୁଥିବୁ ? ନାଁ ହୋଇ ପାରିବନି । ତୁମେ ଯଦି ବେଶି ପାଟିକର, କାଲି ସକାଳୁ ଲକ୍ଷ୍ମୀ, ପାର୍ବତୀ ପ୍ରଭୃତି ସମସ୍ତ ଦେବତାଣୀମାନଙ୍କୁ ଡ଼ାକି ସ୍ୱର୍ଗରେ ଓମ୍ୟାନସ ଲିବ ଆରମ୍ଭ କରିବି । ତୁମେ ସବୁ ଦେବତାମାନେ ଦେବତା ନାଁରେ ଯାହାଇଚ୍ଛା ଦୈତ୍ୟ କାମ କରୁଛ, ଆଉ ଆମଆଗେ ଦେବତା ? ବହୁଦିନ ହେଲା ଆମକୁ ଏ ଦେବତାଣୀ ଖୋଳ ଭିତରେ ପୂରେଇ ରଖିଲଣି । ଆଉ ନୁହେଁ ।

ଇନ୍ଦ୍ର ଏକଥା ଶୁଣି ଡ଼ରିଗଲେ । ତାଙ୍କ ମୁଣ୍ଡରୁ ଗର୍ଭେଇ ନିଶା ଉଡ଼ିଯାଇ-ଥାଏ । ଭାବିଲେ ଶଚୀଙ୍କ ସଙ୍ଗେ କଳିକଲେ ଲାଭ ନାହିଁ । ଯଦି ସତକୁସତ ଲିବ ଫିବ ଆରମ୍ଭକରେ ତାହେଲେ ତାଙ୍କ କଥା ସରିଲା । ଯାହା ଟିକିଏ ଭଲରେ ମନ୍ଦରେ କରୁଥିଲେ ସେସବୁ ବନ୍ଦ ହୋଇଯିବ । ଅନ୍ୟ ଦେବତାମାନେ ତାଙ୍କର ବୋକାମୀ ଯୋଗୁ ତାଙ୍କ ଦୋଷଦେବେ । ତେଣୁ ଶଚୀଦେବୀଙ୍କୁ ଆଉ ନରଗାଇ ସେ କହିଲେ —ଆହେ ଶୁଣ ! ମୋର କଅଣ ମନନାହିଁ ନେବାକୁ ? ହେଲେ ମର୍ତ୍ତ୍ୟରେ ରହିବା ଖାଇବା ସୁବିଧା କଅଣ ଅଛି ସେ ବିଷୟରେ ମୋର ତ ଧାରଣା କମ୍ । ଭାବୁଛି ଏଥରକ ମର୍ତ୍ତ୍ୟକୁ ଯାଇ ଏସବୁ ବିଷୟରେ ସଠିକ୍ ଭାବେ ବୁଝି ଆରଥରକୁ ତୁମକୁ

ନେଇଯିବ । ଏଥରକ ଗୋଟେ ଅଧାପନ୍ତରିଆ ଇନ୍‌ସ୍ପେକ୍ଟର ରିପୋର୍ଟ ଦେଇଦେଲେ ପୁଣିଥରେ ମୋତେ ପଠାଇବେ । ସେଇ ଥରକ ସାଙ୍ଗ ହୋଇଯିବା ।

ଶଚୀଦେବୀ କହିଲେ—ହଉ ଶୁଣ, ମୁଁ ରାଜି କିନ୍ତୁ ଗୋଟେ ସର୍ତ୍ତରେ । ମୁଁ ଶୁଣିଛି ମର୍ତ୍ତ୍ୟରେ ପାଞ୍ଚତାରକା ହୋଟେଲମାନ ଅଛି । ସେ ହୋଟେଲ ଭିତରେ ସୁଇମିଂଗ୍ ପୁଲ, ବିଉଟି ପାର୍ଲର, ବାର୍, ମସାଜେ ପାର୍‌ଲର୍ସ ଅଛି । ମୋ ପାଇଁ ସେଇ ଫାଇଭଷ୍ଟାର ହୋଟେଲରେ ଗୋଟେ ରୁମ୍ ରିଜର୍ଭ କରି ଆସିବ । ତମ ସ୍ୱର୍ଗରେ କଅଣ ଏ ସବୁ ଅଛି—ନାଁ ସେ ବୁଢ଼ାଟା କିଛି କରେଇ ଦେବ ?

ଇନ୍ଦ୍ର ଅଗତ୍ୟା ତାଙ୍କ କଥାରେ ରାଜି ହେଲେ । କହିଲେ ହଉ ଏ କଥା ଆଉ କାହାକୁ କହିବନି । ଚାଲ ଖାଇ ଶୋଇଲେ ସକାଳୁ ବାହାରିବି ।

( ୩ )

ସକାଳୁ ସକାଳୁ ସ୍ୱର୍ଗପୁରୀ ଛାଡ଼ି ଦେବରାଜ ଇନ୍ଦ୍ର ଯୁବକ ବ୍ରାହ୍ମଣ ବେଶରେ ମର୍ତ୍ତ୍ୟଲୋକ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ତାଙ୍କର ଅନ୍ତରୀକ୍ଷଯାନ ସ୍ୱର୍ଗପୁରୀରୁ ପୃଥିବୀ ବକ୍ଷକୁ ଆସିବା ପାଇଁ ବେଶି ସମୟ ନେଇ ନଥିଲା । ବାଟରେ ଆସିଲାବେଳେ ଠିକ କରିନେଇ ଥିଲେ ଯେ ବିଶାଳ ଉତ୍କଳ ଦେଶର ମର୍ତ୍ତ୍ୟର ସ୍ୱର୍ଗପୁରୀ ଧାମରେ ଅବତରଣ କରି, ସେଠାରେ ଆମ୍ବୁଆପାଡ଼ର ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନଟାଏ କରି ଗସ୍ତ କାର୍ଯ୍ୟକ୍ରମ ଠିକ କରିବେ । ତା'ଛଡା ମର୍ତ୍ତ୍ୟ ବିଷୟରେ ସବିଶେଷ ଖବର ମଧ୍ୟ ସରଜମିନ ତଦନ୍ତ ପୂର୍ବରୁ ସଂଗ୍ରହ କରିନେବେ ।

ଏହି କଥା ଭାବି ତାଙ୍କର ଅନ୍ତରୀକ୍ଷ ଯାନର ଷ୍ଟିୟରିଂ ସ୍ୱର୍ଗଦ୍ୱାର ଆଡ଼କୁ ମୋଡ଼ିଲେ । ଆକାଶ ମାର୍ଗରୁ ପୁରୀ ସହର, ସମୁଦ୍ର କୂଳର ଦୃଶ୍ୟ ଅତ୍ୟନ୍ତ ମନୋରମ । ଏଇ ଦୃଶ୍ୟ ଦେଖିବାରେ ସେ ଏତେ ଭୋଳ ହୋଇଯାଇଥିଲେ ଯେ ତାଙ୍କ ଅନ୍ତରୀକ୍ଷ ଯାନଟା ସ୍ୱର୍ଗଦ୍ୱାର ପାଖରେ ଥିବା ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କ ମଠର ଭଙ୍ଗା କୋଠା ଦେହରେ ପିଟି ହୋଇ ଯାଇଥାନ୍ତା । ଅଳ୍ପକେ ରକ୍ଷାପାଇ ସ୍ୱର୍ଗ-ଦ୍ୱାରରେ ଓହ୍ଲେଇଲେ । ତାଙ୍କ ଅନ୍ତରୀକ୍ଷ ଯାନଟାକୁ ସ୍ୱର୍ଗଦ୍ୱାର ପାଖ ସମୁଦ୍ରଭିତରେ ରଖି ମନ୍ଦିର ଆଡ଼କୁ ବାହାରିଲେ ।

ଇନ୍ଦ୍ର ଶ୍ରୀମନ୍ଦିର ଆଡକୁ ଚାଲିଥାନ୍ତି । ବାଟରେ ଯାଉ ଯାଉ ହରଚଣ୍ଡୀ ସାହି ଭିତରେ ପଶିଗଲେ । ଦାଣ୍ଡ ଭିତରେ ଦ'ଟା ଷଣ୍ଢଙ୍କର ଲଢ଼େଇ । ତା ସାଙ୍ଗକୁ ଦଟା ଟୋକାଙ୍କ 'ହି-ହି-କଓ' ଶବ୍ଦ ତାଙ୍କୁ ମଜା ଲାଗିଲା । ସେ ଗୋଟେ ବଡ଼ ପିଣ୍ଡାର

ମୁଣ୍ଡ ପାଖକୁ ଲଗି ଠିଆହେଲେ । ତାଙ୍କ ନାକ ପାଖକୁ ଗୋଟେ ଦ୍ରବ୍ୟ ଗନ୍ଧ ଆସୁଥାଏ । ସେଥିପ୍ରତି ତାଙ୍କର ଲକ୍ଷ୍ୟ ନଥାଏ । ସ୍କୃା ଭିତରେ ଦ'ଟାଯାକ ଷଣ୍ଢ ମସ୍‌ମସ ହୋଇ ତାଙ୍କ ଆଡ଼କୁ ଧସେଇ ଆସିଲେ । ହଠାତ୍ ଆଉ ବାଟ ନପାଇ ଇନ୍ଦ୍ର ପିଣ୍ଡା ଉପରକୁ ଚଢ଼ିଗଲେ । ପିଣ୍ଡା ଉପରକୁ ଚଢ଼ୁ ଚଢ଼ୁ ଉପରୁ ସ୍ୱାଗତ ସମ୍ଭାଷଣ ଶୁଣିଲେ —ବେହିପୁଅ ଚଢ଼ଣ୍ଡା ବ୍ରାହ୍ମଣ ଟୋକାଟେ—ପଞ୍ଛିମା ନା ବଙ୍ଗାଳୀ ବେ ?

ଇନ୍ଦ୍ର ଭାବିଲେ, ଏମାନେ ହି-ବ୍ରୁ ଭାଷାରେ ବୋଧେ କଥାବାର୍ତ୍ତା ହେଉଛନ୍ତି । ସିଆଡ଼କୁ ଲକ୍ଷ୍ୟ କଲେ ଦୁଇଟି ଶିଳରେ କଣ ବଟା ଚାଲିଛି । ଦେହରୁ ଗମ୍ ଗମ୍ ବାସ । କାନ୍ଧରେ ନାଲି ଗାମୁଛା । ତାଙ୍କୁ ଲକ୍ଷ୍ୟ କରି ଆହୁରି କେତେକଥା କହୁଥାନ୍ତି । ସେ ସବୁ ନଶୁଣି ଇନ୍ଦ୍ର ପିଣ୍ଡାତଳକୁ ଖସିଲେ । ସେତେବେଳକୁ ଷଣ୍ଢ ଦିଇଟା ଗୋଟେ କଣି ବାଡ଼ ଭାଙ୍ଗି ଅଦୃଶ୍ୟ ହୋଇଗଲେଣି ।

ଆଉ କିଛି ବାଟ ଗଲା ପରେ ଇନ୍ଦ୍ର ଦେଖିଲେ ଜଣେ ଅଧା ବଅସିଆ ବ୍ରାହ୍ମଣ ଟୋକା କରିଆକନା ପିନ୍ଧି,ଗୋଡ଼ ଦୁଇଟା ଝୁଲେଇ ବଡ଼ପିଣ୍ଡାରେ ବସିଛି । ଦିଇଟାଯାକ ଗୋଡ଼ ବେଶ୍ ମୋଟା ଆଉ ପାଲିସ୍ । ଇନ୍ଦ୍ରଙ୍କ ଇଚ୍ଛା ହେଉଥିଲା ସେ ଗୋଡ଼ ଦିଇଟାକୁ ଟିକିଏ ଆଉଁସି ଦିଅନ୍ତେ । ଇମିତିଆ ସୁନ୍ଦର ସୁନ୍ଦର ମୋଟା ପାଇକର ଗୋଡ଼ ସ୍ୱର୍ଗରେ କାହାର ନାହିଁ । ତାଙ୍କ ହାବଭାବକୁ ଲକ୍ଷ୍ୟ କରି ଉପରୁ ଶବ୍ଦ ଆସିଲା "ମାରେ ମାରେ ମୁଣ୍ଡିଆ ବେହିପୁଅ ତରିଯିବୁରେ" ।

ଭାଷାଟା ଶୁଣି ସେ ଆଉ ସେପଟକୁ ଲକ୍ଷ୍ୟ ନକରି ସିଧା ମନ୍ଦିର ଆଡ଼କୁ ଚାଲିଲେ । ସିଂହଦ୍ୱାର ପାଖେ ପହଞ୍ଚିଛନ୍ତି କି ନାହିଁ ତିନଟା ପଣ୍ଡା ଟୋକା ତାଙ୍କ ଉପରକୁ କୁଦି ପଡ଼ିଲେ । କିଏ କେତେ ପ୍ରକାର ଭାଷା କହି ଚାଲିଥାନ୍ତି । ତାଙ୍କ ସ୍ୱର ସଙ୍ଗେ ସ୍ୱର ମିଳେଇଲେ ଭିକାରୀପଲ । ଇନ୍ଦ୍ର ଯେଉଁ ପଟକୁ ଚାହୁଁଛନ୍ତି, ସେପଟେ ଖାଲି ହାତ । ମୁହଁ ଟେକି ମନ୍ଦିର ପାଚେରୀ ଆଡ଼କୁ ଚାହିଁଲାବେଳକୁ 'ହାତ ଚିହ୍ନ'ର ଛବି, ପଛକୁ ଚାହିଁଲା ବେଳକୁ ଘରମାନଙ୍କ କାନ୍ଥରେ ହାତ ଚିହ୍ନର ଲିଫ୍‌ଲେଟ୍ ମରା ହୋଇଛି । ଏସବୁ ଦେଖି ସେ ଭାବିଲେ, ଏ ଭୂଖଣ୍ଡରେ 'ହାତ' ଭଲ କାମ କରୁଛି । ସେ ଭାବୁଥିଲେ ଗୋଟେ କିଛି ହାତ କାମ ଦେଖାଇବା ପାଇଁ । ହେଲେ ଜଗନ୍ନାଥ ଖରାପ ଭାବିବେ ।

କୌଣସି ମତେ ଏ ହାତମାନଙ୍କୁ ଆଡ଼େଇ ମନ୍ଦିର ଭିତରକୁ ପଶିଲେ । ପ୍ରଭୁଙ୍କୁ ଗରୁଡ଼ ସ୍ତମ୍ଭର ପଛଆଡ଼ୁ ଗୋଟେ ନମସ୍କାର ମାରି ସ୍ୱର୍ଗୀୟ ଭାଷାରେ ଡ଼ାକିଲେ । ବୁଝ୍ ବୁଝ୍ ଜଗନ୍ନାଥଙ୍କ ପେଟ ଖରାପ । ପ୍ରଭୁ କହିଲେ ବୁଝିଲେ ଇନ୍ଦ୍ର, ଆଉ କଣ ସବୁ ବାସନା ଚାଉଳ ଭୋଗ ମିଳୁଛି କିଓ ? ଖାଲି ଡାଇଚାଙ୍ଗ ଚାଉଳ ।

ଖାଇଲା ମାତ୍ରକେ ପେଟକୁ ମାରୁଛୁ । ତାଲି ପୁଣି ଏ ପଣ୍ଡାମାନେ କଳାକର ସନ୍ଧ୍ୟା ଛଅଟା ବେଳକୁ ଭୋଗ ଦେଲେ । ଶୁଖିଲା ଡାଇଚୁଙ୍କ ଗୃହଜାତ ଅନ୍ନ ଖାଇ ପେଟ ଖରାପ ।

ଏ କଥା ଶୁଣି ଇନ୍ଦ୍ର କହିଲେ 'କଅଣ କରିବା ପ୍ରଭୁ ? ଆପଣ ତ ଆମର ଆତ୍ମାସଡ଼ର । କୌଣସି ମତେ ଏ କଳିଯୁଗଟା ଏଇଠି କଟେଇ ଦିଅନ୍ତୁ । ସତ୍ୟଯୁଗ ଆସିଲେ ଆପଣଙ୍କୁ ବଦଳି କରିନେବା । ଅବଶ୍ୟ ଏଠାରୁ ଗସ୍ତକରି ଗଲାପରେ ଆପଣଙ୍କ ବଦଳି ପ୍ରସ୍ତାବ ମୁଁ କ୍ୟାବିନେଟ୍‌ରେ ପକାଇବ ।

ଜଗନ୍ନାଥ କହିଲେ ହଇଓ ଏ ଡାଇଚୁଙ୍କ ଗୃହଜ ସାଙ୍ଗକୁ ଦାଲଦା ଘିଅ— ଏ ଦେହ ସତ୍ୟଯୁଗ ପର୍ଯ୍ୟନ୍ତ ରହିବକି ? ଅବଶ୍ୟ ଏଠାରେ ମଣିଷମାନେ ଡାଇଚୁଙ୍କ ଗୃହଜ କଥା ଛାଡ଼, ତା ସଙ୍ଗେ ମାଙ୍କଡ଼ା ପଥର ବି ଗ୍ରେବେଇ ହଜମ କରି- ଦେଉଛନ୍ତି ।

ଇନ୍ଦ୍ର କଥା ବାରେଇ ପଚାରିଲେ 'ମିସେସ୍' ଜଗନ୍ନାଥ କିମିତି ଅଛନ୍ତି ?

ମିସେସ୍‌ଙ୍କ କଥା ଛାଡ଼ । କଅଣ କହିବ । ତାଙ୍କ ମୁଣ୍ଡରୁ ମଥାମଣି ଏବେ ଚୋରିକରି ନେଇଗଲେ । କେତେ କଷ୍ଟରେ ଖାଣ୍ଟି ସୁନାରେ ଅଷ୍ଟଧାତୁ ଦେଇ କେତେବଡ଼ ମାଲ ତିଆରି ହୋଇଥିଲା ! ଏବେ ସେ ସୁନା ମିଳିବ ? ସବୁ ତ ବାଇଶି କ୍ୟାରେଟ୍ । ଖାଣ୍ଟି ସୁନା କାହିଁ ? ପୁଲିସବାଲା ଚୋର ଖୋଜୁଚନ୍ତି ବର୍ଷ ବର୍ଷ ଧରି । ମଥାମଣି ଗୋଟିଏ ଦିନଠାରୁ ତା' ମୁହଁ ଏଡ଼େ ।

ଏ କଥା ଶୁଣି ଇନ୍ଦ୍ର କହିଲେ, "ହିଁଆଲେ ମାଙ୍କ ମୁଣ୍ଡରୁ ଚୋରି କରୁ- ଛନ୍ତି ? ଓହୋ କି ଯୁଗରେ ଏ ମର୍ତ୍ତ୍ୟ ଗତି କରୁଛି । ଦିନ ଆଜି କେତେଦିନ ! ଆଗେ ତ ଯବନମାନେ ଆପଣଙ୍କୁ ଟଣାଓଟରି କରି ମନ୍ଦିର ଲୁଟି କରୁଥିଲେ, ଏବେ ଏମାନେ ବି ଯବନ ସାଜିଲେଣି ।

ଇନ୍ଦ୍ରଙ୍କ ମନଦୁଃଖ ଦେଖି ଜଗନ୍ନାଥେ ପଚାରିଲେ, ହଉ ଛାଡ଼—ତୁମର ଆଗମନ କୁଆଡ଼େ ?

ଇନ୍ଦ୍ର କହିଲେ ନାହିଁ ପ୍ରଭୁ—ଗୋଟେ ଜରୁରି ତଦନ୍ତ ଅଛି । ଏଇମିତି ଦୁଇ ତିନି ଦିନ ଲାଗି ପାରେ ।

ଜଗନ୍ନାଥେ କହିଲେ, ହଉ ହେଲା । ହେଇ ଭାଇନା ତ ଶୋଇପଡ଼ିଛନ୍ତି । କାଲିଠାରୁ ତାଙ୍କ ଅଣ୍ଟା ଧରିଛି । ରତ୍ନସିଂହାସନ ଉପରେ ବସିପାରୁ ନାହାନ୍ତି । ତାଙ୍କୁ ଆଜି ଆଉ ଦେଖା କରନା । ଫେରିଲା ଦିନ ଦେଖା କରିବ । ହଁ ତୁମେ ରହୁଛ କେଉଁଠି ? ଆଗେ ଆମର ଗେଷ୍ଟମାନେ ମନ୍ଦିର ଭିତରେ ରହୁଥିଲେ । ଏବେ

ମନ୍ଦିରଟାକୁ ଇମିତ ଗହଳି କଲେଣି ଯେ ଏଠାରେ ରହିବାକୁ କେହି ରାଜି ନୁହନ୍ତି । ତାଛଡ଼ା ପୁଣି ଚୋର ଭୟ । ଏ ଅସୁବିଧାରେ ଦିନେ ଦି'ଦିନ କଟାଇଦିଅ ।

ଇନ୍ଦ୍ର ଦେଖିଲେ ଜଗନ୍ନାଥେ ତାଙ୍କୁ ଆଭଏଡ଼ କରୁଛନ୍ତି । ତେଣୁ ସେ କହିଲେ, ନାଇଁ ପ୍ରଭୁ ଏଠା ଅବସ୍ଥା ତ ଶୁଣିଲି । ଭାବୁଛି ସମୁଦ୍ରକୂଳ ସ୍ୟାଣ୍ଡବିଚ୍ ହୋଟେଲରେ ଗୋଟେ ଦିନ କଟାଇ ଦେବି । କିଛି ଅସୁବିଧା ହେବନି ।

ଏ କଥା ଶୁଣି ପ୍ରଭୁ କହିଲେ—"ଠିକ୍ କଥା କହିଲ ଇନ୍ଦ୍ର, ଆଜି କାଲି ଯୁଗରେ ହୋଟେଲ ମନ୍ଦିରର ବୋପା ହେଲେଣି । ସେଇଠିକି ଯାଅ ଦେଖିବ କେତେ ପ୍ରକାର ଖାଇବା, କି ପରିଷ୍କାର କି ସୁନ୍ଦର ଆଲୁଅ । ମିଠା ମିଠା ଗୀତ । ଆଗେ ଅମବାସୀମାନେ ଗୀତ ଗାଉଥିଲେ, (ଦେବଦାସୀ) । ଏବର କର୍ତ୍ତାମାନେ ସେ ଗୀତଗୁଡ଼ାକୁ ଅଶ୍ଳୀଳ ଇତ୍ୟାଦି କହି କାଟି ଦେଲେ । କିନ୍ତୁ ହୋଟେଲରେ ସବୁ ପାଇବ । ତମ ଉର୍ବଶୀ ମେନକାକୁ ଟକାକାଟି ଦେଲି ପରି ସୁନ୍ଦର ସୁନ୍ଦରୀ ଝିଅମାନେ ବି ଗୀତ ଗାଉଛନ୍ତି । ଆଉ ଏଣେ ଦେଖ ମୋ ମନ୍ଦିରରେ ଚୁନ ବି ଲଗି ପାରୁନି । ଛାଡ଼ । ଯାଅ ଭଲ ହୋଟେଲ ଦେଖି ରହିବ । ମୋ ପେଟଟା କିମିତି କିମିତି ଲାଗିଲାଣି । ହଉ ଆସିଛ ଯେତେବେଳେ ଏଠା ରାଜଧାନୀ ଭୁବନେଶ୍ୱର ଆଡ଼େ ଟିକିଏ ବୁଲିଆସ । ସେଠି ଲିଙ୍ଗରାଜ ବି ଅଛି, ତାଙ୍କୁ ଟିକିଏ ଦେଖା କରିବ । ସ୍ୱର୍ଗରୁ ଅଭିଶପ୍ତା କେଜେଟା ବି ଭୁବନେଶ୍ୱରରେ ରହୁଛନ୍ତି । ଗଲା ବେଳକୁ ତାଙ୍କ ଠିକଣା ମନ୍ଦିର ଅଫିସରୁ ନେଇ ଯିବ—କହି ଜଗନ୍ନାଥେ ଇନ୍ଦ୍ରଙ୍କୁ ବିଦାୟ ଦେଲେ ।

ଶ୍ରୀମନ୍ଦିର ବାହାରକୁ ଆସିଲା ବେଳକୁ ସନ୍ଧ୍ୟା ପାଞ୍ଚ ପାଖାପାଖି । ଭୁବନେଶ୍ୱରକୁ ଯିବା ଲାଗି ତାଙ୍କ ଅନ୍ତରୀକ୍ଷ ଯାନତ କାମ କରିବନି । ବୁଟ୍ଟୁ ବୁଟ୍ଟୁ ପୁରୀ ଏକ୍ସପ୍ରେସ ଟ୍ରେନଟାଏ ସନ୍ଧ୍ୟା ୬ଟାରେ ଛାଡ଼ିବ । ପଛକୁ ନ ଚାହିଁ ତିନି ଚକିଆ ଯାନ ଉପରେ ବସି ଷ୍ଟେସନ ଆଡ଼େ ମୁହାଁଇଲେ ଇନ୍ଦ୍ର ।

## ( ୪ )

ଇନ୍ଦ୍ରଦେବ ରେଲ ଷ୍ଟେସନରେ ପହଞ୍ଚୁ ପହଞ୍ଚୁ ଗାଡ଼ି ସିଟି ମାରିଲାଣି । କାଳ ବିଳମ୍ବ ନ କରି ସେ ଅମୁହାଁ ହୋଇ ଦୌଡ଼ିଲେ । ଯେଉଁ ଡବାପାଖକୁ ଗଲେ ଦ୍ୱାର ମୁହଁରେ ପ୍ରବଳ ଭିଡ଼ । ପେଲି ଠେଲି କରିବାକୁ ଚେଷ୍ଟା କରି ଫେଲ୍ ମାଇଲେ । ଠେଲପେଲ ଭିତରେ ତାଙ୍କ ଅଣ୍ଟାକୁ କିଏ ଦି'ଥର ଅଣ୍ଡାଳି ସାରିଲେଣି । ସେ କିନ୍ତୁ ଶ୍ରୀମନ୍ଦିରରୁ ଚୋର ଶୁଣିବାବେଳଠାରୁ ପଇସା ପର୍ସକୁ ଅଣ୍ଟାତଳେ ବାନ୍ଧିଥାନ୍ତି ।

କୌଣସିମତେ ଠେଲି ପେଲି କରି ଗୋଟେ ଜନତା ଡ଼ବା ଭିତରକୁ ପଶିଗଲେ । ସେତେବେଳକୁ ଡ଼ବାଯାକ ମଣିଷ ଭର୍ତ୍ତି । ବସିବା କଥା ତ ଛାଡ଼, ଠିଆ ହେବାକୁ ଜାଗା ନାହିଁ । ଗାଡ଼ି ଗୃଲିବା ଆରମ୍ଭ କଲାଣି । ବିଚରା କିଛି ବାଟ ନପାଇ ଅଣ୍ଟା ଭାଙ୍ଗି ଠିଆହେଲେ । ତାଙ୍କର ଏ ସୁନ୍ଦର ଚେହେରା ଆଉ ଦୟନୀୟ ଅବସ୍ଥା ଦେଖି ଜଣେ ବଙ୍ଗାଳୀ ଭଦ୍ରଲୋକ ଠାକୁରଦା ସମ୍ବୋଧନ କରି ଗୋଟେ ଜାଗା କରିଦେଲେ । ଭଦ୍ରଲୋକଙ୍କ ସଙ୍ଗେ ତାଙ୍କ ସ୍ତ୍ରୀ, ବଡ଼ିଲା ଝିଅଟିଏ । ଝିଅଟି ଗୋଟିଏ କୋଣକୁ ବସି ଫିଲ୍ମ୍ ଫେୟାର ପଢ଼ୁଥାଏ ।

ଜାଗାଟା ମିଳିଗଲାରୁ ଇନ୍ଦ୍ର ପଟ୍‌କିନା ବସିପଡ଼ିଲେ । ଭାବିଲେ ରକ୍ଷା ମିଳିଲା । ହୁଆଲ୍ଟ ଶକ୍‌ସାରେ ଅଁସି ତାଙ୍କ ଅଣ୍ଟା ଦରଜ । ପୁଣି ଠିଆହୋଇ ଯାଇଥିଲେ ସେ ବୋଧେ ଉଠିପାରି ନଥାନ୍ତେ । ଯାହାହେଉ ମନେ ମନେ ବଙ୍ଗାଳୀ ଭଦ୍ରଲୋକଙ୍କୁ ବହୁ ଧନ୍ୟବାଦ ଦେଇ ଅଣ୍ଟା ସିଧାକଲାବେଳକୁ ତାଙ୍କ ପଛ ପଟୁ କିଏ ଦ'ଇଟା ମୃଦୁ ଧକ୍‌କା ଦେଇସାରିଲେଣି । ମୁହଁ ବୁଲେଇ ଦେଖିଲାବେଳକୁ ଗୃରି ପାଞ୍ଚଟା ଲମ୍ବା-କାଲିଆ ନଳୀପିନ୍ଧା ଟୋକା । ସମସ୍ତଙ୍କ ଗ୍ରୀବ ଖୋଲା—ଗଳୁରି ନଶ । ତାଙ୍କ ଭିତରୁ ଜଣେ କହିଲା, "ଘୁଞ୍ଚିବେ ଦାଦା ।" ଏତକ କହିବା ପୂର୍ବରୁ ସେ ଇନ୍ଦ୍ରଙ୍କୁ ଠେଲି ତା ବସିବା ପାଇଁ ଜାଗା କରି ସାରିଲାଣି ।

ସେପଟେ ଆଉ ଗୋଟେ ଟୋକା, ବଙ୍ଗାଳୀ ଭଦ୍ରଲୋକଙ୍କ ବେଡ଼ିଂ ଅଧେ ମୋଡ଼ି ଦୁଇଜଣଙ୍କ ପାଇଁ ଜାଗା କରି ବସି ଗଲଣି । ତାଙ୍କ ବଡ଼ିଲା ଝିଅ ଏମାନଙ୍କ ଉପରେ ଥରେ ଆଖି ବୁଲେଇ ଫିଲ୍ମ୍ ଫେୟାରର ପୃଷ୍ଠା ଭିତରେ ମୁହଁ ନୁଚେଇ ସାରିଥାଏ । ଇନ୍ଦ୍ର ଏମାନଙ୍କ ଚେହେରା, ବ୍ୟବହାର ଇତ୍ୟାଦି ଦେଖି ଶଚୀଙ୍କ କଥା ଭାବୁଥାନ୍ତି । ଏଇ ସମୟରେ ତାଙ୍କ ଭିତରୁ ଜଣେ କହିଲା, "ଗୋସେଇଁ ହାତଟା ଦେଖିଲ—ପରୀକ୍ଷାରେ ପାସ୍ କରିବି କି ନାହିଁ ?" କହି ହାତଟା ଲମ୍ବେଇ ଦେଲା । ତା' କଥା ଉପରେ ମନ୍ତବ୍ୟ ଦେଇ ଆଉ ଜଣେ କହିଲା, "ଶଳା ତୁ ପାଶ୍ କରିବୁନି ତ ଆଉ କଅଣ ଗୋସେଇଁ ପାଶ୍ କରିବ ? ସବୁଯାକ ବହି ପକେଇ ତ କପି କରିଛୁ —ବହିରୁ ଯେଉଁଟା ନପାଇଲୁ ସାର୍ ତ ଅସି ଅନ୍‌ସାର୍ ଡ଼ାକି ଦେଲେ । ଏଥିରେ ଯଦି ପାଶ୍ ନକରୁ ଆଉ ଏ ଗୋସେଇଁ ତୋ ହାତ ଦେଖି ପାଶ୍ କରେଇ ଦେବେ ?

ସେତେବେଳକୁ ଇନ୍ଦ୍ରଙ୍କ କୋଳ ଉପରେ ସେ ଟୋକା ହାତଟା ପକେଇ ଦେଇଥାଏ । ଇନ୍ଦ୍ର ଭାବୁଥାନ୍ତି ଏ ମର୍ତ୍ତ୍ୟରେ କଅଣ ଛାତ୍ର-ଛାତ୍ରୀମାନେ କପିକରି ପାଶ୍ କରନ୍ତି ? ପୁଣି ମାଷ୍ଟରମାନେ ପରୀକ୍ଷା ହଲରେ କପି ଯୋଗାନ୍ତି ଆଉ ଉତ୍ତର ଡ଼ାକି

ଯାଅନ୍ତି ? ଏ କଥା ଭାବୁ ଭାବୁ ତାଙ୍କ ଚୁଟିରେ ଆଉ ଗୋଟେ ଟୋକା ହାତ ମାରି କହିଲା, "ଗୋସେଇଁ ପାଠ କଥା ଛାଡ଼, ତା' ବାହାଘର କଥା କୁହ—ସେ ପ୍ରେମ କରି ବାହା ହବ ନା ନାହିଁ।" ତା ପାଟିରୁ କଥା ସରିଛି କି ନାହିଁ, ଅଧାଟଣ୍ଡିଆ ଚ୍ରମିନାର ସିଗାରେଟ୍ ଲଗେଇ ଲମ୍ବା ମୁହାଁ ପାତି ପରି ଦିଶୁଥିବା ଟୋକାଟା କହିଲା, "ହଇରେ ପୁଣି ସେଇ ପ୍ରେମ; ଶଳା—ତା' ବାପା ତ ଏକୁ ବାନ୍ଧକରି ଟାଙ୍କେ ଛେଚିଲା—ତଥାପି ଇଆର ପ୍ରେମ ନିଶା ଛାଡ଼ୁନି ?"

ହାତ ଦେଖଉଥିବା ଟୋକା ମନରେ କଥାଟା ଦାରୁଣ ଆଘାତ ଦେଲା। ସେତେବେଳକୁ ଅଧା ଓଡ଼ିଆ ବୁଝୁଥିବା ବଙ୍ଗାଳୀ ଝିଅ ମୁରୁକି ହସା ଦେଇ ସାରିଲାଣି। ହାତଟା ଚଟ୍କିନା ଉଠେଇ ନେଇ ସେ ଆରମ୍ଭ କଲା, "ବୁଝିଲୁ ତା' ବୋପା ଶଳା ଯିନା ମନା କରୁଛି—ସେ ଝିଅ ଶାଳୀକୁ କଅଣ ମୁଁ ଛାଡ଼ିବି ? ତୁମେ ମାନେ ସବୁ କଅଣ ପାଇଁ ଅଛ ? ମତେ ଟିକିଏ ମଦତ୍ କଲେ ଗୋଟେ ଟାକ୍ସି ଆଣି ସେ ଟୋକି ଫେରିବା ବାଟରେ ଟେକି ନେଇ ଚାଲିଯିବା। ଏ କଥା ଶୁଣି ଇନ୍ଦ୍ର ଅବାକ୍। ଏଠାରେ ପୁଣି ଭାବି ଶଶୁର ଏବଂ ସ୍ତ୍ରୀଙ୍କୁ ଏପରି ଭାଷାରେ ସମ୍ବୋଧନ କରାଯାଇ ପ୍ରେମ କରାଯାଏ ! ତାଙ୍କ ସ୍ୱର୍ଗରେ ପ୍ରେମ କରି ବିବାହ କରିବା ଘଟଣା ବହୁତ ଘଟିଛି। ଦରକାର ପଡ଼ିଲେ ମୁହାଁ ମୁହିଁ ଯୁଦ୍ଧ ହୋଇଛି, ମାତ୍ର ଏମିତି ପଛପଟିଆ ଷଡଯନ୍ତ୍ର ତ ସେ କେବେ ଶୁଣିନଥିଲେ ! ସେମାନଙ୍କ କଥା ତାଙ୍କୁ ବେଶ୍ ମଜା ଲାଗୁଥିଲା।

କଥାଟା ଠିକ୍ ଜମି ଆସୁଥିବା ବେଳେ ରସଭଙ୍ଗ କରି କେଉଁଠୁ ଥିଲେ ଟି.ଟି.ଆଇ. ବାବୁ କଳାକୋଟ୍, ଟୋପୀ ପିନ୍ଧି ପହଞ୍ଚିଲେ। ତାଙ୍କୁ ଦେଖି ଇନ୍ଦ୍ର ଭାବିଲେ ଏ ବାବୁ କିଏରେ ! ଯମରାଜାଙ୍କ ପରି ଦିଶୁଛନ୍ତି। ଏଙ୍କର ଆବିର୍ଭାବ ଏଠି କାହିଁକି ! ଯମରାଜ ଟି.ଟି.ଆଇ. ଟୋକାମାନଙ୍କୁ ଦେଖି ଗୋଟାଏ ଗ୍ରନସ୍ ଆସିଗଲା ବୋଲି ଭାବି ଆଖି ଉପରେ ଚଷମା ରଖି, ଗୋଟେ ହାତରେ ମୋଟା ଖାତାଟାଏ ଆଉ ଖଣ୍ଡେ କାଟନ ଧରି, ଆର ହାତର ଆଙ୍ଗୁଠି ନିର୍ଦ୍ଦେଶ କରି ଟିକେଟ ଟିକେଟ ବୋଲି କହୁଥାନ୍ତି। ଟୋକାମାନେ ସେ ଦିଗକୁ କର୍ଣ୍ଣପାତ କରୁ ନଥାନ୍ତି।

ଇନ୍ଦ୍ର ଭାବୁଥାନ୍ତି—ଟିକେଟ୍ କଅଣ ବାବା ? ସ୍ୱର୍ଗରେ ତ ଯିବାଆସିବା ପାଇଁ ଟିକେଟ୍ ଦରକାର ପଡ଼େନି ? ବଡ଼ ଅସୁବିଧାରେ ପଡ଼ିଲେ ସେ। ଏଇ ସମୟରେ ଟି.ଟି.ଆଇ. କହିଲେ "ହୋ ପିଲେ ଟିକଟ୍ ଦିଅ।" ତାଙ୍କ କଥା ଶୁଣି ଗୋଟେ ଟୋକା ଟି.ଟି.ଆଇ. ଆଡ଼କୁ ଚାହିଁକି ଆସିଲା। କହିଲା ତୋ କଥା ଆଗ ଉଇଥଡ୍ର କର। 'ହୋ ପିଲା' କଅଣ ? ଶଳା କଥା କହି ଶିଖି ଜାଣିନୁ ଟି. ଟି. ଆଇ.

ହେଉଛୁ ? ଆମେ କଲେଜ ଷ୍ଟୁଡ଼େଣ୍ଟ । ଆମମାନଙ୍କୁ କିପରି ସମ୍ବୋଧନ କରିବାକୁ ହୁଏ ତୁ ଜାଣିନୁ ? ଟି.ଟି.ଆଇ ଏମାନଙ୍କଠାରୁ ଏପରି ପ୍ରେମପୂର୍ଣ୍ଣ ସମ୍ଭାଷଣ ଶୁଣି 'ଟିକେଟ ନଦେଲେ ଗୁଡ଼୍‌ବାଇ' ବୋଲି କହି ବସିଲେ । ତାଙ୍କ ଭିତରୁ ଆଉ ଜଣେ ଚେପ୍‌ଟା ନାକିଆ ଟୋକା କହିଲା, "ହଇହୋ ଟି.ଟି ଆଇ ସାଇବ—ଆମେ କେବେ ଟିକେଟ କରି ଯାଉଛୁ ନା କି ? ନାଁ ଆମେ ନୂଆ ହୋଇ ଏ ଟ୍ରେନରେ ଯାଉଛୁ ? ତୁମେ ବୋଧେ ନୂଆ । କଥାକୁ ଆଉ ନବଢ଼ାଇ ଅନ୍ୟ ଡବା ଦେଖ ।"

"ଅନ୍ୟ ଡବା ଦେଖିବି ଟିକେଟ କାଢ଼—ନହେଲେ ଏବେ ଯାଙ୍ଗେ ସାଙ୍ଗେ ଗୁଣ୍ଡମାନଙ୍କୁ ଖବର ଦେବି । ଆରେ ବିନା ଟିକେଟରେ ରେଲଯାତ୍ରା, ପୁଣି ସେଥିରେ ଦାଦାଗିରି ?" —କହି ଟି.ଟି ଆଇ ଅନ୍ୟ ଡବା ଆଡ଼କୁ ଗଲେ । ସଙ୍ଗେ ସଙ୍ଗେ ଟୋକାମାନଙ୍କ ମଧ୍ୟରେ ମନ୍ତ୍ରଣା ହୋଇଗଲା ଏବଂ ପଛରୁ ଡ଼ାକ ପକାଇ କହିଲେ, "ଆଜ୍ଞା ଟି ଟି ଆଇ. ସାହିବ । ଆସନ୍ତୁ ଆସନ୍ତୁ ।"

ଡ଼ାକ ଶୁଣି ଟି.ଟି ଆଇ ଫେରିଲେ । ତାଙ୍କୁ ଦେଖି ସେ ଟୋକାମାନେ କହିଲେ, "ହଉ ଆମମାନଙ୍କ ଟିକେଟ୍ କାଟ । ଭୁଲ ହୋଇଗଲା ବିନା ଟିକେଟ୍‌ରେ ଆସିଛୁ, ଆଉ ଏ ଶଳା ଜାଣିନି ଆପଣଙ୍କୁ ଏମିତି ଟିକାଏ କହିଦେଲା । ଟି.ଟି ଆଇ. ରାଗ ଗରଗର ହୋଇ ଗୋଟେ ଗୋଡ଼ ବେଞ୍ଚ୍ ଉପରେ ଥୋଇ ଟିକେଟ କାଟିବାକୁ ଆରମ୍ଭ କଲେ । ଗୋଟାଏ ଟୋକା ତାଙ୍କ ବାଁ ପଟକୁ ବୁଲିଯାଇ ଅତି ଅତର୍କିତ ଭାବରେ ତାଙ୍କ ପେଟ ପାଖରେ ଗୋଟେ ଛ'ଇଞ୍ଚିଆ ଛୁରୀ ଲଗେଇ କହିଲା—"ଶଳା ବେଶି ପାଟିଗୁଣ୍ଡ କରିବୁ ତ ଏ ରାମପୁରୀ ଛୁରୀକୁ ଗିଳିବୁ ।" ଛୁରୀକୁ ଦେଖୁ ଦେଖୁ ଟି.ଟି.ଆଇର ଚପମାରଟା ତଳକୁ ଗଳିପଡ଼ିଲା । ଆଖି ପିଛୁଳାକେ ସବୁଯାକ ଟୋକା ମିଶି ଶୂନ୍ୟେ ଶୂନ୍ୟେ ଟେକି ନେଲେ ଟି ଟି. ଆଇ ବାବୁଙ୍କୁ । ମୁହୂର୍ତ୍ତିକ ଭିତରେ ଅଖାବସ୍ତା ପରି ହଲେଇ ହଲେଇ ଛାଡ଼ିଦେଲେ ଚଳନ୍ତା ରେଲଗାଡ଼ିରୁ । ବଙ୍ଗାଳୀ ଭଦ୍ରଲୋକ ମୁହଁ ବୁଲେଇ ଦେଖିଲା ବେଳକୁ ଟି ଟି ଆଇ ପଙ୍କରେ ଗଡ଼ଶା ମାଛ ଖେଳିଲା ପରି, ରାସ୍ତା କଡ଼ ନୟନଯୋର ପଙ୍କରେ ପଡ଼ି ଛଟପଟ ହେଉଥାନ୍ତି ।

ଟ୍ରେନ୍ ତାର ଚାଲିଥାଏ । କାମଟା ସାରି ଦେଇ ହିନ୍ଦି ଫିଲ୍ମ ହିରୋମାର୍କା ଟୋକାମାନେ ପୁଣି ଆସିଲେ । ସେତେବେଳେ ଇନ୍ଦ୍ରଦେବ ପ୍ରମାଦ ଗଣିଲେଣି— ପୁଣି ଯଦି ହାତ ଦେଖେଇବାକୁ କହିବେ, ସେ ମଲେ ।

ଟୋକାମାନେ ବସୁ ବସୁ ବଙ୍ଗାଳୀ ଭଦ୍ରଲୋକ ଅଧା ଓଡ଼ିଆ ଅଧା ବଙ୍ଗାଳିରେ କହିଲେ, ବୁଝିଲେ ବାବୁ, ଆଜିକାଲିର ଏ ଟି.ଟି.ଆଇ. ମାନେ ନିଜକୁ ଇନ୍ଦ୍ର ଚନ୍ଦ୍ର

ବୋଲି ଭାବୁଛନ୍ତି । କଲେଜ ପଢ଼ୁଆ ପିଲାଙ୍କ ସଙ୍ଗେ କେମିତି କଥାବାର୍ତ୍ତା କରାଯାଏ ଶିଖିବା ଦରକାର । ଯେତେହେଲେ ଆପଣମାନେ ଭଦ୍ର ଘରର ପିଲା, ଆଭିଜାତ୍ୟ ଅଛି । ଆପଣମାନଙ୍କ ଢଙ୍ଗେ ଏପରି କଥା ! ବଙ୍ଗାଳୀ ଭଦ୍ରଲୋକଙ୍କ କଥା ନ ସରୁଣୁ ସେଇ ଟୋକା ଇନ୍ଦ୍ରଙ୍କ ଆଡ଼କୁ ହାତଦେଖା ପର୍ବ ଆରମ୍ଭ କରିବାକୁ ବସିଲା । ଇନ୍ଦ୍ର କିଛି ବାଟ ନପାଇ ଟିକିଏ ବାଥ ରୁମ୍‌କୁ ଆସୁଛି କହି ସେଠାରୁ ଖସିଲେ । ଟ୍ରେନ ଆସି ଗୋଟେ ଷ୍ଟେସନରେ ଠିଆ ହେଲା । ବାଥରୁମ ଝରକାବାଟେ ଇନ୍ଦ୍ର ଦେଖିଲେ, ଟୋକା ଗୁଡ଼ାକ ଖପ୍‌ଖାପ ଡ଼ିଆଁ ମାରି ପାର ।

ହେ ଭଗବାନ ! କହି ଇନ୍ଦ୍ର ବାଥ୍‌ରୁମରୁ ବାହାରିଆସିଲେ ।

( ୪ )

ଗାଡ଼ି ଭୁବନେଶ୍ୱର ଷ୍ଟେସନରେ ପହଞ୍ଚିଲା ବେଳକୁ ସମସ୍ତ ସାଢ଼େ ଆଠ୍ । ଇନ୍ଦ୍ର ଗାଡ଼ିରୁ ଓହ୍ଲାଇ ନଇଁ ସୁଅରେ କାଠିକୁଟା ଭାସିଗଲା ଭଳି ମଣିଷ ଭିଡ଼ରେ ଗେଟ୍ ଆଡ଼କୁ ଠେଲିହୋଇ ଚାଲିଲେ । ଗେଟ୍ ପାଖେ ପ୍ରୁଣି କଳାକୋଟ ବାଲାକୁ ଦେଖି ରୋହିମାଛ ଉଜାଣି ସୁଅ କାଟିଲାପରି ପିଠିକାଟି ପଛକୁ ଚାଲିଲେ । ଗ୍ରୁଇ ଆଲୁଅ ଭିତରେ ଦମ୍ ନେଲା ବେଳକୁ ତାଙ୍କ ଆଗରେ ଆଉ ଚାରିପାଞ୍ଚ ଟୋକା ଚଙ୍ଗ ଚଙ୍ଗ ହୋଇ ଅନ୍ଧାରିଆ ରାସ୍ତା ଦେଖି ଷ୍ଟେସନ ପାରହେବାକୁ ଅଗେଇ ଥାନ୍ତି । ତାଙ୍କ କଥାବାର୍ତ୍ତାରୁ ସେ ଠିକ୍ ଠଉରାଇଲେ ଯେ, ସେ ବାବୁମାନେ ତାଙ୍କ ପରି ବିନା ଟିକେଟ ବାଲା ।

କିଛି ନଭାବି ତାଙ୍କ ପିଛାଧରି ସେଇ ଅନ୍ଧାର ଭିତରେ ଷ୍ଟେସନର ତାରବାଡ଼ ଗଳି ଆରପଟକୁ ପାରି ହେଲାବେଳକୁ ପଛରୁ "କିଏରେ କିଏରେ" ପାଟିକରି ଦଇଟା ଓଜନଦାରିଆ ଲୋକ ତାଙ୍କୁ ଧପଡ଼ାଇଲେ । ପାଟିଶୁଣି ଆଗ ଚାରିପାଞ୍ଚଟା ଟୋକା ଦେ ମାରଡ଼ିଆଁ । ବିପଦଟା ଘନେଇ ଆସୁଛି ଭାବି ସେ ବି ମାରିଲେ ଡିଆଁ । ଅନ୍ଧାରିଆ ଗାତ ଭିତରେ ପଡ଼ି ଉଠି ଚଲାରାସ୍ତାକୁ ଉଠିଲାବେଳକୁ ତାଙ୍କ ଲୁଗା ଅଙ୍କରିଆ ଗଛରେ ଗୁଡ଼େଇ ହୋଇ ସାରିଥାଏ ।

କଣ୍ଟା ଗଛରୁ ଲୁଗା ଛଡ଼େଇଲା ବେଳକୁ ପଛରୁ 'ଧରିବେ ଶଳାକୁ' କିଏ ପାଟିକଲା । ମୁହଁ ବୁଲାଇ ପଛକୁ ଚାହିଁଲାବେଳକୁ ଦଇଟା ଖାକିପୋଷାକିଆ ଲାଠି ଉଠାଇ ତାଙ୍କରି ଆଡ଼କୁ ଧାଇଁଛନ୍ତି । ଲାଠି ଦେଖି ହାଁ ହାଁ କହୁ କହୁ ଗୋଟେ ଲାଠିଆସି ତାଙ୍କ ପିଠିରେ । 'ବୋପାଲୋ', ପାଟିରୁ ବାହାରି ଆସିଲାବେଳକୁ ଗୋଟେ କଦାଳିଆ ମୁଥ ଆସି ମୁହଁରେ ।

ଓହୋ କହି ଇନ୍ଦ୍ର ତଳେ ବସି ପଡ଼ିଲେ । ସିନ୍ନଙ୍କ ଭିତରେ ଜଣେ ଛ'ଫୁଟିଆ ଏକତାରିଆ ଖାକିପୋଷାକ ପିନ୍ଧା ବାବୁ ପହିଷ୍ଟ ସମ୍ବୋଧନ କରି କହିଲେ "ହଇବେ ଶଳା ପକେଟ୍‌ମାରୁ—କେତେ ମାରିବୁ ବାହାର କର । ଭାବିଥିଲୁ ଅନ୍ଧାରେ ଅନ୍ଧାରେ ଝସି ଯିବୁ ନାଁ ? ଉଠ୍‌ବେ ।" ତାଙ୍କ ପାଟିରୁ କଥା ନସରୁଣୁ ଆଉ ଦୁଇଟା ଖାକିପୋଷାକିଆ ଇନ୍ଦ୍ରଙ୍କ ବେକଧରି ଉଠେଇ ଦେଲେଣି । ଅଧା ଲୁଗା କଣ୍ଟା ବାଡ଼ରେ । ଏ ଭିଡ଼ା ଓଟରିରେ ଯେତେବେଳକୁ ସେ ଅଧାଲଙ୍ଗଳା । ଇନ୍ଦ୍ର ସାଷ୍ଟାମ ହେଲାବେଳକୁ ତନଟାଯାକ ଖାକି ପୋଷାକିଆ ତାଙ୍କ ଅଣ୍ଟାତଳୁ ଗୁଡ ପର୍ଯ୍ୟନ୍ତ ହାତମାରି ଯେଉଁଠି ଯାହାଥିଲା ପକେଟସ୍ଥ କଲେ । ଏକତାରିଆ ବାବୁ କହିଲେ "ଆଣେ ଏ ଶଳାକୁ ଗାଡ଼ି ପାଖକୁ ଆଣ ।" ତନଫିଟିଆ ସାଲ୍ୟୁଟମାରି ଆଦେଶ ପାଳନ ପାଇଁ ପ୍ରସ୍ତୁତ ହେଲେ ।

ଇନ୍ଦ୍ର ଏତେବେଳଯାଏ କଥା କହିବାକୁ ସୁବିଧା ପାଉନଥିଲେ । କଣ୍ଟା-ବାଡ଼ରେ ଲୁଗା ଲଗି ଛଟପଟ ହେଲାବେଳକୁ ପିଠିରେ ଲାଠି—ପରେ ପରେ ମୁହଁରେ ମୁଥ । ଆଗ ପଛ ଭିଡ଼ା ଆଉ ଠେଲା ଭିତରେ ଇନ୍ଦ୍ର କହିଲେ, "ଆଜ୍ଞା ଆପଣମାନେ କେଉଁ ମହାପୁରୁଷ ? ମୋର କି ଅପରାଧ ଯେ ମୋ ଅଣ୍ଟାତଳୁ ସବୁ କାଢ଼ିନେଲ ? ଯାହାତ ଉତ୍ତମ ମଧ୍ୟମ ଦେଲ ଦେଲ, ଏବେ ମୋତେ ଛାଡ ।"

ତାଙ୍କ କଥା ଶୁଣି ତନଫିଟିଆ ବାଲା କହିଲା 'ଛାଡ ? ହେ ହାତୁ ସିଂହ ଶଳାକୁ ଦେଲ ଗୋଟେ ବାଇଶ୍ ପଳିଆ—ଶଳା ପୁଲିସ ବାଲାଙ୍କୁ ଚହ୍ନି ପାରୁନ ? ଏଣେ ମାଳସାହି ଭିତରେ ବାବୁ···(ମାଳସାହି ଭୁବନେଶ୍ୱର ରେଳଷ୍ଟେସନର ଅନ୍ଧାରିଆ ତଳି ଅଞ୍ଚଳ । ବହୁ ବାସିନ୍ଦାଙ୍କ ପାଇଁ ଏକ ପବିତ୍ର ସ୍ଥାନ । ଏହି ତୀର୍ଥ ସ୍ଥାନର ପବିତ୍ରତା ରକ୍ଷା କରିବାକୁ ଏଠାରେ ଅହରହ ପୁଲିସ ବନ୍ଦୋବସ୍ତ ଥାଏ । କେବଳ ଭୁବନେଶ୍ୱର ବାସିନ୍ଦାମାନେହିଁ ଏହି ସ୍ଥାନର ମହତ୍ତ୍ୱ ବୁଝନ୍ତି) ପୁଲିସ ବାଲାଙ୍କ ନାଁ ଶୁଣି ଇନ୍ଦ୍ର ଖୁସି ହୋଇଗଲେ । ତାଙ୍କରତ ଏ ବିଭାଗଟାକୁ ଦେଖିବାକୁ ଥିଲା, ଆଉ ଏତେଚଞ୍ଚଳ ଏମାନଙ୍କ ସଙ୍ଗେ ମିଳନ ଘଟିବ ସେ କେବେ ଚନ୍ତା କରିପାରି ନଥିଲେ । ମନଟା ଟିକିଏ କଉତୁକିଆ ହୋଇ ଆସିଲା ବେଳକୁ ପଛରୁ ଗୋଟାଏ ବାଡ଼ି ଗୋଡା ଉପରେ ବାଜିଲା । ତନଫିଟିଆ ପୁଲିସ କହିଲା "ଚାଲେ ଚାଲେ ଶଳା ! ଟ୍ରେନରୁ ପକେଟମାରୁ କରି ତାକୁ ମାଳସାହିରେ ଖସେଇବାକୁ ଆସିଥିଲା, ଆଉ ପୁଲିସ୍ ଦେଖିଲା ବେଳକୁ ଅଜଣା ଚାଉଳ ଭାତ ଖାଉଛୁ । ଶଳା ପକା ପାଜି ଅଛୁ । ବୁଝିଲୁ ସିଂହ, ଭାଗ୍ୟ ଭଲ ଗୋଟେ ଭଲ ୧୦୯ କେଶ୍ ମିଳି-ଗଲା । ପନ୍ଦରଦିନ ହେଲା ସେ ବେଧୁଆ ଇନସ୍‌ପେକ୍ଟର ବସେଇ ଉଠେଇ ଦେଉ-

ନଥିଲା ।" ଇନ୍ଦ୍ର ଭାବିଲେ 'ସନ୍ଦେହ ନ' କଅଣରେ ବାବା ? ଏମାନଙ୍କଠାରୁ ଯାହା ପାଇଲେ ସେ ତ "ନ" । ଉପରେ ପୁଣି ଇନସ୍‌ପେକ୍ଟର "ଶନ୍ଦେହ ଦେବେ ।"

କଥା ଭାବୁ ଭାବୁ ସେ ଆସି ପୁଲିସ ଗାଡ଼ି ପାଖରେ ପହଞ୍ଚି ଯାଇଥାନ୍ତି । ଜିପ୍ ଭିତରେ ଆଗରୁ ଗଣ୍ଡେ ଛ'ଟା ଖୁନ୍ଦି ହୋଇ ବସିଥାନ୍ତି । ଜିପ୍ ପାଖେ ଠିଆ ହୋଇଛନ୍ତି କି ନାହିଁ ଏକତାରକିଆ ବାବୁଙ୍କ ସଙ୍ଗେ ଦୁଇତାରକା ବାବୁ ଜୁଟିଗଲେ । ଦ-ତାରବାବୁ ତାଙ୍କୁ ଦେଖୁଦେଖୁ ଠୋ କିନା ଚଟକଣିଟେ ମାଇଲେ । ହଠାତ୍ ଚଟକଣା ଖାଇ ଇନ୍ଦ୍ର ଗାଲ ଆଉଁସୁ ଆଉଁସୁ ଆରଗାଲରେ ଆଉ ଗୋଟେ ଠୋ । "କେଉଁଠୁ ଆସିଛୁ ବେ ଶଳା, ତୋ ନା କଅଣ ?" ପଚାରିଲେ । ଇନ୍ଦ୍ର ପ୍ରାଣ ଭୟରେ କହିଲେ ତାଙ୍କ ନାଁ । ଇନ୍ଦ୍ର । ନାଁଟା ଶୁଣି ଶୁଣି ଦୁଇ ତାରକା ବାବୁ କହିଲେ "ଇନ୍ଦ୍ର ନାଁ ଚନ୍ଦ୍ରବେ ? ପୁରା ନାଁଟା କହୁନୁ" ? "ଇନ୍ଦ୍ର ଦାସ" ନାଁଟା କହିବାରୁ ବାବୁ ମନ୍ତବ୍ୟ ଦେଲେ "ଏ ଶଳା ନୟାଗଡ଼, ଖୋର୍ଦ୍ଧା ଆଡୁ ଆସିଛି । ପୁରୁଣା ଦାଗୀ ନିଶ୍ଚୟ । ବସାଅ ତାକୁ ଗାଡ଼ିରେ ।" କହି ଆଗ ବସି ପଡ଼ିଲେ ।

ଶ୍ରୁନ୍ୟେ ଶ୍ରୁନ୍ୟେ ତାଙ୍କୁ ଟେକି ନେଇ ଜିପ୍ ପଛରେ ଫୋପାଡ଼ି ଦିଆଗଲା । କଚଡ଼ା ଖାଇ ସାକମ୍ପୁକ ହୋଇ ବସିପଡ଼ିଲେ । ଗାଡ଼ି ଚାଲିଲାରୁ ଇନ୍ଦ୍ର ଭାବିଲେ "ଏ ଶଳା ଶବ୍ଦଟା ବୋଧେ ମର୍ତ୍ତ୍ୟଲୋକଙ୍କର ସବୁଠାରୁ ଶ୍ରେଷ୍ଠ ଶବ୍ଦ । କାହାର ହଉ ନହଉ ଏ ପୁଲିସ ବାଲାଙ୍କ ନିଶ୍ଚୟ । ତାଙ୍କ ସ୍ୱର୍ଗରେ ଯେପରି କୌଣସି ଦେବତାଙ୍କୁ ଦେଖି ହେ-ଭଦ୍ର ବୋଲି ସମ୍ବୋଧନ କରାଯାଇ ଡ଼କାଯାଏ, ଏଠାରେ ପୋଲିସବାଲା "ହେ ଶଳା" ବୋଲି ସମ୍ବୋଧନ କରନ୍ତି । ଅବଶ୍ୟ ଶବ୍ଦଟା ଏତେ ଖରାପ ଶୁଭୁନି । ସେ ଭାବିଲେ ଏ ପୁଲିସ ବାଲାଙ୍କୁ ଟିକିଏ ଶଳା ଡ଼ାକିବେ କି ! ମନେ ମନେ ପୁଣି ଭାବିଲେ ସମୟ ତ ଅଛି, ଦେଖାଯାଉ ।

କିଛି ସମୟ ପରେ ଗାଡ଼ିଯାଇ ଥାନାରେ ଅଟକିଲା । ଦ' ତାରକା ବାବୁ ଆଦେଶ ଦେଲେ ଏମାନଙ୍କୁ ହାଜତରେ ରଖ । ମୁଁ କାଲି ସକାଳୁ ଅଇଲେ ଏମାନଙ୍କ କଥା ବୁଝିବି । ଏ ଆଦେଶ ଦେଇ ସେ ବାହାରୁ ବାହାରୁ ବାହାରିଗଲେ । ବାକି ଖାକି ପୋଷାକିଆମାନେ ଛେଳିଗୋଠକୁ କଂସେଇଖାନାକୁ ଅଡ଼େଇ କରି ନେଲାପରି ତାଙ୍କୁ ହାଜତ୍ ଆଡ଼କୁ ଟାଣିଲେ । ହାଜତ୍ ଭିତରେ ପୂରେଇଲା ବେଳକୁ ତାଙ୍କୁ ପୁରା ଲଙ୍ଗଳା କରି ସର୍ଚ୍ଚ କଲେ । ଆଗରୁ ତ ସବୁ ଅଣ୍ଟାଳି ନେଇଥିଲେ, ଏବେ ତାଙ୍କ ଲୁଗାଟାକୁ ବାହାରେ ରଖି ଅଣ୍ଡରୱେୟାର ପିନ୍ଧାଇ ଭିତରକୁ ପଠେଇ ଦେଲେ । ହାଜତ ଭିତରେ ଆଗରୁ ଚାରି ପାଞ୍ଚ ଜଣ ଥାନ୍ତି । କୁସ୍ତିକଲା ମଲ୍ଲଙ୍କପରି କିଏ କାଛାମାରି ଶୋଇଛି ତ କିଏ ଚଡ଼ିପିନ୍ଧି ଶୋଇଛି । ଦେହର ନିଭୃତ ଅଂଶ ମଧ୍ଯ

କିଛୁ କିଛୁ ଦୃଷ୍ଟିଗୋଚର ହେଉଥାଏ । ସମସ୍ତଙ୍କ ଅବସ୍ଥାତ ସେଇଆ, କିଏ କାହାଆଡ଼େ ଗୃହୁଁଛୁ !

ଇନ୍ଦ୍ର ଏ ଅବସ୍ଥା ଦେଖି ହାଜତ୍ ଘର କଣକାନ୍ଥକୁ ଲଗି ବସିଲେ । ପୁଲିସ-ବାଲେ ହାଜତ୍ ତାଲା ପକାଇ ଗଲାପରେ ତାଙ୍କ ଭିତରେ କଥାବାର୍ତ୍ତା ହେଲେ । ଜଣେ କହିଲା, ବୁଝିଲ ଭାଇ କି ଦୁର୍ଯୋଗ ! ସକାଳୁ ସକାଳୁ ପାଞ୍ଚଶହ ଟଙ୍କା ଧରି ଆମ ଗାଁ ବାବୁ ପାଖକୁ ଆସୁଥିଲି । ବାପା ଟଙ୍କା ଦେଇଥିଲେ ମୋ ମାଟ୍ରିକ୍ ଫେଲ ପୁଅଟା ଗୋଟେ ଏନ୍ ଏମ୍ ଆର. ଚାକିରି ପାଇଥାନ୍ତା । ମଫସଲ ଲୋକ, ଷ୍ଟେସନ ତଳ ଦେଇ ଯାଉଥିଲି, ଏ ଯମମାନଙ୍କ ହାବୁଡେ ପଡ଼ିଲି । କିଂହା ବାସନ ବନ୍ଧା ପକାଇ ଯାହା ଆଣିଥିଲି, ଆଉ କଅଣ ମିଳିବ ?

ତାଙ୍କ କଥା ଶୁଣି ଆଉ ଜଣେ କହିଲା, ଗ୍ଲୁଡ ଗ୍ଲୁଡ଼ ବାବୁ ଯୋ ଗୟା— ସୋ ଗୟା । ପୁଲିସ ହାତକୁ ଟଙ୍କାଯାଇ ଆଉ କେବେ ଫେରିଲାଣି ? ସେ ହାତ ହେଲା ଲକ୍ଷ୍ମୀଙ୍କ ହାତ ଥରେ ଗଲେ ଅଣଲେଉଟା । ମୋ ସାନ ଭଉଣୀଟା ରୋଗରେ ପଡ଼ିଥିଲା । ଏଠି ମୋ ସାନଭାଇ କାମ କରେ । ତାକୁ ଧରି ସକାଳୁ ଆସିଥିଲି । ଏଠି ପହଞ୍ଚିଲା ବେଳକୁ ରାତି । କୁଆଡେ ଯିବି, ରାତିରେ ଭାଇକୁ କେଉଁଠି ଖୋଜିବି ଭାବି ମୁସାଫିର ଖାନାରେ ଶୋଇଥିଲି—ଭାବିଥିଲି ସକାଳ ହେଲେ ଯିବି । ଦେଖ— ଭାଗ୍ୟ ଆଣି ମୋତେ ଏଥି ଭିତରେ ପୂରାଇଲା—ଭଉଣୀଟା ମୁସାଫିର୍ ଖାନାରେ" ।

ଏମାନଙ୍କ କଥା ଶୁଣି ଆଉ ଜଣେ କହିଲା "ଦେଖ ଭାଇ ମୁଁ ଜଣେ ପୁରୁଣା ଲୋକ—ଏ ହାଜତରେ ବହୁ ଦିନରାତ କଟାଇଛି—ଜେଲ୍‌ରେ ବି । କିନ୍ତୁ ଆଜିକୁ ଆଠ ଦିନ ହେବ ଏ ହାଜତରେ ପଡ଼ିଛି, କିଏ ମୋ କଥା ବୁଝୁଛି ନାଁ ଶୁଣୁଛି ? ପିଲାଦିନେ ପେଟ ବିକଳରେ ଚୋରି କରିଥିଲି—ସେଇଦିନୁ ହେଲି ଚୋର । ଯାହାର ଯାହା ଚୋରି ହେଲା ପୁଲିସବାଲା ପଶିଲେ ମୋ ଘରେ । ସମସ୍ତଙ୍କ ଆଗରେ ମୁଁ ହେଲି ବଡ଼ ଚୋର । ଯେତେ ଭଲ ହେବାକୁ ଚେଷ୍ଟା କଲି ଏମାନଙ୍କ ଯୋଗୁ ଆଉ ଭଲ ହୋଇ ପାରିଲିନି । ଏବେ ମୁଁ ପକ୍କା ଚୋର୍ । ଯେଉଁମାନେ ଭଦ୍ରଲୋକର ଖୋଳ ଭିତରେ ରହି ଚୋରି କରୁଛନ୍ତି—ମୁଁ ତାଙ୍କ ଘରୁ ଚୋରି କରେ, ମଜାରେ ଖାଏ, ପିଏ, ଏ ଖାକି ପୋଷାକିଆ ବାବୁମାନଙ୍କୁ ଦିଏ, ଖୁଆଏ । ବେଳେବେଳେ ଏଠାକୁ ଆସେ ଯାଏ—ଶ୍ୱଶୁର ଘରକୁ ଜୋଇଁ ଆସିଲା ପରି । ହଉ ରାତି ବେଶି ହେଲାଣି— ଆଉ କଥାବାର୍ତ୍ତା ନ କରି ଶୋଇପଡ । ଦେଖୁନ ସେଇ ପୋଲିସ କନେଷ୍ଟବଲବାବୁ କିମିତି ଟୁଲ ଉପରେ ଘୁମେଇ ପଡ଼ିଲେଣି । ଇଚ୍ଛା କଲେ ଆମ୍ଭେମାନେ ଏ ହାଜତ

କାହ୍ନୁ କଣା କରି ଗୃଲିଯାଇ ପାରନ୍ତେ, ହେଲେ ଏ କନେଷ୍ଟବଲ ବାପୁଡ଼ାର ଗୃକିରି ଯିବ—କହି ସେ ଲୋକ ଗୋଡ଼ ଲମ୍ବାଇ ଶୋଇଗଲା ।

ଇନ୍ଦ୍ର ଭାବିଲେ ଏ ଭାରତ ଦେଶ ସ୍ୱାଧୀନ ହେଲା । ସ୍ୱାଧୀନ ଦେଶର ନାଗରିକମାନଙ୍କ ଅବସ୍ଥା ଏଇଆ । ହାଜତ ଭିତରେ ମେଣ୍ଢା ଖୁନ୍ଦାଲା ପରି ଖୁନ୍ଦି ଦେଇଛନ୍ତି ମନଇଚ୍ଛା । ଶୋଇବାକୁ ଟିକିଏ ଜାଗା ନାହିଁ, ପାଣି ନାହିଁ ଟିକିଏ ପିଇବାକୁ । ହଉ, ସକାଳ ହଉ ଦେଖିବା ।

ଇନ୍ଦ୍ର କାହ୍ନୁକୁ ଅ।ଉଜି ଅ।ଖି ବୁଜିଲେ ।

( ୭ )

ଭୋରୁ ଭୋରୁ ଇନ୍ଦ୍ରଙ୍କୁ ଜୋରରେ ପରିସ୍ରା ଲାଗୁଥାଏ । ବାଟ ନପାଇ ସେ ଡ଼ାକ ପକାଇଲେ । ତାଙ୍କ ଡାକ ଶୁଣି ବାହାରୁ କନେଷ୍ଟବଲ ଜଣେ ବିରକ୍ତ ହୋଇ କହିଲେ "ହଇବେ କାହିଁକି ପାଟି କରୁଚୁ ? ସେ ବାବୁ ହାଜତ ଗୃବିଧରି ଯାଇଛି, ଆସି ତାଲା ଖୋଲିଲେ ତ ବାହାରିବୁ ? ଆଉ ରଡ଼ି କାହିଁକି କରୁଛୁ ?"

"ଆଜ୍ଞା ପରିସ୍ରା ଜୋରରେ ଲାଗିଲାଣି ।"

"ଜୋରରେ ଲାଗିଲାଣି ତ ସେ ହାଜତ ଘରେଥିବା ଭଙ୍ଗା ଛେଲୁଆରେ କର ।"

ଇନ୍ଦ୍ର ସବୁଆଡ଼କୁ ଗ୍ଉାଁହିଲେ । ଲୋକଗୁଡ଼ା ଖୁନ୍ଦାଖୁନ୍ଦି ହୋଇ ଶୋଇଛନ୍ତି । ଏ ସମସ୍ତଙ୍କ ମଧ୍ୟରେ ପରିସ୍ରା କିପରି କରିବେ ? ଅଗତ୍ୟା ବାଧ୍ୟ ହୋଇ ଅଣ୍ଟାଚିପି ବସି ପଡ଼ିଲେ । ଅଧଘଣ୍ଟାକ ପରେ କନେଷ୍ଟବଲ ବାବୁ ଗୃବି ଫିଟାଇ ତାଙ୍କ ଅଣ୍ଟାରେ ଗୋଟେ ଦଉଡ଼ି ଲଗାଇ ପରିସ୍ରାଗାରକୁ ନେଲେ । କାନରେ ପଇତା ଦେଇ ବ୍ରାହ୍ମଣମାନେ ପରିସ୍ରା କରନ୍ତି । ଅଣ୍ଟାରେ ଦଉଡ଼ି ଲାଗିଥିବା ହେତୁ ତାଙ୍କୁ ଅଡୁଆ ଲାଗୁଥାଏ । କିନ୍ତୁ କଅଣ କରାଯିବ । ପରିସ୍ରା କଲାପରେ ପୁଣି ହାଜତ ଘରେ । ରାତିରେ ଖିଆପିଆ ନାହିଁ । ଖାଡ଼ା ଖାଡ଼ା ଉପାସ ।

ଦିନ ସାଢ଼େ ଦଶଟା ବେଳକୁ "ଦାରୋଗା" ବାବୁ ହଲି ହଲି ଅ।ସିଲେ । ଗୋଟେ କଣ ଚେୟାରରେ ବସିପଡ଼ି, ହାଜତ ଜଗୁଆଳୀ ପୁଲିସକୁ କହିଲେ, କାଲି ରାତିରେ ଯେଉଁମାନଙ୍କୁ ମାଲିସାହି-ଷ୍ଟେସନ ବଜାରରୁ ଅଣାଯାଇ ଥିଲା ତାଙ୍କୁ ଗୋଟି ଗୋଟି କରି ଆଣ—ସେମାନଙ୍କର ଭେରିଫିକେସନ ହେବ ।

ବାବୁଙ୍କ କଥା ଅନୁସାରେ ହାଜତରୁ ଗୋଟିଏ ଗୋଟିଏ ବାହାରିଲେ ।

କିଏ କହିଲା ଡାକ୍ତରଖାନା ଆସିଥିଲା ତ କିଏ କହିଲା ମଫସଲରୁ ଭାଇ ପାଖକୁ ଆସିଥିଲା । ତାଙ୍କ କହିବା ସତ୍ତ୍ୱେ ବାବୁ ସନ୍ଦେହ କରୁଥାନ୍ତି । ମାତ୍ର ଯାହା ପାଖେ ଯାହା ଥିଲା ସେଥିରୁ ଫଳେ ପୁଷ୍ଟେ ବାବୁଙ୍କୁ ଧରାଇ ଦେଲା ପରେ ସେମାନେ ମୁକ୍ତି ପାଉଥାନ୍ତି । ଯେ ମୁକ୍ତି ପାଉଥାଏ, ସେ ଥାନାରୁ କିମିତ ଉଆଁମାଶ ବାହାରିବ ସେଇ ଚିନ୍ତାରେ ଥାଏ । ଘଣ୍ଟାକ ଭିତରେ ଇନ୍ଦ୍ର ଦେଖିଲେ ହାଜତ୍ ପ୍ରାୟ ଖାଲି । ଆଗରୁ ଯେଉଁ ଦିଇଟା ଥିଲେ, ସେ ଦିଇଟା ଗଡୁଥାନ୍ତି । ଶେଷରେ ଇନ୍ଦ୍ରଙ୍କ ପାଳି ପଡ଼ିଲା । ''ଦିତାରିକା'' ବାବୁ ତାଙ୍କୁ ବହୁତ ପଚାରିଲେ । ଇନ୍ଦ୍ରଙ୍କର ତ ଭୁବନେଶ୍ୱରରେ ଭାଇ ଘର କି ଶଶୁର ଘର ନଥିଲା, ତେଣୁ ସେ ତାଙ୍କ ଉତ୍ତର ଠିକ୍ ଠିକ୍ ଦେଇ ପାରିଲେନି । ବାବୁଙ୍କ ସନ୍ଦେହ ବଢ଼ିଗଲା । ହାଜତ୍ ପୁଲିସକୁ ଡାକି କହିଲେ ଏ ଦୁଇଟାକୁ ରଖ ''ଶହେ ନ'' ଦିଆଯିବ । ପୁଲିସ ଭାଇ ସିଧା ଆସି ପୁଣି ତାଙ୍କୁ ହାଜତ ଭିତରକୁ ନେଇଗଲା । ହାଜତ ଭିତରେ ଆଗରୁ ଶୋଇଥିବା ଲୋକଟି କହିଲା ''କଅଣ ଭାଇ ଖସିଲନି ? ହଉ ରୁହ—କେତେଦିନ ଭାଗ୍ୟରେ ଅଛି ଏଠି ଗଡ଼ିବାକୁ ଗଡ଼ ।'' ଇନ୍ଦ୍ର ଆଉ କିଛି ନ କହି କାନ୍ଥକୁ ଅଉଜିଳି ବସିପଡ଼ି ଆଖିବୁଜି ଘୁମେଇବାକୁ ଚେଷ୍ଟାକଲେ ।

ଇନ୍ଦ୍ରଙ୍କୁ ସେତେବେଳକୁ ଗୁଇ ନିଦ ଆସିଯାଇଥାଏ, ହଠାତ୍ କ୍ରନ୍ଦନ ''ବାପାଲୋ-ମାଲୋ, ମରିଗଲି'' ପାଟି ଶୁଣି ତାଙ୍କ ଘୁମ ଭାଙ୍ଗିଗଲା । ହାଜତ୍ ରେଲିଂ ପାଖକୁ ଦଉଡ଼ିଆସି ଇନ୍ଦ୍ର ଦେଖିଲେ, ଚାରିପାଞ୍ଚଟା ଲୋକଙ୍କୁ ଲଙ୍ଗଳା କରି 'ଦିତାରିଆ' 'ଏକତାରିଆ' ବାବୁ ଲାଠି ଧରି ହାତ, ଗୋଡ଼ ସବୁ ଲଗାଇ ପିଟୁଥାନ୍ତି । ଗୋଟାକ ମୁହଁରୁ ରକ୍ତ ବାହାରୁ ଥାଏ । ଆଉ ଗୋଟାକ ଗୋଡ଼ ଫୁଲିଥାଏ । ସମସ୍ତଙ୍କ ହାତ ବନ୍ଧା । ବାବୁ ପଚାରୁଥାନ୍ତି ''କହ ଶଳା ଚୋରି ଜିନିଷ କେଉଁଠି ରଖିଛୁ ।'' 'ନାହିଁ ଆଜ୍ଞା ମୁଁ ଜାଣିନି' କହିଲା ମାତ୍ରକେ ଠୋ ଠୋ ବିଧା ଗୋଇଠା । ମାଡ଼ ଭୟରେ କେହିଟା କିଛି କହୁ ନଥାନ୍ତି । କିଛି ସମୟ ମାଡ଼ ହେଲା ପରେ ବାବୁ କହିଲେ ''ବସାଅ ତାଙ୍କୁ ସେଇଠି, ଖାଇବା ସବୁ ଏଙ୍କର ବନ୍ଦ'' କହି ତାଙ୍କ ଟେବୁଲ ପାଖକୁ ଗଲେ । ଇନ୍ଦ୍ର ଭାବିଲେ ମର୍ତ୍ତ୍ୟରେ ଏ କି ହାଲଚାଲ ! ସେ ତ ଶୁଣିଥିଲେ 'ପୋଲିସ' ଲୋକମାନଙ୍କର ଧନ ଜୀବନ ରକ୍ଷା ପାଇଁ କାମ କରେ । କିନ୍ତୁ ଏମାନେ ତ ଲୋକଗୁଡ଼ାକୁ ମାରୁ ମାରୁ ମାରିଦେବେ ! ଏ କି ସୁରକ୍ଷା ବାହିନୀ ହୋ ! ବେଳେ ବେଳେ ଅସୁରମାନେ ସ୍ୱର୍ଗପୁରୀକୁ ଚଢ଼ାଉ କରି ଦେବତାମାନଙ୍କୁ ବାନ୍ଧନ୍ତି । କିନ୍ତୁ ଏମିତି ମାଡ଼ ସେ କେବେ ଦେଖି ନାହାନ୍ତି । ଚୋର ଡାକୁଙ୍କୁ ପଚାରି ଉଚିତ କରିବାକୁ ଏମାନେ କଅଣ ଆଜି ପର୍ଯ୍ୟନ୍ତ କିଛି ଶିକ୍ଷାଲାଭ କଲେନି ! ସେଇ ଅସୁରଙ୍କ

ବୋପା ପର ଏମିତ ବ୍ୟବହାର କରୁଛନ୍ତି, ପୁଣି ତାଙ୍କର ନଜ ଲେକଙ୍କ ସଙ୍ଗେ ! ଏଠା ପୋଲିସ ତ ଅସୁରଙ୍କ ବଡ଼ବୋପା ।

ଏମିତ କଥାଟା ଭାବୁ ଭାବୁ ଅଉ ଜଣେ ଲେକ କାନ୍ଦ କାନ୍ଦ ଥାନା ଭିତରେ ପ୍ରବେଶ କଲେ । ତାଙ୍କର ବଡ଼ିଲା ଝିଅ ବେକରେ ଦଉଡ଼ି ଦେଇ ଆତ୍ମହତ୍ୟା କରଥାଏ । ଲେକଟା ଡ଼କା ପକାଇ ଥାନାକୁ ପଶିଲା ବେଳକୁ ବଡ଼ ବାବୁଙ୍କ "ଘଡ଼ଘଡ଼ଆ" ପାଟି ଶୁଣି ତା କାନ୍ଦ ଅଧା ବନ୍ଦ । କିଛି ସମୟ ବିତିଲ ପରେ ସେ ଲେକଟି କହଲ "ଆଜ୍ଞା ମୋ ଝିଅ ଦଉଡ଼ିରେ ଝୁଲୁଛି, ଟିକିଏ ଆସନ୍ତୁ ।"

"ଶଳା ବମ ବେ; ତୋ ଝିଅକୁ କ'ଣ ଆମେ ନେଇ ଦଉଡ଼ିରେ ଝୁଲେଇ ଦେଇଛୁ ନା କଅଣ ? କହୁ କହୁ ଚାଲିଯିବୁ ? ବସ ବସ ।"

ଥାନାବାବୁଙ୍କ କଥା ଶୁଣି ଲେକଟା ମୁହଁରେ ଦଧାର ଲୁହ ଶୁଖି ଆସୁଥାଏ । ତା ସାଙ୍ଗରେ ଆସିଥିବା ବାବୁ ବାହାରେ ବୁଲୁଥିବା କନେଷ୍ଟବଲ ସାଙ୍ଗେ କଥାବାର୍ତ୍ତା ହୋଇ ବାବୁଙ୍କୁ ଚୁପ୍ ଚୁପ୍ ଯାଇ କଅଣ କହଲେ । ତାପରେ ଯାଇ ବାବୁ ଜଣେ ଏକତାରଆ ବାବୁଙ୍କୁ ତଦନ୍ତ କରବାକୁ ପଠାଇଲେ । ଇନ୍ଦ୍ର ସିଆଡ଼କୁ ବୋକାଙ୍କ ପର ଚାହିଁଆନ୍ତି । ଶୋଇଥିବା ଲେକଟି କହଲ ଦେଖିଲୁ ପୁଲିସ ବାବୁଙ୍କ ଦରଦ ? ଲେକଟିର ଝିଅ ମରପଡ଼ିଛି ସେ ଲେକ ପ୍ରତ ଏମାନଙ୍କ ବ୍ୟବହାର ! ଏ କଅଣ ଗୋଟେ ଘଟଣା ? ଏମିତିଆ ଶହ ଶହ ଘଟଣା । ପ୍ରତ୍ୟେକ ବର୍ଷ ଏମାନେ 'ଜନ ସହଯୋଗ' ସଭା କରନ୍ତି । ବୁଝିଲ ଭାଇ, ସଭା ସମିତ କଲେ କଅଣ ନଜ ସ୍ୱଭାବ ବଦଳିବ ? ଏମାନେ ଆଗ ନଜ ସ୍ୱଭାବ ବଦଳାଇଲେ ସିନା ଲେକମାନଙ୍କ ଚରିତ୍ର ବଦଳାଇବେ ? କୁକୁର ଯଦ ଚାଲୁଣିକୁ କହବ ତୋ ଗାଣ୍ଡିରେ ଗୋଟେ କଣା— କଣ ହେବ ଭାଇ କହଲ ?

କିଛି ସମୟପରେ ଆଉ ଗୋଟିଏ ଲେକ ଆସି ଥାନାରେ ପହଞ୍ଚିଲ । ବିଚାରର ଦୁଧଆଳୀ ଗାଈଟା ଢ'ଦନ ହେଲ ହଜି ଯାଇଥାଏ । ବାବୁଙ୍କ ପାଖେ ହାତଯୋଡ଼ି ଗୁହାରି କଲ । ବାବୁ କହଲେ, "ଯା କାଗଜ ଦସ୍ତେ, ଦଇଟା କାର୍ବନ, ଗୋଟେ ପେନସିଲ୍ ଆଣିବୁ ।" ଲେକଟା କିଛି ବୁଝି ପାରଲନ—ସେ ତ ଆସିଛି ଗୋଟେ ଡ଼ାଏରି କରବାକୁ । ଲେକଟି ବୁଝିନପାରବା ଦେଖି ବାବୁ ବିରକ୍ତ ହୋଇ କହଲେ, "ଆବେ ଭକୁଆଙ୍କ ପର ଚାହିଁଛୁ କଅଣ ? ତୋ ବୋପା କଣ ଏଠି କାଗଜ କଲମ ଥୋଇଛି—ଯା ଆଣେ, ତାହେଲେ ତୋ ଡ଼ାଏରି ଲେଖାହେବ—ନହେଲେ ନାହିଁ । ଲେକଟି ଭାବଲ, "ଶଳା ଗାଈ ମିଳବ କ ନାହିଁ କେଜାଣି—ଥାନାକୁ ଆସୁ ଆସୁ ଅର୍ଥଦଣ୍ଡ ।"

ଦିନ ସେତେବେଳକୁ ଦିଇଟା ପାଖା ପାଖି । ଇନ୍ଦ୍ରଙ୍କ ପେଟଟା ଆଉଜି ପାଉଜି ହେଲଣି । ଗୋଟେ ଦିନ ଖାଡ଼ା ଖାଡ଼ା ଉପାସ;ସେଥିରେ ପୁଣି ଗାଧୁଆ ନାହିଁ କି ପାଧୁଆ ନାହିଁ । ହଠାତ୍ ଗୋଟେ ଲୋକ ଟଲ ପତ୍ରରେ ମେଞ୍ଚାଏ ଭାତ, ଟିକିଏ ଡ଼ାଲି, ତା ଉପରେ ଥୋଇ ହାଜତ ପାଖେ ହାଜର । ହାଜତ ଜଗୁଆଳ ଗେଟ୍ ଖୋଲିଲାରୁ ଲୋକଟି ହାଜତ ଭିତରେ ପତ୍ରରେ ଆଣିଥିବା ଭାତ ଥୋଇ ଦେଲା । ଇନ୍ଦ୍ର ଦେଖିଲେ ସେ ଅରୁଚିକର ଖାଦ୍ୟକୁ । ହାଜତରେ ଥିବା ଆଉ ଦିଇଟା ଲୋକ ଚୁପ ଚାପ୍ ଉଠି ଖାଇବାକୁ ଲଗିଲେ । ହେଲେ ଇନ୍ଦ୍ରଙ୍କ ହାତ ଯାଉ ନଥାଏ । ହାଜତ୍ ଜଗୁଆଳୀ ପୁଲିସଟି କହିଲା—"କିରେ ଖାଉନୁ ? ଶଳା ସରକାର ତ ଦେବେ ଏକ ଟଙ୍କା ଚାରିଅଣା ଗୋଟେ ମିଲ୍ ପାଇଁ—ଥାନା ବାବୁ କଅଣ ତା ଶଶୁର ଘରୁ ଆଣି ତୁମକୁ ମାଂସ-ଭାତ ଦେବେ ? ଗୋଡ଼, ମୂଷା ଲଣ୍ଡି, ଯାହା ଆଣିଛୁ ଚକଟି ଚାକେଟି ଖାଇଦେ ।"

ସେ ଦ୍ରବ୍ୟ ଭୋଜନ ଦେଖି ଇନ୍ଦ୍ରଙ୍କ ଭୋକ ମରିଗଲା । ହାଜତ ଭିତରେ ଆର ଲୋକଟି କହିଲା "ଭାଇ ତୁ ଯଦି ନଖାଇବୁ କାହିଁକି ଫୋପାଡ଼ିବା, ଦେ ମୁଁ ଖାଇ ଦେଉଛୁ"—କହି ତାଙ୍କ ପତ୍ରରେ ଥିବା ଖାଦ୍ୟକୁ ଶେଷ କରିଦେଲା । ଇନ୍ଦ୍ର କହିଲେ, "ଆପଣମାନେ ଏଇ ଖାଦ୍ୟ ଖାଇ ଆଜକୁ ଆଠଦିନ ହେଲା ଜୀବନ ଧାରଣା କରିଛନ୍ତି ?" ଖାଇ ହାତ ପୋଛୁ ପୋଛୁ ଲୋକଟି କହିଲା, "ଆଉ କଅଣ ଚାରା ଅଛି ? ଏଠୁ ବାହାରିଲେ ପୁଣି କିଛି ଦିନ ଆରାମ୍‌ରେ ବୁଲି ଚରିବୁ ।"

ସେତେବେଳକୁ ଦିନ ଚାରିଟା ପାଖା ପାଖି । ହାଜତ୍ ଜଗୁଆଳୀ ଖବର ଦେଲା ଯେ ସେମାନେ ସବୁ କୋର୍ଟକୁ ଚାଲାଣ ହେବେ । କଥାଟା ଶୁଣି ସମସ୍ତେ ଧଡ଼ ପଡ଼ ହୋଇ ଉଠି ପଡ଼ିଲେ ।

( ୭ )

ଜେଲ୍ ଭ୍ୟାନରେ ଇନ୍ଦ୍ର ବସି କରେଷ୍ଟ ଆଡ଼କୁ ଚାଲିଲେ । ବାଟରେ ଗୋଟେ ଛକ ପାଖେ ହଠାତ୍ ଗାଡ଼ି ଅଟକିଗଲା । ତାଙ୍କ ସାଙ୍ଗେ ଯାଉଥିବା ଅନ୍ୟ ଲୋକଟି କହିଲା ଏଇଟି 'ରାଜମହଲ କର୍ଣ୍ଣିଂ' । ଇନ୍ଦ୍ର ଜାଲି ଭିତରୁ ମୁହଁ ମାଡ଼ି ଚାହିଁଲେ । କି ଅବସ୍ଥା ! ଧଳା ପୋଷାକ ଧାରୀ ପୁଲିସ ସୁସୁରି ମାରି ଚାଲିଛୁ, ସାଇକେଲ ତା ବାଟରେ, ରିକ୍‌ସା, ମଟର, ସ୍କୁଟର କିଏ କାହାକଥା ମାନୁ ନଥାନ୍ତି, କିନ୍ତୁ ଧଳା ପୋଷାକ ପୁଲିସ ସୁସୁରି ମାରି ଚାଲିଥାଏ ।

ଇନ୍ଦ୍ର ପଚାରିଲେ ଏକି ବ୍ୟବସ୍ଥା ? ଏଠି ତ କେହି କାହାକଥା ମାନୁ

ନାହାଁନ୍ତି, କିନ୍ତୁ ଥାନା ଭିତରେ ତ ମାମଲାଟା ଅଲଗା ! କଥାଟି ଶୁଣି ସାଥି ଲୋକଟି କହିଲା, "ଆମ ଦେଶରେ, ରାସ୍ତାରେ ସମସ୍ତଙ୍କର ସମାନ ଅଧିକାର, କିଏ କାହାର ଅଧିକାରକୁ ପଦରେ ପକେଇବାକୁ ଚାହେଁନି । ରାସ୍ତାଟା ଆମର ଅତି ପ୍ରିୟ । ରାସ୍ତାରେ ଆମେ ଚାଲୁ, ସେଇଠି ଝାଡ଼ାଫେରୁ, ପରିସ୍ରା କରୁ, ରୋଷେଇବାସ କରି ଖାଉ, ରାତିରେ ସେଇଠି ବି ଶୋଉ । ସବୁ କାମ ଆମ ଦେଶରେ ରାସ୍ତା ଉପରେ ହୁଏ । ତେଣୁ ଏ ଶଳା 'ପୋଲିସ୍' ବାଲା ରାସ୍ତା ଉପରେ ଆମର କିଛି କରି-ପାରିବେନି । କିନ୍ତୁ ଟିକିଏ ଗଳିକି ଗଳିଗଲେତ ଶଳା ଧରିପକେଇବେ ।" ଇନ୍ଦ୍ର ମନେ ମନେ ଭାବିଲେ, ସେ ଷ୍ଟେସନରୁ ଓହ୍ଲାଇ ରାସ୍ତାରେ ଯାଇଥିଲେ ଏତେ ଅସୁବିଧାରେ ପଡ଼ି ନଥାନ୍ତେ । ଟିକିଏ ଅବାଟ ହୋଇଗଲା ବୋଲି ଏ ଅବସ୍ଥା ।

ତାଙ୍କ ମନକଥା ସରିଛି କି ନାହିଁ, ଗାଡ଼ିଯାଇ ଥାଇ କଚେରୀ ହତାରେ ପହଞ୍ଚିଲା । କଚେରୀରେ ପହଞ୍ଚୁ ପହଞ୍ଚୁ ପୁରୁଣା ଦାଗୀମାନେ, ଯେଉଁଗୁଡ଼ାକ ହାଜତ ଭିତରେ ମଲପରି ପଡ଼ିଥିଲେ, ହଠାତ୍ ଚେଙ୍ଗି ଉଠିଲେ । ଇନ୍ଦ୍ର ଭାବିଲେ, କିରେ ବାବା ଏ କଅଣ ? ଏଗୁଡ଼ାକ ମଲପରି ପଡ଼ିଥିଲେ, ଏଠି ପହଞ୍ଚୁ ନ ପହଞ୍ଚୁଣୁ ମୃତ ସଞ୍ଜିବନୀ ପାଣି ପଡ଼ିଲେ ମଲା ଗୁଡ଼ାକ ଉଠିଲା ପରି, ଧଡ଼ପଡ଼ ହୋଇ ଉଠିଲେଣି !

ଜଗୁଆଲୀ ପୁଲିସ୍, ଭ୍ୟାନ କବାଟ ଖୋଲିଲା ପୂର୍ବରୁ ଅଧ ଡର୍ଜନେ କଳା-କୋଟ୍ ପିନ୍ଧା ସେ ଜାଲିବାଡ଼ ବାଟେ ମୁହଁ ଗଳେଇ ଆଖି ବୁଲେଇ ସାରିଲେଣି । ଗାଡ଼ି ଭିତରୁ ଓହ୍ଲଉ ଓହ୍ଲଉ ଜଣେ କହିଲା, "ଆଜ୍ଞା ନମସ୍କାର ।" କଳାକୋଟ୍ ବାବୁ କହିଲେ "କିରେ ଗୋବିନ୍ଦା ତୁ ଆସିଛୁ କିରେ ? ହଉ ହଉ ଠିକ୍ଅଛୁ ।" ଆର ଗୋଟାକୁ ଆଉ ଗୋଟିଏ କଳାକୋଟ୍ ବାଲା ଧରିନେଲା । ଇନ୍ଦ୍ର ସେମାନଙ୍କଠାରୁ ବୁଝିଲେ, ଏମାନେ ହେଉଛନ୍ତି "ଓକିଲ ଦଳ" । ଧର୍ମ ଅବତାରଙ୍କ ପାଖେ ଏମାନେ ଦୋଷୀ ନିର୍ଦ୍ଦୋଷୀଙ୍କ ପାଇଁ ଆର୍ଗୁମେଣ୍ଟ କରନ୍ତି । ଇନ୍ଦ୍ର ଭାବିଲେ ଏମାନେ "ଚନ୍ଦ୍ରଗୁପ୍ତ ଦଳ—ଧର୍ମାବତାରଙ୍କ ପାଖେ ସତ୍ ସତ୍ ସବୁ କହନ୍ତି ।

ଏଇ ସମୟରେ ଜଗୁଆଳୀ ପୁଲିସ୍ ତାଙ୍କୁ ଅଡେଇ ଅଡ଼େଇ ଗୋଟେ ରୁମକୁ ନେଲା । ସେଠାରେ ପୁଣି ଗୋଟେ ଖାକି ପୋଷାକୀ ବାବୁ । ସେ ପୁଣି 'କୋଟବାବୁ', ତାଙ୍କୁ ଘେରି ଓକିଲ ଦଳ । ଓକିଲ ଦଳମାନେ କୋଟବାବୁଙ୍କ ସଙ୍ଗେ ଲାଗିଥାନ୍ତି ଟିକିଏ ଜଲଦି ଜଲଦି କାଗଜ ପତ୍ର କରିଦେଲେ, ତାଙ୍କ ମକ୍କେଲ ଗୁଡ଼ାକୁ ଧର୍ମା-ବତାରଙ୍କ ଆଗେ ପେଶ୍ କରି ଦିଅନ୍ତେ । ସେତେବେଳକୁ ଇନ୍ଦ୍ରଙ୍କ ପାଇଁ ଜଣେ ଓକିଲ ଜୁଟି ଗଲେଣି । ଇନ୍ଦ୍ର ତାଙ୍କ ପାଖେ ପଇସା ପତ୍ର କିଛି ନାହିଁ ବୋଲି କହିଲେ । ତଥାପି ଓକିଲ ବାବୁ କହୁଥାନ୍ତି—"ଆରେ ତତେ ଛାଡ଼ କରିଦେଲେ ତୁ

କାଲି ଆଣି ଦଉନ ?" ତାଙ୍କ କଥା ଶୁଣି ପୁରୁଣା ଦାଗୀ ଟିକିଏ ହସିଦେଇ କହିଲା, "ନାଇଁ ବାବୁ, ସେ ଏ ଲାଇନର ଲୋକ ନୁହେଁ ।" ଏକଥା ଶୁଣି ଓକିଲ ମୁହଁମୋଡ଼ି ଚାଲିଗଲେ । ଇନ୍ଦ୍ର ଦେଖିଲେ କୋର୍ଟ ବାବୁଙ୍କ ପାଖେ ଓକିଲମାନେ "ପାନ ଜଳ-ଖିଆ" ଖର୍ଚ୍ଚ ବାବଦକୁ କିଛି ଦେଇ କାମକରାଇ ନେଉଛନ୍ତି । ଯେତେବେଳେ ଏତେ କାମ କରୁଛନ୍ତି, ବାବୁମାନେ କଅଣ ଚା-ପାନ ଖାଇବେନି ? ହେଲେ ଏବେ କାମଟା ଜଲଦି ହେଇଯାଉ ।

କୋର୍ଟବାବୁ କାମଦାମ ସାରି ସେମାନଙ୍କୁ ନେଇ ଧର୍ମାବତାରଙ୍କ ପାଖେ ପେଶ୍ କଲେ । ଇନ୍ଦ୍ର କାଠଗଡ଼ା ଭିତରେ ଅନ୍ୟମାନଙ୍କ ସଙ୍ଗେ ଠିଆ ହୋଇଥାନ୍ତି । ଗୋଟିକ ପରେ ଗୋଟିଏଙ୍କର ପାଳି । ଏମାନେ ସମସ୍ତେ 'ଶହେ ନ' ଦଫାରେ ଆସିଥାନ୍ତି । ତାଙ୍କ ଭିତରୁ ପ୍ରଥମ, ଯେ ଆଠଦିନ ହେବ ହାଜତରେ ଥିଲା, ତା ପାଳି ପଡ଼ିଲା । ତା ଓକିଲ ତାର ଚରିତ୍ର ଉପରେ ଗୋଟିଏ ସଂକ୍ଷିପ୍ତ ଭାଷଣ ଦେଲେ ଏବଂ ସେ 'ନିର୍ଦ୍ଦୋଷ; ଜୀବନରେ କେବେହେଲେ ଚୋରିକରେ ନାହିଁ—ଇତ୍ୟାଦି ଇତ୍ୟାଦି କହିଗଲେ । ସରକାରୀ ଓକିଲ ଚୁପ୍ ଚାପ୍ ଠିଆ ହୋଇଥାନ୍ତି—ଗାଡ଼ିରୁ ଓହ୍ଲାଉ ଓହ୍ଲାଉ ସେ ଲୋକ ତାଙ୍କୁ ସଲାମ ମାରିଥିଲା । ତା କଥା ବୁଝି ଧର୍ମାବତାର କହିଲେ—"ତାକୁ ଛାଡ଼ି ଦିଆଗଲା ।" ଲୋକଟି ହଜୁରୁଙ୍କୁ ନମସ୍କାର ପକାଇ ସେମାନଙ୍କ ପାଖକୁ ଆଡ଼େଇ ଠିଆହେଲା । ତାଙ୍କ ପାଖ ଲୋକଙ୍କୁ ଇନ୍ଦ୍ର ପଚାରିଲେ ଏ ଲୋକତ ମୋତେ ହାଜତ ଭିତରେ କହୁଥିଲା ଚୋରି ଛଡ଼ା ଆଉ ତାର କିଛି ବୃତ୍ତି ନାହିଁ—ଆଉ ତମ ଚନ୍ଦ୍ରଗୁପ୍ତ ତାଙ୍କ ଚରିତ୍ର ଉପରେ ଏତେ ସୁନ୍ଦର ଭାବେ ବର୍ଣ୍ଣନ କଲେ ?

ଲୋକଟି ଟିକିଏ ମୁରୁକି ହସା ଦେଇ କହିଲା, 'ଏ କଳାକୋର୍ଟ ବାଲା କଳାକୁ ଧଳା କରନ୍ତି—ଧଳାକୁ କଳା କରନ୍ତି । ଆଉ ଆମ ହାକିମମାନେ ମଧ୍ୟ ସେଇଆ ବୁଝନ୍ତି । ଦେଖନ୍ତୁ ନ ସେ କଳା କୋର୍ଟବାଲା ସରକାରୀ ଓକିଲ, ସେ କିଛି କହିଲା ? କାହିଁକି ନା ଓହ୍ଲାଉ ଓହ୍ଲାଉ ସେ ଲୋକଟି ସବୁ ବୁଝେଇ ଦେଇଛି । ଏଠୁ ଖସିଲେ ସରକାରୀ ଓକିଲଙ୍କ କଥା ବୁଝିବ—ତା ଓକିଲ କଥା ବୁଝିବ' ।

ଇନ୍ଦ୍ର କହିଲେ, "ଏଠାକାର ଚନ୍ଦ୍ରଗୁପ୍ତବାଲା କଅଣ 'ଦ ପଟିଆ' ?"

ଲୋକଟି କହିଲା—'ହଁ, ଆମ ଅପରାଧ-ନ୍ୟାୟ ସଂସ୍ଥା ସେଇଆ । ସରକାରୀ ଓକିଲ ହୋଇ ଦୋଷୀକୁ ସାହାଯ୍ୟ କରିବ, ପ୍ରତିପକ୍ଷ ଓକିଲକୁ ସରକାରୀ କାଗଜ ଦେଖାଇ ପାରିବ । ତାଙ୍କର କେହି କିଛି କରିପାରିବେନି । ଦେଖୁନ ସେ ଯେଉଁ ବୁଢ଼ା, କାଗଜ ମେଞ୍ଚେ ଧରିଛି, ଯାହାର ଲୋକ ନମିଳିବେ ଜାମିନ ନବା ପାଇଁ, ସେ

ଜାମିନରେ ନବ । କିଛି ଚନ୍ତାନାହିଁ ତମେ ତାଙ୍କୁ ଚହ୍ନ କି ନଚହ୍ନ । ମାତ୍ର ବିଶ୍ୱାସ ବଡ଼ କଥା । ଏଠୁ ଗଲାପରେ ଯାହା ତୁମେ ହାତ ଦେଖାଣିଆ କାମ କରି ଆଣିବ, ଆଗ ତାଙ୍କୁ ଦବାକୁ ହେବ । ବର୍ଷ ବର୍ଷ ଧରି ଏମାନେ ବ୍ୟବସାୟିକ ଭାବେ ଜାମିନ୍ ନଉଛନ୍ତି । ହାକିମ୍ ହୁକୁମା କଅଣ ଜାଣୁନାହାନ୍ତି ? ଏଠି ସବୁ ଚାଲୁଛି, ଚାଲିବ । ଏ ଯେଉଁ ଧର୍ମାବତାରଙ୍କ ପେସ୍କାର ବାବୁ, ଦଶ କି ପନ୍ଦର ନ ଦେଲେ ସେ ତମ କାଗଜ ପେସ୍ କରିବେ ? ତା ହାତରେ ସବୁ । କାହାର କେଉଁ ତାରିଖ ହବ, କାହା କାଗଜ ମିଳିବନି, 'ଜବତ' କାଗଜ ଖସି ଯାଇ ତା ଜାଗାରେ ଆଉ ଗୋଟେ କାଗଜ ପଶିଯିବ, ସେ ସବୁ କରି ପାରିବେ । ତମ ପାଖେ 'ଟଙ୍କା, ବୁଝିଲ 'ଟଙ୍କା' ଥିଲେ ହେଲା । ଟଙ୍କା ଥିଲେ ଦିନ ଦ'ପ୍ରହରେ ଗୋଟେ ଲୋକକୁ ମାରି ଦେଇ ତୁମେ ନିର୍ଦ୍ଦୋଷରେ ଖଲାସ । ଚିତ୍ରଗୁପ୍ତର ବୋପାବି ତୁମ ଚରିତ୍ରରେ କଳଙ୍କ ଲଗେଇ ପାରିବେନି ।

ଇନ୍ଦ୍ର କହିଲେ—ଏ ତ ଭଲ ବିଚାର ଚାଲିଛି, ସେ 'ଯମଟା' କଅଣ ସ୍ୱର୍ଗରେ ବିଚାର କରୁଛି ? ସେ ଟିକିଏ ଇଆଡ଼େ ବୁଲି ଆସି ଏଠାକାର ବିଚାର ପଦ୍ଧତିରୁ କିଛି ଶିଖନ୍ତୁ, ନହେଲେ ଏମାନଙ୍କର ବିଚାର କରି ସ୍ୱର୍ଗକୁ ନେଇ ସେଠି ଗୋଟିଏ ଟ୍ରେନିଂ କ୍ଲାସ୍ ଖୋଲି ନ୍ୟାୟ ବିଚାର କଅଣ ଶିଖାନ୍ତୁ ।

ତାଙ୍କ କଥାବାର୍ତ୍ତା ସରିଲା ବେଳକୁ ପୁଲିସବାଲା କହିଲା 'ହେ ତୋର ତାରିଖ ହୋଇ ଗଲା, ଚାଲ ଜେଲକୁ ।'

( ୮ )

ସେ କାଲି ଗାଡ଼ିରେ ବସି ଇନ୍ଦ୍ର ଜେଲ ଗେଟ୍ ପାଖେ ପହଞ୍ଚିଲା ବେଳକୁ ରାତି ସାତ । ଇନ୍ଦ୍ର ଦେଖିଲେ ଏଠା ଖାକି ପୋଷାକଆଙ୍କ ଚେହେରା ଟିକିଏ ଅପ୍ରସ-ନ୍ନିଆ । ପୁଲିସ ଗାଡ଼ିବାଲା ହର୍ଣ୍ଣ ମାରି ମାରି ବେଦମ୍ ହେଲା ପରେ ଜଣେ ଜଗୁ-ଆଳୀ ହଲି ହଲି ଆସି ପହଞ୍ଚିଲେ । 'କାହିଁକି ଗୋଟେ ହର୍ଣ୍ଣ ଚପୁଚ ମୁଁ ? ସାନବାବୁ (ଅସିଷ୍ଟାଣ୍ଟ ଜେଲର) ଆସିଲେ ସିନା ଏମାନେ ଭିତରକୁ ଯିବେ, ଆଉ ମୋତେ ଅର୍ଡ଼ଛୁଆ କଲେ ମୁଁ କଅଣ ଭର୍ତ୍ତୀ କରିଦେବ ? ପୁଲିସ ଡ୍ରାଇଭର ଜେଲପୁଲିସଙ୍କ କଥା ଶୁଣି କହିଲା 'ବାବୁଙ୍କୁ ଟିକିଏ ଡାକ, ଦିନ ଦଶଟାରୁ ଆସି ରାତି ସାତ ଉପରେ—ଚା' ନାହିଁ କି ଜଳଖିଆ ନାହିଁ—କେତେ ସମୟ ଏ ଶଳାମାନଙ୍କୁ ଜଗି-କରି ବସିଥିବ ?

ସେମାନଙ୍କ କଥାବାର୍ତ୍ତା ଭିତରେ ଜେଲର ବାବୁ ଆସି ପହଞ୍ଚି ତାଙ୍କ ଅଫିସ

ଖୋଲିଲେ । ଇନ୍ଦ୍ର, ଆଉ ତାଙ୍କ ସଙ୍ଗେ ଗୋଟେ ତାଙ୍କ ଅଫିସ ଭିତରକୁ ପଶି ନାମ ଠିକଣା ଦେଲେ । ଇନ୍ଦ୍ର ବଡ଼ ଅଡୁଆରେ ପଡ଼ିଲେ, ତାଙ୍କ ନାମ, ବାପ ନାମ ଇତ୍ୟାଦି କହିବାରେ । ତେବେ ଜଗନ୍ନାଥଙ୍କ ନାମ ଆଗରେ ଦାମ, ମହାପାତ୍ର ଯୋଡ଼ି କାମ ଚଳେଇ ଦେଲେ । ତାପରେ ଭିତର କବାଟ ଖୋଲି ଅନ୍ଦରକୁ ଗଲିଲେ । ଓ୍ଵେକରେ ପେଟ ଜଳୁ ଥାଏ । ଇନ୍ଦ୍ର ପଚାରିଲେ 'ଏଠି କିଛି ଖାଇବା ବ୍ୟବସ୍ଥା ଅଛି କି ?' ଜେଲ ଓ୍ୱାଡ଼ରବାବୁ କହିଲେ 'ସନ୍ଧ୍ୟା ୭ଟା ପରେ ଜେଲକୁ ଆସିଲେ ଖାଇବା ବ୍ୟବସ୍ଥା ନାହିଁ, ଚୁପ୍‌ଚାପ ଶୋଇ ପଡ଼ ।' ଇନ୍ଦ୍ର ସେଇଆ କଲେ । ଗାଈ ଗୁହାଳେ ଭର୍ତ୍ତି ହେଲା ପରି ସମସ୍ତେ ଗୋଟିଏ ଗୋଠରେ ଶୋଇଲେ ।

ସକାଳୁ ହୋ ହାଲରେ ତାଙ୍କ ନିଦ ଭାଙ୍ଗିଗଲା । ଦେଖିଲେ ବେଳକୁ ଟଙ୍ଗେ କୋଡ଼ି କୋଦାଳ ଧରି ଗଲିଛନ୍ତି ବଗିଚାରେ କାମ କରିବାକୁ । ସେ ବୁଝିଲେ ଯେ, ବିଚାରାଧୀନ ବନ୍ଦୀ ହୋଇଥିବା ହେତୁ ତାଙ୍କୁ କାମ ଦାମ କରିବାକୁ ପଡ଼ିବନି, ବିଚାର ପର୍ଯ୍ୟନ୍ତ ଜେଲ ଭିତରେ ବସି ଖାଇବେ । ଇନ୍ଦ୍ର ପଚାରିଲେ 'ଆଚ୍ଛା ଭଲ କଥା ହେଲା, ବସି ଖାଇବାକୁ ପଡ଼ିବ ? ହଉ ଏ ବିଚାର କେତେଦିନ ଲାଗୁଛି ଲାଗୁ ।' ତାଙ୍କ ପାଖରେ ଆଉ ଜଣେ ବନ୍ଦୀ କହିଲା 'ବିଚାର—ଶଳା ଏ ରାଜ୍ୟରେ କି ବିଚାର ହୋ । ମୁଁ ଗୋଟେ ଗରିବ ଲୋକ, ଗାଁରେ ଭାଇରେ ଭାଇରେ ମାଡ଼ ପିଟ୍ ହୋଇ ଆସିଥିଲୁ । ଆଜକୁ ପାଞ୍ଚ ବର୍ଷ ହେଲାଣି ମୋ ବିଚାର ସରୁନି । ଲୋକେ କହୁଛନ୍ତି ଯେଉଁ ଦଫାରେ ମୋତେ କେଶ୍ ଦେଇଛନ୍ତି, ସେ ଦଫାରେ ଦଣ୍ଡ ହେଲେ, ମାସେ କି ଦି'ମାସେ । ମାତ୍ର ପାଞ୍ଚବର୍ଷ ହେଲା ମୁଁ ଜେଲରେ ପଚୁଛି । ମୋର ପଇସା ଥିଲେ, ବାବୁ କେବେଠୁଁ ଯାଆନ୍ତିଣି । ଗରିବ ଲୋକ କଥା କିଏ ବୁଝୁଛି ? ତାଛଡ଼ା ଏଠି ତ ଗଣ୍ଡେ ସୁଖରେ ଖାଇବାକୁ ମିଳୁଛି, କାମ କିଛି ନାହିଁ, ମାଗଣା ଡାକ୍ତର ଚିକିତ୍ସା, ଏ ସବୁ ସୁବିଧା ଗାଁରେ ପାଇଥାନ୍ତି କେଉଁଠୁ ? ପିଲା ମାଇପ ମୂଲ ଲାଗି ଚଳି ଯାଉଛନ୍ତି । ଏଠି ମୁଁ ଭଲରେ ଅଛି ।'

ତା କଥା ଶୁଣି ଆଉ ଜଣେ କହିଲା—'ତା କଥା କିଅଣ ଶୁଣୁଛ ବାବୁ— ମୁଁ ତ ଆଜକୁ ତିନି ବର୍ଷ ହେଲା ଏଠି ପଡ଼ିଛି—ମୋର ବା କି ଦୋଷ ? ମାଲିକ ମୋ ସ୍ତ୍ରୀ ପ୍ରତି ଖରାପ ବ୍ୟବହାର କଲା, ସେ କଥା କହିଲାରୁ ମୋ ନାଁରେ ମିଛ ସତ ଲଗାଇ ପୁଲିସବାଲାଙ୍କୁ ଧରି ମୋତେ ଜେଲ[illegible] ମ୍ବାଇଲା । ସେଇ ଦିନଠାରୁ ଜେଲରେ ମୋ କେଶ୍ ପଡ଼ୁଛି ନା ସରୁଛି ? ବାବୁତ ଓକିଲକୁ ଧରି ତାରିଖ ପରେ ତାରିଖ ।'

ଇନ୍ଦ୍ର କିଛି ସମୟ ଭିତରେ ବହୁତ କଥା ଶୁଣିବାକୁ ପାଇଲେ । ତାଙ୍କ କଥା

ଶୁଣି ଇନ୍ଦ୍ର ଭାବୁଥିଲେ ଏ କି ରାଜ୍ୟ ? ଏଠାରେ ନ୍ୟାୟ ପାଇବାକୁ ବର୍ଷ ବର୍ଷ ଲାଗୁଛି । ଦୋଷ ନ ହୋଇ ଲୋକ ଜେଲ ଖଟୁଛି । ଆହୁରି ଲୋକ ଅଛନ୍ତି, ଜେଲରୁ ଯିବାକୁ ବି ଚାହୁଁ ନାହାନ୍ତି । ବଡ଼ ଅଜବ ରାଜ୍ୟ ।

ହଠାତ୍ ଗୋଟେ ବାଟିକାଳିଆ ରାବ ଶୁଣି ତାଙ୍କ ଚିନ୍ତା ଭଗ୍ନ ହେଲା । ଟିକିଏ ଦୂରରେ ଗୋଟେ ଦାଇଟା ଟୋକା କଇଦୀ ଗୋଟେ ମୋଟା ଲୋକକୁ ଧରି ତା ଦେହର ଚାରିଆଡ଼େ ହାତ ମାରୁଥାନ୍ତି, ସେ ବାପ୍ପାଗ୍ ଡେଉଁଥାଏ । ଯେତେ ଡାକିଲେ ତା କଥା କେହି ଶୁଣୁ ନ ଥାନ୍ତି । ଇନ୍ଦ୍ର ପଚାରିଲେ ଏ କଥା କଅଣ ? ଜେଲ ଭିତରେ ଏ ଟୋକାମାନଙ୍କ ଅତ୍ୟାଚାର କାହିଁକି ?

ତାଙ୍କ ପାଖିରେ ହାତ ଦେଇ ଆଉ ଜଣେ କହିଲା, 'ପାଟି କରନି, ସେ ଟୋକାମାନେ ଜେଲର 'ଦାଦା' । ଜେଲର ବାବୁ ବି ତାଙ୍କୁ ଡରନ୍ତି । ଏ ଯେଉଁ ଲୋକଟି ସଙ୍ଗେ ଲାଗିଚନ୍ତି, ସେ ଗୋଟେ ଧନୀ ମାରୁଆଡ଼ି । ଭେଜାଲ ବାଣ୍ଡି କରୁ-ଥିବା ହେତୁ ଜେଲକୁ ଆସିଛି । ଏମାନେ ତାକୁ ଏମିତି ହଇରାଣ କରି କିଛି ଟଙ୍କା ଝଡ଼େଇବେ । ଜେଲ ଭିତରେ ମଦର ଚୋଲାଇ ବାହାନାରେ ଟଙ୍କା ଝଡ଼େଇ ଉଆଁଙ୍କ ନାଁରେ ଅଧେ, ଜେଲ୍‌ରେ ରହି ବାହାର ବ୍ୟବସାୟରେ ଅଧେ । ଯେତେ ଥିଲାବାଲା ଜେଲକୁ ଆସୁଛନ୍ତି ତାଙ୍କୁ ହଇରାଣ କରିବାରୁ ସେମାନେ ପଇସା ମଗାଇ ଏମାନଙ୍କୁ ଦଉଛନ୍ତି ।'

ଇନ୍ଦ୍ର ପଚାରିଲେ "ଅଚ୍ଛା ବାହାରେ ସିନା 'ଦାଦାଗିରି', ଏ ଜେଲ ଭିତରେ ବି "ଦାଦାଗିରି" ? ଅହେ ବାବୁ ଜେଲ୍ ଭିତରେ 'ଦାଦାଗିରି' ବାହାରକୁ ଜଣା ପଡ଼ିବନି । ବାହାର ଦାଦାଗିରି ତ ସମସ୍ତେ ଦେଖିବେ । ଇନ୍ଦ୍ର କାନମୁଣ୍ଡାରେ ହାତ ଦେଲେ ।

ଏଇ ସମୟରେ ତିନି ଚାରିଟା କଏଦୀ ପରିବା ବୋଝ ଧରି ଗେଟ୍ ଆଡ଼କୁ ଚାଲିଥାନ୍ତି । ଇନ୍ଦ୍ର ପଚାରିଲେ "ହଇହୋ ବାବୁ ଏ ପରିବା ଗେଟ୍ ଆଡ଼କୁ କାହିଁକି ଯାଉଛି ? ଜେଲ୍ ରୋଷେଇ ଶାଳାତ ଏପଟେ ।" ସାଥି କଏଦୀ କହିଲା, ତୁମେ ତ ନୂଆହୋଇ ଆସିଛ, ଜାଣିବ କେଉଁଠି ? ଶୁଣ, ଜେଲ୍‌ରେ ଯେତେ ପରିବା ହୁଏ, ତାର ଅଧାରୁ ଅଧିକ ଜେଲର ବାବୁ, ସାନବାବୁ, ଜେଲ୍ ସୁପରିନ୍‌ଟେଣ୍ଡେଣ୍ଟଙ୍କ ଘରକୁ ଯାଏ । ସେତିକି ନୁହେଁ, କଏଦୀମାନଙ୍କ ପାଇଁ ଯାହା ଖାଇବା ଜିନିଷ ଆସୁଛି, ସେଥିରୁ ବି କିଛି ସେଇମାନଙ୍କ ଘରକୁ ଯାଏ ।"

ଇନ୍ଦ୍ର ପଚାରିଲେ 'ଏଠାରେ ଏତେ ଲୋକ—ସେମାନେ ସବୁ ପେଟପୂରା ଖାଉଛନ୍ତି କି ନାହିଁ ?"

"ପେଟପୂରା ଖାଆନ୍ତୁ, ନ ଖାଆନ୍ତୁ କେତେଟା 'ଦାଦା' କଏଦୀଙ୍କ ହାତରେ ରଖିଲେ ହେଲା । ଯେଉଁମାନେ ପ୍ରତିବାଦ କରିବେ, ସେ ଲଗେଇ ଦେ । ମାଡ଼ରେ ଦାନ୍ତ ଭାଙ୍ଗିଯିବ—କେଉଁ ବୋପା ତୁମ ପିଠିରେ ପଡ଼ିବ ଜେଲ୍ ଭିତରେ ? ସେଇ ଭୟରେ କିଏ କିଛି କୁହନ୍ତିନି । ଜେଲକୁ ତ ଆସିଛନ୍ତି, କଷ୍ଟ ଭୋଗିବାକୁ ପଡ଼ିବ, ପ୍ରତିବାଦ କରି ଲାଭ କଅଣ ?"

ସେତିକି ବେଳକୁ ତାଙ୍କ ଖାଇବା ଆସିଗଲା । କଏଦୀ ଭାଇଟି କହିଲା "ଆସ ଆସ ଖାଇଦିଅ, ପରେ କଥାବାର୍ତ୍ତା ହବା । ତୁମେ ତ ଗୋଟେ ଦିନ ହେଲା ଆସିଛ, ଏଠି ରହିଲେ ସବୁ ବୁଝିଯିବନି କି ।"

( ୯ )

ଜେଲ୍ ଭିତରେ ଗୋଟେ ଦିନ ରହିଲା ପରେ ଇନ୍ଦ୍ରଙ୍କ ଦେହ ଭୀଷଣ ଖରାପ ହେଲା । ସେ ଦିନ, ରାତିରେ ଶୋଇ ପାରିଲେନି । ରାତିଟା ଯାକ ଛଟପଟ ହେଉଥାନ୍ତି । ତା ସାଙ୍ଗକୁ ଡ଼ାଉଁସ ପରି ମଶା । ସକାଳ ହେଉରୁ ସାଥୀ କଏଦୀମାନେ ଜେଲ ଓ୍ୱାର୍ଡ଼ରଙ୍କୁ ଏକଥା କହିଲେ । ଓ୍ୱାର୍ଡ଼ର ବାବୁ ସାନବାବୁଙ୍କୁ ଖବର ଦେଲେ । ଶେଷକୁ ବୁଝାଗଲା ଯେ, ଜେଲର ଡାକ୍ତରବାବୁ ନାହାଁନ୍ତି—ଛୁଟିରେ । ଇନ୍ଦ୍ରଙ୍କ ଅବସ୍ଥା ଖରାପ ଆଡ଼କୁ ଯିବା ଦେଖି ଜେଲରବାବୁ ଆଦେଶ ଦେଲେ ତାଙ୍କୁ ବଡ ଡ଼ାକ୍ତରଖାନାକୁ ନେଇ ଦେଖାଇବା ପାଇଁ ।

ଡ଼ାକ୍ତରଖାନାକୁ ଯିବାପାଇଁ ସମସ୍ତ ବନ୍ଦୋବସ୍ତ କଲାବେଳକୁ ଦିନ ନଅଟା । ଇନ୍ଦ୍ରଙ୍କୁ ଗାଡ଼ିରେ ପକାଇ ଡ଼ାକ୍ତରଖାନା ଚାଲିଲେ । ସେତେବେଳକୁ ଇନ୍ଦ୍ରଙ୍କ ଛାତିରେ ଭୀଷଣ ଯନ୍ତ୍ରଣା । ସେକ୍ରେଟାରିଏଟ୍ ସାମ୍ନାରେ ରାସ୍ତା ଭିଡ଼ । ଗାଡ଼ି ଗତି ବନ୍ଦହେବା ଦେଖି ଇନ୍ଦ୍ର ଟିକିଏ ମୁଣ୍ଡ ଟେକି ଚାହିଁଲେ । ଗୋଟାଏ ଲୋକ ରକ୍ତାକ୍ତ ହୋଇ ରାସ୍ତା ଉପରେ ପଡ଼ିଛି । ତା ପାଖରେ ସ୍କୁଟର ଟାଏ, ଅଧା ଚେପା ହୋଇ ଉପରକୁ ଚକା କରି ଗଡ଼ୁଛି । ଗୋଟେ ଗାଡ଼ି ସ୍କୁଟରବାଲାକୁ ଧକ୍କା କରି ଚମ୍ପଟ । ଲୋକମାନେ ଜମିଥିଲେ ମଧ୍ୟ ରକ୍ତାକ୍ତ ଅବସ୍ଥାରେ ପଡ଼ିଥିବା ଲୋକଟିକୁ ଖାଲି ଦୂରରୁ ଦେଖି ଆହାହା ହେଉଥାନ୍ତି । ଏଇ ସମୟରେ ତାଙ୍କ ଆଗକୁ ଯାଇ ଗୋଟେ କଳା ଆମ୍ବାସଡ଼ର ଗାଡ଼ି ବ୍ରେକ୍ ଦେଲା । ଜଣେ ଯୁବକ ଲୋକଟିର ଅବସ୍ଥା ଦେଖି ତାଙ୍କ ଡ୍ରାଇଭରକୁ ଡ଼ାକି ଗାଡ଼ିରେ ପକାଇ ଡ଼ାକ୍ତରଖାନା ଆଡକୁ ଚାଲିଲେ । ସାଥେସାଥେ ରାସ୍ତା ସଫା । ତାଙ୍କ ଗାଡି ମଧ୍ୟ ତା ପଛେ ପଛେ ଚାଲିଲା । ଆଗରେ ବସିଥିବା ଡ୍ରାଇଭର ବାବୁ କହୁଥିଲେ ଯୁବକ ଜଣକ ଆଡ଼ିସ୍‌ନାଲ ସେକ୍ରେଟାରି

ଆଇ. ଏ. ଏସ୍. ଅଫିସର । ଇନ୍ଦ୍ର ଭାବିଲେ ସେ ଯେ ହେଉ, ରାସ୍ତାଉପରେ ପଡ଼ି ଛଟପଟ ହେଉଥିବା ଲୋକକୁ ଅକାଳମୃତ୍ୟୁ ମୁଖରୁ ବଞ୍ଚାଇବା ସମସ୍ତଙ୍କ କର୍ତ୍ତବ୍ୟ । ଖାଲି ଠିଆ ହୋଇ ଚୁ—ଚୁ କଲେ କଅଣ ହେବ ?

ତାଙ୍କ ଗାଡ଼ିଯାଇ ଡାକ୍ତରଖାନା କାଜୁଆଲ୍‌ଟି ପାଖେ ପହଞ୍ଚିଲାବେଳକୁ ସେ ଗାଡ଼ି ପହଞ୍ଚି ଯାଇ ଥାଏ । ଇନ୍ଦ୍ରଙ୍କ ହାତଧରି ଦଇଟା ଓ୍ୱାଡ଼ର ଗାଡ଼ିରୁ ଓହ୍ଲାଇ କାଜୁଆଲଟି ରୁମ୍ ପାଖକୁ ନେଲେ । ସେତେବେଳକୁ ସେ ଯୁବକ ଅଫିସର ଡ୍ୟୁଟିରେ ଥିବା ଡାକ୍ତରଙ୍କୁ କହୁଥାନ୍ତି "ଡାକ୍ତରବାବୁ ଗୋଟେ ଆକ୍‌ସିଡେଣ୍ଟ କେସ୍ ଟିକିଏ ଜଲଦି"—ସେ ତିନିଥର କହିଲା ପରେ ବି ଡାକ୍ତରବାବୁ ଶୁଣୁନାହାନ୍ତି । ମୁହଁ ମାଡ଼ି କଅଣ ଲେଖିବାରେ ବ୍ୟସ୍ତ । ସେ ପୁଣି ଟିକିଏ ପାଖକୁ ଘୁଞ୍ଚିଯାଇ କହିଲେ "ଡାକ୍ତର ବାବୁ, ଗୋଟେ ସିରିଅସ୍ ଆକ୍‌ସିଡେଣ୍ଟ କେଶ୍" । ଏଥର ଡାକ୍ତର ବାବୁ ବିରକ୍ତ ହୋଇ କହିଲେ "ତୁମେ କଅଣ ଦେଖି ପାରୁନ—ମୁଁ କେତେ ବ୍ୟସ୍ତ" । ଯୁବକ ଅଫିସର କହିଲେ ମୁଁ ବି ବ୍ୟସ୍ତ, ଆପଣ ଟିକିଏ ବ୍ୟବସ୍ଥା କଲେ ଗାଡ଼ିରୁ ତାଙ୍କୁ ଏଠାକୁ ନେଇ ଆସନ୍ତେ" । ଏକଥା ଶୁଣି ଡାକ୍ତର କହିଲେ "ମୁଁ କଅଣ ଯାଇ ତାଙ୍କୁ ନେଇ ଆସିବି ? ସେ ଷ୍ଟ୍ରେଚରବାଲା ସେଠି କେଉଁଠି ବସିଥିବେ ଦେଖ" । ଯୁବକ ଅଫିସରଟି କଅଣ କରିବେ, ଏପଟ ସେପଟ ହୋଇ ଗୋଟେ ଷ୍ଟ୍ରେଚରବାଲାକୁ ଠାବ କରି ଷ୍ଟ୍ରେଚର ଧରି ଆସିଲେ ।

ସେତେବେଳକୁ ଦୁର୍ଘଟଣା ଗ୍ରସ୍ତ ବ୍ୟକ୍ତିଙ୍କ ଦେହରୁ ଅତ୍ୟଧିକ ରକ୍ତସ୍ରାବ ଦ୍ୱାରା ତାଙ୍କ ଗାଡ଼ିର ସିଟ୍ ରକ୍ତରେ ବୁଡ଼ି ଗଲାଣି । ମାତ୍ର ଷ୍ଟ୍ରେଚରରେ ତାଙ୍କୁ ନେବାକୁ ଆଉ ଜଣେ ଦରକାର—ଲୋକଟି ମୋଟା । ବହୁ ଚେଷ୍ଟା ପରେ ମଧ୍ୟ ସେ ଲୋକଟିକୁ ବାହାର କରିପାରୁ ନାହାନ୍ତି । ତାଙ୍କ ଦେହ ରକ୍ତରେ ଜୁଡ଼ୁବୁଡ଼ୁ ହେଲା-ପରି । ସେ ପୁଣି ଡାକ୍ତରଙ୍କ ପାଖକୁ ଆସି କହିଲେ "ଆଜ୍ଞା ଆଉ ଗୋଟେ ଲୋକ ଦିଅନ୍ତୁ । ସେ ଲୋକଟିକୁ ଆମେ ଆଣିପାରୁନୁ" । ତାଙ୍କ କଥା ଶୁଣି ଡାକ୍ତର ରାଗିଗଲେ ଏବଂ ଉଚ୍ଚ ସ୍ୱରରେ କଥା ଆରମ୍ଭ କଲେ । ଏଇ ସମୟରେ ଅଫିସରଙ୍କ ଡ୍ରାଇଭର ଲୋକ ଯୋଗାଡ଼ କରି ରୋଗୀକୁ ଧରି ପହଞ୍ଚିଲେ ।

ଇନ୍ଦ୍ର ସେତେବେଳକୁ ଗୋଟେ କଣରେ ଠିଆ ହୋଇ ଏସବୁ ଦେଖୁଥାନ୍ତି । ମନେ ମନେ ଭାବିଲେ ଏ କି ଡାକ୍ତରଖାନା ! ରାସ୍ତାରେ ପଡ଼ି ମରୁଥିବା ଲୋକଙ୍କୁ ସାଧାରଣ ନାଗରିକଙ୍କ କର୍ତ୍ତବ୍ୟ ଦୃଷ୍ଟିରୁ ସେ ତାଙ୍କୁ ଡାକ୍ତରଖାନା ଆଣିଲେ । ଏଠି ଡାକ୍ତରଙ୍କ କର୍ତ୍ତବ୍ୟ ହେଉଛି ତାଙ୍କୁ ଶୁଶ୍ରୂଷା କରିବା । କିନ୍ତୁ ତା ପରିବର୍ତ୍ତେ ଏପରି ବ୍ୟବହାର । ଭଦ୍ରଲୋକଟି ସିନା ଭଦ୍ରାମୀ ଦୃଷ୍ଟିରୁ ତାଙ୍କ ପରିଚୟ ଦେଲେନି ।

ଦେଇଥିଲେ ବୋଧେ ଅବସ୍ଥା ଅଲଗା ହୋଇଥାନ୍ତା । ମାତ୍ର ଗରିବଗୁରୁବା ଯେଉଁମାନେ ମୃତ୍ୟୁ ସଙ୍ଗେ ଲଢ଼େଇ କରି ଏଠିକୁ ଆସିଛନ୍ତି, ତାଙ୍କ ଅବସ୍ଥା କଅଣ ହେବ ।

କିଛି ସମୟ ପରେ ତାଙ୍କ ପାଳି ପଡ଼ିଲା । ତାଙ୍କ ଗ୍ଲୁପ ପେଟରେ କଅଣ ଗୋଟେ ପକାଇ ଡ଼ାକ୍ତର କହିଲେ ଓ୍ୱାଡ଼କୁ ନେଇ ଯିବାକୁ । ତାଙ୍କୁ ପୁଣି ଘୋଷାରି ଘୋଷାରି ଓ୍ୱାଡ଼କୁ ନେଲେ । ଓ୍ୱାଡ଼ ଭିତର ଅବସ୍ଥା ଦେଖି ସେ ଚମକି ପଡ଼ିଲେ । ଖଟ ଉପରେ, ଖଟତଳେ ଗଡ଼ିଆଡ଼େ ରୋଗୀ ମାଲମାଲ । ରୋଗୀ ଯେତିକି ତାର ଦୁଇଗୁଣ ଲୋକ ଓ୍ୱାଡ଼ ଭିତରେ ଭିଡ଼ । ଗୋଡ଼ ପକାଇବାକୁ ଜାଗା ନଥାଏ । ତାଙ୍କୁ ଟାଣି ଟାଣି ଗୋଟେ ଖଟିଆ ଉପରେ ପକାଇ ଦେଲେ । ଖଟିଆରେ କମଳ ନାହିଁ କି ବେଡ଼୍‌ସିଟ୍ ନାହିଁ । ତକିଆ କଥା ଗୁଡ଼ । ତାଙ୍କ ସଙ୍ଗରେ ଆସିଥିବା ଓ୍ୱାଡ଼ର ଗୋଟିଏ ନର୍ସଙ୍କୁ ଦେଖି କହିଲା 'ଦିଦି ଗୋଟିଏ ତକିଆ ଦିଅ' । ଦିଦି କହିଲେ 'ତକିଆ' ? ତମ ଭାଗ୍ୟ ଭଲ ଗୋଟେ ଖଟିଆ ପାଇଲ । ପୁଣି ତକିଆ ଖୋଜୁଛ ? 'ହଉ ଦେଖିବା' ଏତିକି କହି ସେ ଚାଲିଗଲେ ।

ଇନ୍ଦ୍ରଙ୍କ ଗ୍ଲୁପରେ ସେମିତି ଯନ୍ତ୍ରଣା—ଡ଼ାକ୍ତରଙ୍କ ଦେଖା ନାହିଁ । କିଛି ସମୟ ଗଲାପରେ ଗୋଟେ ବୁଲା ଷଣ୍ଢ ଆସି ତାଙ୍କ ମୁଣ୍ଡ ପାଖ ଝରକାପାଖେ ଦେଖାଦେଲା । ଇନ୍ଦ୍ର ଭାବିଲେ ଏ ଷଣ୍ଢଟା ସିଧା ଡ଼ାକ୍ତରଖାନାରେ ! ଷଣ୍ଢଦେଖି ପୁରୁଣା ରୋଗୀଙ୍କ ଭିତରୁ କିଏ ଗୋଟେ ଅଧା ପାଉଁରୁଟି, ବିସ୍କୁଟ ଦେଲେ । ଜଣେ କହିଲା 'ଏ ଷଣ୍ଢଟା ଭଲ ଷଣ୍ଢଟିଏ । ପ୍ରତ୍ୟେକଦିନ ଠିକ୍ ବେଳକୁ ଆସିବ—ବାରଣ୍ଡାରେ ଠିଆ ହୋଇ ସବୁ ଝରକା ପାଖେ ମୁଣ୍ଡ ଟେକିବ—ଯେ ଯାହା ଦେଲେ ଖାଇ ଚାଲିଯିବ ।' ଆଉଜଣେ କହିଲା ଖାଲି ଷଣ୍ଢ କାହିଁକି—ଏଠାରେ କୁକୁର, ବିରାଡ଼ି, ମୂଷାମାନେ ମଧ୍ୟ ଅବାଧରେ ବୁଲନ୍ତି; ରୋଗୀଙ୍କସଙ୍ଗେ ଶୁଅନ୍ତି । ଇନ୍ଦ୍ର ପଚାରିଲେ ଏଠି କଅଣ କିଛି ବନ୍ଦୋବସ୍ତ ନାହିଁ ? ରୋଗୀଙ୍କଓ୍ୱାଡ଼କୁ ଏମାନେ ପଶୁଛନ୍ତି ।

ତାଙ୍କ ପାଖ ଖଟିଆ ରୋଗୀଟି କହିଲା 'ବୁଝିଲ ବାବୁ ଏ ରାଜଧାନୀ—ଏଠାରେ ପିଅନଠାରୁ ମନ୍ତ୍ରୀ ପର୍ଯ୍ୟନ୍ତ ସମସ୍ତେ ରାଜା । କିଏ କାହାକୁ ମନା କରିବ ? ନହେଲେ ଦେଖୁନ—ରୋଗୀ ଯେତିକି ତା ଠାରୁ ଦୁଇଗୁଣ ତାଙ୍କର ଆଟେଣ୍ଡାଣ୍ଟ । ଡାକ୍ତର ସ୍ୱା ଭିତରେ ରୋଗୀ ଦେଖିବ ନା ଏମାନଙ୍କ କଥା ଶୁଣିବ ?' ଏଇଥିଲାଗି ସମସ୍ତଙ୍କର ଅବାଧ ଗତି ଡାକ୍ତରଖାନା ଭିତରକୁ, ଷଣ୍ଢ ଠାରୁ କୁକୁର ପର୍ଯ୍ୟନ୍ତ । ଯଦି କୌଣସି ଡାକ୍ତର ଏହାର ପ୍ରତିବାଦ କରିବ 'ତାର ଚାକିରି କାଲି ଅକାଲରେ ଯିବ ।' ପଶନ୍ତୁ ଷଣ୍ଢ, କୁକୁର, ରୋଗୀମାନେ ବି ସିନା ତାଙ୍କର କଅଣ ହେବ ?

ଏହି ସମୟରେ ଡାକ୍ତର ବାବୁ ପହଞ୍ଚିଗଲେ । ତାଙ୍କ ସଙ୍ଗେ ନର୍ସ ଇତ୍ୟାଦି । କିଛି ସମୟ ଦେଖାଦେଖି କଲାପରେ ଔଷଧ କିଣିବାକୁ ତାଙ୍କୁ କହିଲେ । ଇନ୍ଦ୍ର କହିଲେ 'ମୋ ପାଖେ ତ ପଇସା ନାହିଁ ।' ତାଙ୍କ କଥା ଶୁଣି 'ବଡ଼' ଜଣକ କହିଲେ, 'ତମପାଖେ ପଇସା ନଥିଲେ ଡାକ୍ତରଖାନାରେ ଔଷଧ ନାହିଁ—ଔଷଧ ତୁମକୁ କିଏ ଦେବ ? ତୁମ ଜେଲର ବାବୁଙ୍କୁ ଖବର ଦିଅ—ଔଷଧ ପଠାଇବେ ।' ଇନ୍ଦ୍ର ଭାବିଲେ ଡାକ୍ତରଖାନା ହୋଇଛି ସାଧାରଣ ଔଷଧ ନାହିଁ—ଗରିବ ଗୁରୁବା ଲୋକ କେତେ କିଣିବେ ? ଗୋଡ଼କୁ ଗୁପିଧରି ଯନ୍ତ୍ରଣା ସହିବାକୁ ଲାଗିଲେ । ତାଙ୍କର ଯନ୍ତ୍ରଣା ଦେଖି 'ବଡ଼' ଆଣି କିଛି ଔଷଧ ଦେଲେ ।

ତାଙ୍କ ଯନ୍ତ୍ରଣା ଟିକିଏ କମିଲା । ସେ ଖଟ ଉପରେ ବସି ଏପଟ ସେପଟକୁ ଚାହିଁଲେ । ହଲ ଗୋଟାକ ଯାକ ଗୁହାଳଘର ପରି ମଇଳା । ଇନ୍ଦ୍ର ପଚାରିଲେ ଏ ଘରସବୁ ସଫା ହୁଏନା କି ? ତାଙ୍କ ପାଖ ଖଟିଆବାଲା କହିଲା 'ସଫା ହୁଏ ହେଲେ ଆଜି ସୁଇପରମାନେ ଧର୍ମଘଟ କରିଛନ୍ତି—ସଫାକରିବ କିଏ ?

ଇନ୍ଦ୍ର ଧର୍ମଘଟ କଥା ନବୁଝିପାରି ବୋକାଙ୍କ ପରି ଚାହିଁଲେ । ତାଙ୍କୁ ଦେଖି ସେ ବାବୁ କହିଲେ 'ଏଠି ଡାକ୍ତରମାନଙ୍କ ଆସୋସିଏସନ, ନର୍ସମାନଙ୍କ ଆସୋସିଏସନ, ଖାଲି ରୋଗୀମାନେ ଆସୋସିଏସନ କରିପାରୁନାହାନ୍ତି ।

( ୧୦ )

ଡାକ୍ତରଖାନା ଖଟିଆରେ ମଶା, ଓ୍ବରପୋକ, ଆଉ ଦରୁ ପିମ୍ପୁଡ଼ି ମାନଙ୍କ ଦାଉରେ, ଇନ୍ଦ୍ର ରାତରେ ଭଲଭାବେ ଶୋଇ ପାରି ନଥିଲେ । ଅତି ସକାଳୁ ନିଦ ଭାଙ୍ଗିଯାଇଥାଏ । ଭାବିଲେ ସକାଳ ନିତ୍ୟକର୍ମଟା ସାରିଦେବେ । ପ୍ରଥମେ "ଦୁଇ" କାର୍ଯ୍ୟଟି ଶେଷ କରିବା ପାଇଁ ପାଇଖାନା ଆଡ଼କୁ ମୁହାଁଇଲେ । ପାଇଖାନା ପାଖେ ପହଞ୍ଚିଲା ବେଳକୁ ସେଠି ଗୋଟେ ଲମ୍ବା କ୍ୟୁ । କିଏ ହାତରେ ଭଙ୍ଗା ଅମୁଲ ଟିଣଧରି ଠିଆହୋଇଛି ତ କିଏ କିଏ ଚେପା ରସଢ଼ାଳ, କାହା ମୁହଁରୁ ଗୁଡ଼ାଖୁ ଧାର ବୋହି ଯାଉଛି ତ କିଏ ଲମ୍ବ କାଠିକୁ ଚୋବାଇ ଲାଗିଛି । ପାଇଖାନା ଘରର ପିଣ୍ଡା, ପିଣ୍ଡାତଳ, ବାହାର, ସବୁ ଆଡ଼େ ରାତି ପାହିବା ପୂର୍ବରୁ ରୋଗୀ ଏବଂ ରୋଗୀଙ୍କ ସଙ୍ଗେ ଆସିଥିବା ସେବାକାରୀ ଦଳ "ଦୁଇ" କରି ଦେଇଥାନ୍ତି । ଇନ୍ଦ୍ର ଦେଖିଲେ ପାଇଖାନା ଭିତରେ କି ବାହାରେ ଗୋଡ଼ ପକାଇବାକୁ ଜାଗା ନାହିଁ ।

ଅଗତ୍ୟା ଖଟିଆକୁ ଫେରିବା ପାଇଁ ବାଧ୍ୟ ହୋଇ ଫେରିବା ବେଳକୁ ତାଙ୍କ

ଓ୍ୱାର୍ଡ଼୍‌ର ବାରଣ୍ଡା ଉପରେ ଦେଏଣ ନେଏଣ ଉପରେ ଭିଡ଼ା ଓଟର ଚାଲିଛି । କଥାଟା ବୁଝ୍‌ ବୁଝ୍‌ ଜଣାଗଲା ଯେ ଜଣେ ରୋଗୀର ରକ୍ତ ଦରକାର । ଡାକ୍ତରଖାନା "ରକ୍ତ ଭଣ୍ଡାରରେ" ରକ୍ତ ନଥିବା ଦୃଷ୍ଟିରୁ ରୋଗୀର ପୁଅ ଗୋଟେ ଲିଷ୍ଟ ଧରି କାଲି ରାତିରୁ ରକ୍ତ ଦେବାଲୀମାନଙ୍କୁ ଖୋଜାଖୋଜି ଷ୍ଟେସନଛକରୁ ଦୁଇଟା ରିକ୍‌ସା ବାଲାଙ୍କୁ ଧରିକରି ଆଣିଥାନ୍ତି । ଇନ୍ଦ୍ର ଦେଖିଲେ ରିକ୍‌ସାବାଲା ଦିଇଟା ପବନରେ ଦୋହଲୁଥାନ୍ତି । ତାଙ୍କ ଦେହରେ କେତେ ରକ୍ତଅଛି ? ପୁଣି ଦିଇଟାଯାକ ପୂରା ମଦୁଆ—ମଦ ଗନ୍ଧ ତାଙ୍କ ପାଟିରୁ ଏପର୍ଯ୍ୟନ୍ତ ଯାଇନ ।

ଇନ୍ଦ୍ର ରୋଗୀର ପୁଅକୁ ପଚାରିଲେ "ଆପଣ କଅଣ ଏଇମାନଙ୍କ ରକ୍ତ ନେଇ ରୋଗୀକୁ ଦେବେ ? ଏମାନଙ୍କ ରକ୍ତନେଲେ ରୋଗୀ ତ ନୂଆ ରୋଗରେ ପଡ଼ିବ ।"

ତାଙ୍କ କଥା ଶୁଣି ବାବୁ ଜଣଙ୍କ କହିଲେ—"କଅଣ କରିବା ଆଜ୍ଞା—ଆମ ଦେଶରେ ଯେଉଁମାନେ ରକ୍ତ ଶୋଷି ନାଲି ପଡ଼ିଛନ୍ତି, ସେ କଅଣ କେବେ ରକ୍ତ ଦିଅନ୍ତି ? ଶୋଷିତ ଗୋଷ୍ଠୀହିଁ ରକ୍ତଦାନ କରିଥାଆନ୍ତି । ଆଗ ରୋଗୀ ଏ ରୋଗରୁ ମୁକ୍ତ ହଉ, ତାପରେ ରୋଗ କଥା ଦେଖିବା ।"

ଏ କଥା ଶୁଣି ଇନ୍ଦ୍ର ନିଜ ଝିଅାକୁ ଫେରିଲେ । ଭାବିଲେ ଯାହା ଦେହରେ ଫଳେ ରକ୍ତ ନାହିଁ ତାଙ୍କର ଲିଷ୍ଟି "ରକ୍ତଭଣ୍ଡାର" ରଖିଛି ।

ଝିରିଦିନଆ ପାହାନ୍ତି କାକରରେ ମଲା ଘାସଗୁଡ଼ାକ ଯେମିତି ସକାଳକୁ ଟିକିଏ ଚକ୍‌ଚକିଆ ଦିଶନ୍ତି, ଗୋଟେ ଦିନ ଔଷଧ ଆଉ ପଥ୍ୟ ପାଇବାରେ ଇନ୍ଦ୍ରଙ୍କ ଯନ୍ତ୍ରଣା ଟିକିଏ କମିଥାଏ । ଵିରିକାଟିଆ ମୁହଁଟା ଟିକିଏ ସଜଳିଆ ଦିଶୁଥାଏ । ଇନ୍ଦ୍ର ଭାବୁଥିଲେ ଜେଲଠାରୁ ଏଠି ଏକ ରକମ ଭଲ ।

ଏଇ ସମୟରେ ହଠାତ୍ ସେପଟ ଓ୍ୱାର୍ଡ ପାଖରୁ ହୋ ହଲ୍ଲା ପାଟି ଶୁଭିଲା । ରୋଗୀମାନେ ଯନ୍ତ୍ରଣା ଭୁଲି ସେପଟକୁ କାନ ଡେରିଲେ । ଇନ୍ଦ୍ର ନିଜ ଝିଅା ଉପରୁ ଓହ୍ଲାଇ ବରଣ୍ଡା ଉପରେ ଠିଆ ହୋଇ କଥାଟା କଅଣ ଜାଣିବାକୁ ଚାହିଁଲେ । ରକ୍ତ ପାଇଁ ଲୋକ ଆଣିଥିବା ବାବୁ ଜଣକ ସେପଟ ଆଡ଼କୁ ଗଲେଣି । ଇନ୍ଦ୍ର ଦେଖୁଥାନ୍ତି ଦ'ଗ୍ରିଟା ଟୋକା ଗୋଟେ ଟୋକା ଡାକ୍ତରଙ୍କୁ ବାଧା, ଗୋଇଠା ଲଗଉଥାନ୍ତି । ହି-ହ୍ରୁ ଭାଷାରେ ତାଙ୍କ ଚଉଦ ପୁରୁଷଙ୍କୁ ଉଦ୍ଧାରୁଥାନ୍ତି ।

ଇନ୍ଦ୍ର ଭାବିଲେ ଏ ଡ଼ାକ୍ତରଖାନା ଭିତରେ ଡ଼ାକ୍ତରବାବୁଙ୍କୁ ମାଡ଼ । ଭିତରି କଥାଟା କଅଣ ବୁଝିବାକୁ ସେ ବି ଚାଲି ଚାଲି ଗଲେ । ପାଟି ତୁଣ୍ଡ ହଲ୍ଲା ଭିତରେ କିଏ କାହାକଥା ବୁଝୁ ନଥାଆନ୍ତି । କିଏ କହୁଥାଏ ଡ଼ାକ୍ତର ଗୋଟେ ଟୋକାର

ଭଉଣୀକୁ ଖରାପ ବ୍ୟବହାର କଲା । କିଏ କହୁଥାଏ ଏ ଶଳା ଛ ନମ୍ବରଆ ଛତରା ଟୋକା ଡାକ୍ତରଟାକୁ ମିଛରେ ପିଟୁଛନ୍ତି; କିନ୍ତୁ କେହି ଭୟରେ ପାଖକୁ ଯାଉ ନାହାନ୍ତି । ମାଡଖାଇ ଡାକ୍ତରବାବୁଙ୍କ ନାକ ଦଣ୍ଡି ଫାଟିଲା ପରେ, କୁଆଡ଼ୁ ଛୁଟି-ଆସିଲେ ଗୋଟେ ଧଇଟା ବେହେରା, ଜଣେ ନର୍ସ । ଆହା ଚୁ ଚୁ କରୁଥାନ୍ତି । କିନ୍ତୁ ଦେଖଣାହାରି କହୁଥାନ୍ତି, 'ଏ ଧଇଟା ବେହେରା ମାଡ଼ ହେଲାବେଳେ ଆରପଟ ବାରଣ୍ଡାରେ ଲୁଚି କରି ଠିଆ ହୋଇଥିଲେ । ଅବଶ୍ୟ ମାଡ଼କୁ ମହାଦେବଙ୍କ ଡର । ଡାକ୍ତରଙ୍କର ତ ଦାନ୍ତ ଭାଙ୍ଗିଲା, ଏଙ୍କ ହାତ କାହିଁକି ଭାଙ୍ଗିଥାନ୍ତା ? ଗୋଟିଏ ଦୃଷ୍ଟିରୁ ଭଲ । ଅଯଥା ଡାକ୍ତରଖାନାର ଔଷଧ ଖର୍ଚ୍ଚ ହୋଇଥାନ୍ତା । ମାଗଣା ଛୁଟି ମିଳିଥାନ୍ତା ।

ଡାକ୍ତରବାବୁଙ୍କ ଉପରେ ମାଡ଼ଟା ଦେଖି ଇନ୍ଦ୍ରଙ୍କ ମନ ଦୁଃଖ ହେଲା । ଡାକ୍ତରଖାନାକୁ ଆସିଲା ପରେ ରୋଗୀମାନେ କହୁଥିଲେ, ପ୍ରାଇଭେଟ ପ୍ରାକ୍ଟିସ୍ ବନ୍ଦ ହେଲେ କଅଣ ହେଲା, ଘରେ ଚୁପ୍‌ଚୁପ୍ ପଇସା ଦେଇ ନଆସିଲେ ଅପରେସନ୍ ହେବନି । ରକ୍ତ ମିଳିବନି କି ତମ କଥା କେହି ବୁଝିବେନି । ସବୁପାଇଁ ପଇସା । ଇଆଡ଼େ ପ୍ରାଇଭେଟ୍ ପ୍ରାକ୍ଟିସ୍ ବନ୍ଦ ଲାଗି ପଇସା ନେବେ, ତେଣେ ଭିତରି ଭିତରି ସବୁ କାମ ଚାଲିବ । ରୋଗୀ ଯାହା ହଇରାଣ ହେବା କଥା । ତାଙ୍କ ମନରେ ଡାକ୍ତର ଗୋଷ୍ଠୀ ଉପରେ ଯାହା ଧାରଣା ଥାଉ ପଛେ, ମାତ୍ର ଯେଉଁ ଡାକ୍ତର ଜଣକ ମାଡ ଖାଇଲେ ସେତ ଜଣେ ଭଲ ଡାକ୍ତର, ସମସ୍ତେ କହୁଥାନ୍ତି । ସେ ବି କାଲି ତାଙ୍କୁ ଦେଖିଥିଲେ ।

ଡାକ୍ତର ବାବୁଙ୍କ ନାକ ଦଣ୍ଡାରେ ଲିକୋପ୍ଲାଷ୍ଟ ପକାଇ ରକ୍ତ ବନ୍ଦ କଲାପରେ ଘଟଣା ବୁଝାଗଲା ଯେ, ଗତ ରାତିରେ ଏ ଛତରା ଟୋକା ପଞ୍ଝାକ ଡାକ୍ତରଖାନାରେ ପଶି ଡ୍ୟୁଟୀ ନର୍ସମାନଙ୍କୁ ଅଶ୍ଳୀଳ କମେଣ୍ଟ ମାରୁଥିଲେ । ଏ ଡାକ୍ତରବାବୁ ତାଙ୍କୁ ଶୋଧି ତଡ଼ିଦେଇ ଥିଲେ । ସେଇ ରାଗ ରଖି ସକାଳୁ ଦଳ ଧରି ଡାକ୍ତରଙ୍କ ଉପରେ ଆକ୍ରମଣ । ଇଆଡ଼େ ଲୋକ ଶୁଣିବାକୁ ହାଲ କରୁଥାନ୍ତି—ଡାକ୍ତର ତାଙ୍କ ଭଉଣୀଙ୍କ ପ୍ରତି ଅସଦାଚରଣ କଲେ । ବୁଝୁ ବୁଝୁ ତାଙ୍କର କାହାର ବି ଭଉଣୀ ଡାକ୍ତର-ଖାନାରେ ନାହିଁ ।

ଏଇ ସମୟରେ ଭୁମ୍ ଭୁମ୍ ହୋଇ ପଞ୍ଝାଏ ପୋଲିସ ପଶିଆସିଲେ । ସେତେବେଳକୁ ସେ ଟୋକାମାନେ ଚମ୍ପଟ ଦେଇଥାନ୍ତି । ଲୋକମାନେ କୁହାକୋହି ହେଉଥାନ୍ତି 'ଚୋର ଗଲାପରେ ପୁଲିସ ଆସେ' । ପୁଲିସବାଲାଙ୍କ ଭିତରେ ସେ 'ହାତାରକା' ବାବୁଙ୍କୁ ଦେଖି ଇନ୍ଦ୍ର ସେ ଜାଗା ଛାଡ଼ି ଖଟିଆ ଆଡ଼କୁ ଧାଇଁଲେ ।

ଝିଟିଆ ଉପରେ ପଡ଼ି କୋକଶିଆଳ ଗାତ ଭିତରେ ପଶି ମୁଣ୍ଡ ଟେକି ଚାହିଁଲା ପରି ଇନ୍ଦ୍ର ଘଟଣାଟା କୁଆଡ଼େ ଗଡ଼ କରୁଛି ଚାହିଁଲେ । ପୁଲିସବାଲାଙ୍କୁ ଦେଖି ବେହେରା ନର୍ସଦଳ ସଙ୍ଗେ ସଙ୍ଗେ 'ଷ୍ଟ୍ରାଇକ୍', କାମ ବନ୍ଦ, ସେବା ବନ୍ଦ, ସବୁ ବନ୍ଦ କହି ସି.ଡ଼ି ଏମ ଓଙ୍କ ଅଫିସ ଆଗରେ ପହଞ୍ଚିଲେ । ଏଣେ କେଉଁ ରୋଗୀ ଦେହରେ ସାଲାଇନ ଅଧା ଲାଗିଛି ତ କାହା ନାକ ପାଖେ ପାଖେ ଅକ୍ସିଜେନ ଅଧା ଅଟକିଛି । ଇନ୍ଦ୍ର ଭାବିଲେ ଏତେ ବେହେରା,ସେବକ, ସୁଇପର ଥିଲେ, କେହି ସେ ମଦୁଆ ଟୋକା ଚାରିଟାକୁ ଧରି ଦି' ବାଧା ଦେଇପାରିଲେନି ? ସେତେବେଳକୁ ତ କାହିଁ ପଛଆଡ଼େ ଲୁଚିଥିଲେ, ଏବେ ପୁଲିସ ଦେଖି 'ଷ୍ଟ୍ରାଇକ୍' । ଏଣେ ରୋଗୀଙ୍କ ଅବସ୍ଥା ବାରଟା ଦି'କଡ଼ା ।

ଷ୍ଟ୍ରାଇକ୍ ସାରା ଆସୁ ଆସୁ ଦିନ ଚାରି । ସେ ପର୍ଯ୍ୟନ୍ତ ରୋଗୀମାନେ ବିନା ଚିକିତ୍ସାରେ ବୋବାଳି ପକାଉଥାନ୍ତି । କିଏ ଶୁଣୁଛି ? ଚାରିଟା ବେଳକୁ ଡ଼ାକ୍ତର ଆସି ଇନ୍ଦ୍ରଙ୍କୁ କହିଲେ 'ତମ ଦେହ ଭଲ ହୋଇଗଲାଣି ତମେ ଯାଅ' ।

( ୧୧ )

ଡ଼ାକ୍ତରଖାନାରୁ ବାହାରିଲାବେଳକୁ ପୁଲିସ୍ ଏସ୍କର୍ଟ୍ପାର୍ଟି ଆସି ଦୁଆର ମୁହଁରେ ଠିଆ ହୋଇଥାନ୍ତି । ପୁଣି ତାଙ୍କୁ ଜେଲକୁ ଯିବାକୁ ପଡ଼ିବ । ଭାବିଲେ ଡ଼ାକ୍ତରବାବୁଙ୍କୁ ଟିକିଏ ଦେଖା କରିଯିବେ । ତାଙ୍କୁ ସେ ବାବୁ ଔଷଧ ଦେଇ ଭଲ କରିଛନ୍ତି । ଏଇକଥା ଭାବି, ଡ଼ାକ୍ତରଙ୍କ ବିଶ୍ରାମ ଗୃହ ଭିତରକୁ ପରଦାଟେକି ମୁହଁ ଦେଖାଇଲେ ।

ସେତେବେଳକୁ ମାଡ଼ ଖାଇଥିବା ଯୁବ ଡ଼ାକ୍ତର ନାକ ଦଣ୍ଡାରେ ଲିକୋପ୍ଲାଷ୍ଟ ଫକାଇ ଖଟରେ ଶୋଇ ସିଗାରେଟ୍ ପିଉଥାନ୍ତି । ଆଉ ଜଣେ ଦି'ଜଣ ବନ୍ଧୁ ଷ୍ଟ୍ରାଇକ୍ରେ କିପରି ନେତୃତ୍ୱ ନେଇ ସି ଡ଼ି.ଏମ୍ ଓ.ଙ୍କୁ ହଲ୍ପଟା କଲେ, ସେଇକଥା କହି ବାହାଦୁରି ଦେଖାଉଥିଲେ । ଇନ୍ଦ୍ରଙ୍କ ମୁହଁ ଦେଖି, ଯୁବ ଡ଼ାକ୍ତର ଜଣଙ୍କ ଡ଼ାକିଲେ "କଅଣ ହେଲା ଭାଇନା—ଆଜି ଯାଉଛ କି ?

ଇନ୍ଦ୍ର "ହଁ" କରି ସହାନୁଭୂତି ଦେଖାଇ କହିଲେ "ଅଯଥାରେ ଆଜ୍ଞା ଏ ବାଲୁଙ୍ଗା ପଞ୍ଚେ ଆପଣଙ୍କ ଉପରେ ହାଙ୍ଗାମା କଲେ—ଆପଣଙ୍କର ଏ ଅବସ୍ଥା" ।

କଥାଟି ଶୁଣି ଯୁବଡ଼ାକ୍ତରଙ୍କ ବନ୍ଧୁମାନେ କହିଲେ "କଅଣ କରିବା, ରୋଗୀମାନଙ୍କ ସେବା ଲାଗି ଜୀବନ ଯେତେବେଳେ ଉତ୍ସର୍ଗ କରିଛୁ, ଏ ଗ୍ରେଟକାଟିଆ ମାଡ଼କୁ ସହିବାକୁ ପଡ଼ିବ । 'ମିଶୁ ମୋର ଦେହ ଏ ଦେଶ ମାଟିରେ—ଦେଶବାସୀ

ଗୃଲ ମାଆଙ୍କୁ ପିଠିରେ' । ବୁଝିଲ, ଆମ ଗୋପବନ୍ଧୁ ଦାସେ କହିଛନ୍ତି । ତାଙ୍କର ମତ ଅନୁସରଣ କର ଗୃଲଛୁ । ନାଁ କଣରେ ?

"ହଉ, ମାଡ଼ କଛୁ ଚନ୍ତା ନାହିଁ ।"

ଆଉ ଜଣେ ବନ୍ଧୁ ହସି କର କହିଲ, "ଠିକ୍ କହିଲୁ, ସେ ସି.ଡ଼ି. ଏମ୍. ଓ.ଙ୍କ ଟେବୁଲ କାଚଟା ବାଡ଼େଇ ଭାଙ୍ଗି ଦେଲୁ କାହିଁକ ?" କଥାଟା ଶୁଣି ବନ୍ଧୁ କହିଲେ, 'ଆରେ, ଇମୋସନ'—ଇମୋସନ ଆସିଲାବେଳେ ଗୋପବନ୍ଧୁ, ଗାନ୍ଧୀ କ ବାପା ବ ପାଖରେ ପଶନ୍ତିନ—ସାଙ୍ଗଟା ଉପରେ ମାଡ଼ଦେଖି ଧୈର୍ଯ୍ୟ ଧରଥାନ୍ତି କମିତ ? ଭାଗ୍ୟଭଲ ତାଙ୍କ ଗାଲରେ ହାତଟା ବାଜନ କହ ।"

କଥା ସରିଲା ପରେ ଇନ୍ଦ୍ର କହିଲେ,"ଆଜ୍ଞା ସି.ଡ଼ି.ଏମ୍.ଓ.ଙ୍କୁ କହ ଏଠାରେ ଅଯଥା ଲୋକ, ଗାଈ, ଗୋରୁ, ଷଣ୍ଢ, ବୁଲାକୁକୁର ନ ପଶିବା ପାଇଁ ଜଗୁଆଳୀ ରଖୁ ନାହାଁନ୍ତି ? ଟାଇମ୍ କର ଲୋକ ଛାଡ଼ିଲେ ଏ ଗଣ୍ଡୋଗୋଳ ହୁଅନ୍ତାନ ।" କଥାଟା ଶୁଣି ଆଉ ଜଣେ ଯୁବ ଡ଼ାକ୍ତର କହିଲେ, "ବୁଝିଲ ଭାଇନା, ରୋଗୀମାନଙ୍କୁ ଦେଖିବା ପାଇଁ ଲୋକମାନେ ଡ଼ାକ୍ତରଖାନା ଭିତରକୁ ଆସିବାକୁ ନର୍ଦ୍ଦିଷ୍ଟ ସମୟ ଥିଲା । ମାତ୍ର କଅଣ କରାଯିବ, ଏଠିକି ଯେଉଁ ବଡ଼ ବଡ଼ ବାବୁମାନେ ଆସିଲେ ସେ ତ କେଉଁ ରାଜନୈତକ ନେତାଙ୍କ ଶଶୁରଙ୍କ ପୁଅ, ଭଣଜା, ପୁତୁରା କ ବଡ଼ ଅଫିସରଙ୍କ ଭାଇ । ସେମାନେ କାହିଁକ କାହା କଥା ଶୁଣିବେ ? ତା'ଛଡ଼ା ଏଠି କାହାକୁ ବା ବନ୍ଦ କରବୁ ? ସମସ୍ତେ ଉପର ବାଲା । ଉପର ବାଲାଙ୍କ ପାଇଁ କଅଣ ନୟମ ଥାଏ ! ତେଣୁ ଏଠାରେ କବାଟ ହରଦମ୍ ମେଲା, ନହେଲେ ଏ ଶଳା ଛତରା ଯଣ୍ଢା ଭିତରକୁ ପଶିଥାନ୍ତେ ?"

ଇନ୍ଦ୍ର କହିଲେ "ହଁ, ତା ସତକଥା । କନ୍ତୁ ଆଜ୍ଞା ଗରବ ଗୁରୁବାଙ୍କ ପାଇଁ କିଛି ଔଷଧ ରଖନ୍ତୁ । ସେମାନେ ପଇସା ପାଇବେ କେଉଁଠୁ ଯେ ରକ୍ତ କିଣିବେ, ଔଷଧ କିଣିବେ ?"

ତାଙ୍କ କଥା ଶୁଣି ଡ଼ାକ୍ତର କହିଲେ, "ତମେ ଖବର କାଗଜରେ ପଢୁନ କି ? ଯାହା ଟଙ୍କା ଆସିଲା ତା ଦେହରୁ ଅଧେ ତୋଷରପାତ୍ । ଏବେ ଆମ ରାଜ୍ୟ ଦୁର୍ନୀତ ନବାରଣ ବଭାଗ, କେତେ ଡ଼ାକ୍ତରଖାନାରେ ପଶିଲେଣି । କିନ୍ତୁ କଅଣ ହେବ ? ଦୁର୍ନୀତ କରୁଥିବା ବାଲାତ ବଡ଼ । ସେମାନେ ତ ହୃଦୟ, ଗଳା, ପେଟ, ମୁଣ୍ଡ, ଗୋଡ଼ମାନବୁ ଧର ବସିଛନ୍ତି । ଦୁର୍ନୀତ ବଭାଗବାଲାଙ୍କର ତ ଏସବୁ ଜାଗା ଖରାପ୍ ହେବ ? ଏମାନଙ୍କୁ ଧରଲେ ସେମାନେ ପୁଣି କାହା ପାଖକୁ ଯିବେ ? ସେଇ

ଉତ୍ସୁରେ ଏମାନେ ଲୋକ ଦେଖାଣିଆ ଭାବେ ମାରେ ଭଣ୍ଡାରିଆଙ୍କୁ ମାରୁଛନ୍ତି—କେଉଁ ଡ଼ାକ୍ତର ଦଶଟଙ୍କା ନେଇ ରୋଗୀ ଦେଖୁଛି ତ ତାକୁ ଧର । ଗୁଡ଼, ଭାଇନା ତୁମେ ଯାଅ ।

ଇନ୍ଦ୍ର ଡ଼ାକ୍ତରଙ୍କୁ ଗୋଟେ ନମସ୍କାର ପକେଇ ବାହାରିଗଲେ ।

( ୧୬ )

ଉପଯୁକ୍ତ ପ୍ରମାଣ ଅଭାବରୁ ଇନ୍ଦ୍ରଙ୍କୁ ୧୦୯ ଦଫାରେ ଖଲସ ମିଳିଲା । କୋଟ ହତାରୁ ବିଦାୟ ନେଇ ଇନ୍ଦ୍ର ମୁଖ୍ୟ ରାସ୍ତା ଧରିଲେ । ମନରେ ଭୟ, ଗଳି ରାସ୍ତା ଧରିଲେ ପୁଲିସବାଲା ପୁଣି ମାଡ଼ବସି ପାରନ୍ତି । ଜେଲ୍‌ରେ ରହିବାକୁ ତାଙ୍କୁ ଡ଼ରନାହିଁ, ହେଲେ ପୁଲିସ ହାଜତ ଜେଲ୍‌ର ବଡ଼ବୋପା ।

ମୁଖ୍ୟ ରାସ୍ତା ଦେଇ ଗଲାବେଳକୁ ଇନ୍ଦ୍ର ଦେଖିଲେ ଗୋଟାଏ ବିରାଟ ଶୋଭା-ଯାତ୍ରା ଆସୁଛି । ତାଙ୍କ ପାଖଦେଇ ଶୋଭାଯାତ୍ରା ଦଳ ଗଲାବେଳେ ଇନ୍ଦ୍ର ରାସ୍ତା କଡ଼କୁ ଆଡ଼େଇ ଯାଇ ଠିଆ ହୋଇଗଲେ । କିଛି ସମୟ ପରେ ପଛରୁ ଜଣେ ନେତାଳିଆ ଲୋକ ତାଙ୍କୁ ଭିଡ଼ି ନେଇ ଲାଇନ୍ ଭିତରେ ପୂରାଇ ଦେଇ କହିଲେ "ଲାଇନ୍ ଭାଙ୍ଗି କାହିଁକି ବାହାରେ ଠିଆ ହେଇଛ—ଚାଲ ଲାଇନ୍ କରି ଚାଲ ।" ଏତିକି କହି ସେ ଆଗକୁ ଚାଲିଲେ ।

ଇନ୍ଦ୍ର କିଛି ନବୁଝି ଲାଇନ୍ ଧରି ସେମାନଙ୍କ ସଙ୍ଗେ ଚାଲିଲେ । ଲାଇନ୍ ଭିତରେ ବହୁତ ଲୋକ, ବିଭିନ୍ନ ପ୍ରକାର ପ୍ରଚାର ପତ୍ର ବାଉଁଶ ଫାଳିଆରେ ମାରି ଚାଲିଥାନ୍ତି, ଇନ୍ଦ୍ର ଆଗପଛ କେତେଟା ପ୍ରଚାର ପତ୍ରକୁ ପଢ଼ିଲେ । ସେଥିରେ ଲେଖା-ଥିଲା "ସରକାର, ଶିକ୍ଷକମାନଙ୍କ ଦାବୀକୁ ମାନିଯାଅ", "ନିଆଁ ଗିଲା ଶିକ୍ଷାମନ୍ତ୍ରୀ ମୁର୍ଦ୍ଦାବାଦ", "ଷ୍ଟ୍ରାଇକ୍ ପିରିଅଡ଼୍ ଦରମା ଜଲ୍‌ଦି ଦିଅ" ଇତ୍ୟାଦି । ଇନ୍ଦ୍ର ବୁଝିଲେ ଏ ବିରାଟ ପଟୁଆର ଶିକ୍ଷକମାନଙ୍କର । ସେ ନେତାଳିଆ ଲୋକଟି ତାଙ୍କ ଚେହେରା ଦେଖି ଭାବିଲା ବୋଧେ ସେ ଜଣେ ପ୍ରାଇମେରୀ ସ୍କୁଲ ଶିକ୍ଷକ । ସେଥିଲାଗି ତାଙ୍କୁ ଲାଇନ ଭିତରକୁ ଠେଲି ଦେଇ ଚାଲିଗଲା ।

ଇନ୍ଦ୍ର ନିଜ ମନକଥା ମନରେ ରଖି ଚାଲିଲେ । ସେଇ ନେତାଳିଆ ଲୋକ କେତେଟା ହାତଗୋଡ଼ ଦୋହଲାଇ ସ୍ଲୋଗାନ ଦେଉଥାନ୍ତି । ତାଙ୍କ ସଙ୍ଗେ ତାଳ ଦେଇ ଲାଇନରେ ଥିବା ଶିକ୍ଷକମାନେ ଛାତି ଫଟାଇ ଚିତ୍କାର କରୁଥାନ୍ତି । ସେ ସ୍ଲୋଗାନ ଇନ୍ଦ୍ରଙ୍କ ପାଟିରେ ପଶୁ ନଥାଏ, ତଥାପି ଧାଡ଼ିବାନ୍ଧି ଯେତେବେଳେ ଚାଲିଛନ୍ତି, ସ୍ଲୋଗାନ ନଦେଲେ ଅସୁବିଧା । ତେଣୁ ସେ ମଧ୍ୟ ଅନ୍ୟମାନଙ୍କ ସଙ୍ଗେ ମିଶି "ଶିକ୍ଷାମନ୍ତ୍ରୀ ମୁର୍ଦ୍ଦାବାଦ ମୁର୍ଦ୍ଦାବାଦ" । "ଆମର

ଦାବୀ ପୂରଣ କର, ନହେଲେ ନିଆଁ ଜଳିବ, ନିଆଁ ଜଳିବ—ସ୍କୁଲ୍ କଲେଜ ବନ୍ଦ ହେବ, ବନ୍ଦ ହେବ" ପ୍ରଭୃତି ସ୍ଲୋଗାନକୁ କିଛି ସମୟ ଅଭ୍ୟାସ କଲା ପରେ ଇନ୍ଦ୍ର ବି ଭଲ ସ୍ଲୋଗାନ ଦେଲେ । ସମସ୍ତେ ଭାବିଲେ ଏ ଜଣେ ଅସଲି ଶିକ୍ଷକ । ଉଦ୍ରଖ ଆଡ଼ୁ ଆସିଛି ବୋଧେ ।

ସ୍ଲୋଗାନ ମାରି ପଟୁଆର ଯାଇ ଶିକ୍ଷକ ସଂଘ ଅଫିସ ପାଖେ ପହଞ୍ଚିଲାବେଳକୁ ଦିନ ତିନିଟା । ସେଠାରେ ଚା, ଜଳଖିଆର ବନ୍ଦୋବସ୍ତ ଆଗରୁ ହୋଇଥାଏ । ଇନ୍ଦ୍ର ତ ସକାଳୁ କିଛି ଖାଇ ନଥିଲେ । ସଂଘ ଅଫିସ ପାଖେ ପହଞ୍ଚିଲାବେଳକୁ ଖରାଦିନେ ଗୋରୁମାନେ ଶୋଷିଲା ହୋଇ ପାଣି ଦେଖିଲେ ମୁହଁ ବୁଡ଼େଇ ଯେପରି ପେଟେ ପିଇଯାଆନ୍ତି, ମାଷ୍ଟରମାନେ ସଂଘ ଅଫିସ ପାଖେ ପହଞ୍ଚୁ ପହଞ୍ଚୁ ଧାଡ଼ିଭାଙ୍ଗି ଜଳଖିଆ ଚା ବଣ୍ଟା ଜାଗାରେ କ୍ୟୁ ଦେଲେ । ଇନ୍ଦ୍ର ବି ଗୋଟେ ଦଉଡ଼ରେ କିଛି ସିଙ୍ଗଡ଼ା, ବୁଟଡ଼ାଲି, ମିଠା ଆଣି ଖାଇବାରେ ଲାଗିଗଲେ । ପେଟରେ ଟିକିଏ ଦାନା ପଡ଼ିଲା ପରେ, ଗୋଟେ ଗ୍ଲାସ ପାଣି ପିଇ ଇନ୍ଦ୍ର ରାସ୍ତାକଡ଼ର ଗଛମୂଳେ ଆଉଜି ବସି ଥକ୍କା ମାରିଲେ । ନିର୍ଦ୍ଧୁମ ଖରାଟାରେ ସେ ଛ, ସାତକିଲୋମିଟର ବାଟ ଚାଲିଥାନ୍ତି ।

ଏଇ ସମୟରେ ଆଉ ଜଣେ ଦି ଜଣ ମଫସଲିଆ ମାଷ୍ଟର କାନ୍ଧରୁ ବ୍ୟାଗ କାଢି ତା ଭିତରୁ ଗାମୁଛା ବାହାର କରି ଗଛମୂଳେ ଲମ୍ବାଇ ଦେଇ ଗଡ଼ିବାକୁ ଲାଗିଲେ । ସଭାକାର୍ଯ୍ୟ ଆରମ୍ଭ ହବାକୁ ଡ଼େରିଥାଏ । ସେତେବେଳକୁ ମାଇକ୍‌ବାଲା "ମାଇକ୍ ଟେଷ୍ଟିଂ—ମାଇକ୍ ଟେଷ୍ଟିଂ—ଏକ, ଦୁଇ, ତିନି, ଚାରି, ଚାରି, ତିନି,ଦୁଇ ଏକ, କହି କାନ ଅତଡ଼ା ପକାଉ ଥାଏ । ସମସ୍ତ ଦେଖି ଇନ୍ଦ୍ର ପଚାରିଲେ "ହଇଓ ଭାଇ ଏ ଷ୍ଟ୍ରାଇକ୍ ପିରିଅଡ଼ ଦରମା କଅଣ କରିଓ ?"

ଗୋଟେ ମାଷ୍ଟ୍ର ତାଙ୍କ ଆଡ଼କୁ ପ୍ରଶ୍ନବାଚକ ଆଖିରେ ଚାହିଁ କହିଲା 'ଷ୍ଟ୍ରାଇକ୍ ପିରିଅଡ଼' କଅଣ ଜାଣିନ ? ତୁମେ କଅଣ ନୂଆ ହୋଇ ଭର୍ତ୍ତି ହୋଇଛ କି ?

ଇନ୍ଦ୍ର ମୁଣ୍ଡ ଟୁଙ୍ଗାରିଲେ ।

ତାପରେ ସେ ଲୋକଜଣକ "ଆରବର୍ଷ ନେଇଁ 'ମାସେ' ଆମେ ଷ୍ଟ୍ରାଇକ କରି ସ୍କୁଲ ବନ୍ଦକରିଥିଲୁ, ସେ ଦରମାଟା ଆମକୁ ଏପର୍ଯ୍ୟନ୍ତ ମିଳିନି । ସେ ଦରମାଟା ଦଶହରା ପୂର୍ବରୁ ଆମକୁ ଦେଇଦେବା ପାଇଁ ଆମର ଦାବୀ ।

ଇନ୍ଦ୍ର କହିଲେ "ସେତେବେଳେ ତ ଆପଣମାନେ ଷ୍ଟ୍ରାଇକ୍ କଲେ । କିଏ ଘରେ ରହିଲାତ କିଏ ଆସି ଏଠି ସ୍ଲୋଗାନ ଦେଲା । ପିଲାମାନେ ତ ସ୍କୁଲକୁ ନଯାଇ ଗାଁ ଗଣ୍ଡା ଉଚ୍ଛନ୍ନ କଲେ । କାମ ନକରି ଦରମା କେମିତି ନେବ ?"

ଏକଥା ଶୁଣି ଶିକ୍ଷକ ଜଣକ କହିଲେ "ଆରେ ଏଇଟା ଗୋଟେ ଗୋଠଫେଣ୍ଟି ଅଟେରେ । ଶୁଣ,ଆମେ ଶିକ୍ଷକ ଏକତା ଜିନ୍ଦାବାଦ୍ କହିଲ ବେଳକୁ ଏ କହୁଛି କାମ ନକରି ଦରମା ନବୁ କମିତି ? ଏଠି କେଉଁ ମାଷ୍ଟ୍ର ଠିକ୍ କାମକରି ଦରମା ନଉଛି ? ତା ଛଡ଼ା ଅନ୍ୟ ଚାକିରିଆମାନେ କଅଣ ସବୁ ଠିକ୍ କାମ କରୁଛନ୍ତି ? ସେମାନେ ଯଦି ଷ୍ଟ୍ରାଇକ୍ ପିରିଅଡ଼ରେ ଦରମା ପାଇଲେ, ଆମେ କାହିଁକି ପାଇବୁନି ? ଆମେ ଖୁସିରେ କଅଣ ଷ୍ଟ୍ରାଇକ କଲୁ ? ଆମ କଥା କେହି ବୁଝିଲେନି ବୋଲି ତ ଷ୍ଟ୍ରାଇକ କଲୁ । ତେଣୁ ସରକାରଙ୍କ ଦୋଷ । ଷ୍ଟ୍ରାଇକ୍ ପିରିଅଡ଼ ଦରମା ଦବାକୁ ସରକାର ବାଧ୍ୟ ।"

ମଫସଲିଆ ଶିକ୍ଷକଙ୍କ ଯୁକ୍ତି ଶୁଣି ଇନ୍ଦ୍ର ଟିକିଏ ଦବିଗଲେ । ପୁଣି ଧରାପଡ଼ିଯିବାର ଭୟ ଅଛି । ତାଙ୍କୁ ଚୁପ୍ ରହିବାର ଦେଖି ଶିକ୍ଷକ ଜଣକ ଆରମ୍ଭ କଲେ— ଆମ ଆଡ଼େ ସରକାର ବ୍ୟାଙ୍କ୍ ଜରିଆରେ ଦରମା ଦବାର ବ୍ୟବସ୍ଥା କଲେ । ଆମେ ଭାବିଥିଲୁ ମାସକୁ ମାସ ଦରମା ମିଳିବ । କିନ୍ତୁ କଅଣ ହେଲା ? ଡି: ଆଇ: ଅଫିସ ମୁଖ୍ୟ କିରାଣୀଙ୍କ ପାଖେ କିଛି ବନ୍ଦୋବସ୍ତ ନକଲେ, ମାସ ମାସ ଧରି ଆପଣ ଦରମା ପାଇବେନି । ଆମେ କେତେ ଦରମା ପାଉଛୁ ଯେ, କେତେ ନୈବେଦ୍ୟ ଦବୁ କୁହ !"

( ୧୩ )

ଏଇ ସମୟରେ ସଭା କାର୍ଯ୍ୟ ଆରମ୍ଭ ହେଲା । ମଞ୍ଚ ଉପରୁ ଜଣେ ନେତା ଆରମ୍ଭ କଲେ "ଭାଇମାନେ, ଆମ୍ଭେମାନେ ସମସ୍ତେ ଶିକ୍ଷକ, କିନ୍ତୁ ଏ ଦେଶର ଶିକ୍ଷାନୀତିକୁ ଅନୁଧ୍ୟାନ କରନ୍ତୁ, ଦେଖିବେ, ଏ ବିଗତ କେତେବର୍ଷ ଭିତରେ କେତେ ପ୍ରକାର ଶିକ୍ଷା ନୀତି ପ୍ରଚଳନ ଓ ପରିବର୍ତ୍ତନ କରାଗଲାଣି । ପ୍ରଥମେ ଥିଲା ମାଟ୍ରିକ୍ ପାଶ୍ କରି ଆଇ. ଏ, ବି. ଏ ଚାରିବର୍ଷ ପଢୁଥିଲେ । ତାକୁ ଉଠାଇ ତିନିବର୍ଷିଆ ଡିଗ୍ରୀ କୋର୍ସ କଲେ । ଏବେ ତାକୁ ଉଠାଇ, ୧୦ + ୨ + ୩ କଲେଣି । ଆପଣମାନେ ଶିକ୍ଷକ ହୋଇ,ଏପରି ବର୍ଷକୁ ବର୍ଷ ଯଦି ପାଠ୍ୟ କାର୍ଯ୍ୟକ୍ରମ ବଦଳିବ ତେବେ ଆପଣମାନେ କିପରି ପାଠ ପଢ଼ାଇବେ ଏବଂ ଛାତ୍ରମାନେ ମଧ୍ୟ କି ପ୍ରକାର ଶିକ୍ଷା ଲାଭ କରିବେ ? ତେଣୁ ମୁଁ ଦାବୀ କରୁଚି ଆମ ଦେଶରେ ଗୋଟିଏ ଉନ୍ନତ ଧରଣର ଶିକ୍ଷାନୀତି ପ୍ରଚଳନ କରାଯାଉ ।"

କରତାଳି ଖୁବ୍ ଜୋରରେ ହେଲା । ଇନ୍ଦ୍ର ମଧ୍ୟ ବାଡ଼େଇଲେ । ମର୍ତ୍ତ୍ୟରେ ଏଇ କିଛି ଦିନ ବୁଲାବୁଲି ଭିତରେ ଦେଶରେ ଶିକ୍ଷାଗତ ଦୋଷ ତ୍ରୁଟି ଥିବାର ସେ ଲକ୍ଷ୍ୟ କରିଥିଲେ । ଟ୍ରେନ ଭିତରେ, ରାସ୍ତାରେ, ଆଉ ଡାକ୍ତରଖାନାରେ ସେ ଛାତ୍ର-

ମାନଙ୍କ ବ୍ୟବହାର ଦେଖିଛନ୍ତି । ଭାବିଲେ, ଏ ନେତା ଯାହା କହିଲେ ଉଚିତ୍ କଥା । ଯେତେ ଚଞ୍ଚଳ ପାରିବାଏ ନୂତନ ଶିକ୍ଷା ନୀତି ପ୍ରଚଳନ କରିବା ଉଚିତ ।

ତାଙ୍କ ପରେ, ଆଉ ଜଣେ ଯୁବନେତା ବାହାରି ଆରମ୍ଭ କଲେ "ଭାଇ-ମାନେ, ଆପଣମାନେ ସମସ୍ତେ ବିଭିନ୍ନ ସ୍କୁଲରେ ଶିକ୍ଷକତା କରୁଛନ୍ତି, ଏହି ଶିକ୍ଷକତା କରିବା ପାଇଁ ଆପଣମାନେ ବିଭିନ୍ନ ପ୍ରକାର ଟ୍ରେନିଂ ପାଇ ଆସିଛନ୍ତି; କିନ୍ତୁ କଲେଜ-ମାନଙ୍କରେ ଯେଉଁମାନେ ଶିକ୍ଷକତା କରୁଛନ୍ତି ସେମାନେ ବିନା ଟ୍ରେନିଂରେ ଶିକ୍ଷକ । ଆଜି ଏମ୍. ଏ. ପାଶ୍ କଲେ କାଲିଯାଇ ଶିକ୍ଷକତା କଲେ । ତେଣୁ କଲେଜରୁ ବାହାରୁଥିବା ପିଲାମାନେ ବେତାଲିମ । ଶିକ୍ଷକଙ୍କଠାରୁ ବିଶେଷ କିଛି ଶିକ୍ଷା କରୁ ନାହାନ୍ତି । ସେଥି ଲାଗି ଉଚ୍ଚଶିକ୍ଷାର ଅବସ୍ଥା ଏପରି ହେଲାଣି । ମୁଁ ଦାବୀ କରୁଛି ଶିକ୍ଷକମାନଙ୍କର ମର୍ଯ୍ୟାଦା ତଥା ଶିକ୍ଷାର ମାନଦଣ୍ଡ ବଢ଼ାଇବା ଦୃଷ୍ଟିରୁ ଏ ସମସ୍ତ କଲେଜ ଶିକ୍ଷକମାନଙ୍କୁ ମଧ୍ୟ ଉପଯୁକ୍ତ ତାଲିମ ଦବାର ବ୍ୟବସ୍ଥା କରାଯାଉ ।"

ତାଙ୍କ ଭାଷଣ ଶୁଣି ସଭାରେ ତାଳି ହେଲା । ତାଙ୍କ ପାଖେ ଠିଆ ହୋଇ-ଥିବା ଶିକ୍ଷକଟି କହିଲେ "ସତେ ହୋ; ଆମେ ବର୍ଷେ, ଦି' ବର୍ଷକାଳ ଟ୍ରେନିଂ ପାଇ ଘୁଞ୍ଚୁରି ଘୁଞ୍ଚୁରି ଆହାନ୍ତେ । ଏମାନେ ଆଜି ପାଶ୍ କରି କାଲି 'ଲେକ୍‌ଚରର' । ଏମାନେ ସମସ୍ତେ ଗୁରୁକୁଳରେ ଜଏନ୍ କଲା ମାତ୍ରେ ଟ୍ରେନିଂ ପାଇବା ଦରକାର । ଏବେ ସରକାର ଟ୍ରେନିଂ ପ୍ରାପ୍ତ ଲୋକଙ୍କୁ ଶିକ୍ଷକ କରି ଆଣନ୍ତୁ ।"

ଇନ୍ଦ୍ରଙ୍କ ମନକୁ କଥାଟି ମଧ୍ୟ ପାଇଲା । ଶିକ୍ଷାର ମାନଦଣ୍ଡ ଶିକ୍ଷକମାନେହିଁ ବଢ଼େଇବେ । ଆଉ ସେମାନେ ଯଦି ଉପଯୁକ୍ତ ଟ୍ରେନିଂ ନପାଇଲେ, ସେମାନେ ଦେଶର ଭବିଷ୍ୟତ ନାଗରିକମାନଙ୍କୁ କି ଟ୍ରେନିଂ ଦେବେ ?

ଏହି ସମୟରେ ତୃତୀୟ ବ୍ୟକ୍ତି ତାଙ୍କର ଭାଷଣ ଆରମ୍ଭ କରି କହିଲେ "ଭାଇମାନେ ଆପଣମାନେ ଆମ ପୂର୍ବବକ୍ତାମାନଙ୍କ ଭାଷଣ ଶୁଣିଲେ । ମାତ୍ର ମୁଁ କହିବାକୁ ଚାହେଁ, ଶିକ୍ଷକମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଚାଲିଛି । ଆମ ଆସୋସିଏସନକୁ ଭାଙ୍ଗିଦେବାର ମସୁଧା କରୁଛନ୍ତି । ଆମର ଦରମା ମାସ ମାସ ଧରି ମିଳୁନି । ଆମେ ସମସ୍ତେ ପେନ୍‌ସନ ସୁବିଧା ପାଉନେ । କେତେ ଜାଗାରେ ସ୍କୁଲ ଥିଲେ ଘର ନାହିଁ । ଏ ଅବସ୍ଥାରେ ଆମ୍ଭେମାନେ ପିଲାମାନଙ୍କୁ କି ଶିକ୍ଷା ଦେବୁ ? ମୁଁ କହୁଛି ଚାଲ, ଏଠି ବସି ଲାଭ ନାହିଁ । ଶିକ୍ଷାମନ୍ତ୍ରୀଙ୍କ ଘର ଘେରାଉ କରିବା । ଅବଶ୍ୟ ଶାନ୍ତିପୂର୍ଣ୍ଣ ଭାବେ । ମହାତ୍ମା ଗାନ୍ଧୀଙ୍କ ନୀତି ଆମପାଇଁ ଚିର ସ୍ମରଣୀୟ ।"

ତାଙ୍କ ଭାଷଣ ସରିଛି କି ନାହିଁ ସମସ୍ତେ ହୋ ହୋ ହୋଇ ବ୍ୟାଗ ନସ୍ତାନି ଧରି ଚାଲିଲେ ଶିକ୍ଷାମନ୍ତ୍ରୀଙ୍କ ଘରଆଡ଼େ । ତାଙ୍କ ଭିତରୁ କିଏ କହୁଥାଏ—ଇଏ

ଭାଷଣ ମାର ଲାଭ କଅଣ ? ଡାଇରେକ୍ଟ ଆକ୍‌ସନ ଦରକାର ଡାଇରେକ୍ଟ ଆକ୍‌ସନ ।

ଇନ୍ଦ୍ର ଭାବିଲେ, ସେ ଗାନ୍ଧି ବାବୁ କଅଣ ସ୍ୱର୍ଗରେ ବଡ଼ ବଡ଼ କଥା କହୁଥିଲେ ! ଅନଶନ, ଧର୍ମଘଟ କରି ଅହିଂସା ବାଟରେ ଇଂରାଜୀ ବାଲାଙ୍କୁ ଏ ଦେଶରୁ ତଡ଼ିଦେଲେ, ଏବେ ଏ ବାଟ୍ ମାନେ ବି ଦେଶ ଭିତରେ ତାଙ୍କ ମାତ ଧରିଲେଣି ! ଏମାନେ ସମସ୍ତେ ଯଦି ଏମିତି ଅନଶନ, ଷ୍ଟ୍ରାଇକ୍, ଶୋଭାଯାତ୍ରା କରିବେ, ଏ ଦେଶ ଚାଲିବ କେମିତି ? ଏମାନେ ଏସବୁ କରିବାକୁ ଯାଇ କାହାର କ୍ଷତି କରୁଛନ୍ତି ? ଇଂରେଜ ସରକାରତ ଆଉ ନାହିଁ । ଏମାନେ ନିଜ ନିଜ ଭିତରେ ବାଡ଼ିଆ ବାଡ଼ି ହୋଇ ନିଜ ନିଜର କ୍ଷତିକରିବା ଛଡ଼ା ଆଉ କଅଣ କରିପାରିବେ ? ଶାସନକର୍ତ୍ତାମାନେ ମଧ୍ୟ ସେ ସବୁ କଥାକୁ ବୁଝି ସମାଧାନ କରିଦେବା ଉଚିତ୍ । ସବୁବେଳେ ସବୁକଥାକୁ ରାଜନୈତିକ ଦୃଷ୍ଟିକୋଣରୁ ଦେଖିଲେ, ଦେଶର, ଜାତିର ବୃହତ୍ତର କ୍ଷତି ହେବା ଛଡ଼ା, ଆଉ କିଛି ନୁହେଁ । ଏଇ କଥା ଭାବି ସେ ମଧ୍ୟ ଚାଲିଥାନ୍ତି । ହଠାତ୍ କଅଣ ଗୋଟେ ଠୋ କରି ତାଙ୍କ ପାଖେ ପଡ଼ିଲା । ଆଉ ସଙ୍ଗେ ସଙ୍ଗେ ଫଟା ଫଟ୍ ହୋଇ ତା ଦେହରୁ ଧୂଆଁ ବାହାରିଲା । ଇନ୍ଦ୍ର ଆଗକୁ ଚାହିଁଲା ବେଳକୁ ଶିକ୍ଷକ ଦଳ ଛତ୍ରଭଙ୍ଗ ଦେଇ ପ୍ରାଣ ବିକଳରେ କିଏ କୁଆଡ଼େ ଦଉଡ଼ିଚନ୍ତି । ପୁଲିସ ପୁଲିସ ବୋଲି ଚିତ୍କାର ଆଡ଼େ ପାଟି । ପୁଲିସ୍ ନା ଶୁଣି ଇନ୍ଦ୍ର ପ୍ରାଣ ବିକଳରେ ପଛମୁହାଁ ହୋଇ ଦଉଡ଼ିଲେ ।

## ( ୧୪ )

ପୋଲିସର ଲୁହ ବୁହା ଗ୍ୟାସ୍ ମାଡ଼ରେ ଇନ୍ଦ୍ରଙ୍କ ଆଖିରୁ ପାଣି ଗଡ଼ୁଥାଏ । ସେତେବେଳକୁ 'ମାଷ୍ଟ୍ର-ମାଷ୍ଟ୍ରାଣୀମାନେ' ଛତ୍ରଭଙ୍ଗ ଦେଇ କିଏ କାହା ଘରେ ପଶିଲେଣି ତ କିଏ ଗଛମୂଳେ ଠିଆ ହୋଇ ଆଖି ପୋଛୁଥାଏ । ପୁଲିସବାଲେ ଖଣ୍ଡେ ଦୂରରେ ଲାଠି ଦଉଡ଼ ଧରି ରାସ୍ତା ଓଗାଳି ଠିଆ ହୋଇଥାନ୍ତି । ଇନ୍ଦ୍ରଙ୍କ ପାଖରୁ ଖଣ୍ଡେ ଦୂରରେ ଆଠ ଦଶଜଣ ମାଷ୍ଟ୍ରାଣୀ ଠିଆହୋଇ ଅବସ୍ଥା ଲକ୍ଷ୍ୟ କରୁଥିଲେ । ଏହି ସମୟରେ ଦୁ'ଜଣ ଉଗ୍ରପନ୍ଥୀ ପରି ଜଣା ପଡ଼ୁଥିବା ନେତା ସେମାନଙ୍କ ପାଖେ ପହଞ୍ଚି ତାଙ୍କୁ ଉଦ୍‌ବୋଧନ ଦେଇ ଆରମ୍ଭକଲେ, "ଦେଖନ୍ତୁ ଏ କାଳଗ୍ରହ 'ପୁଲିସବାଲା' କେଉଁଠି ଥିଲେ କେଜାଣି, ଶାଗୁଣା ମଡ଼ଗନ୍ଧ ପାଇଲାପରି, ଆମେ ବାହାରୁ ବାହାରୁ ଆସି ଆମ ବାଟ ଓଗାଳି ଠିଆ ହେଲେଣି । ଆମେ ଜାଣୁ ଏସବୁ ସେଇମାନଙ୍କର ଚାଲବାଜି । ନହେଲେ ଏତେବେଳକୁ ଆମେ ସମସ୍ତେ ଯାଇ ଶିକ୍ଷାମନ୍ତ୍ରୀଙ୍କ

ଘର ଘେରାଉ କରି ସାରିଲେଣି । ଏ ପୁଲିସ ଘେର ଭାଙ୍ଗିବାକୁ ହେଲେ ଏମାନଙ୍କୁ ଗୋଟେ ପାନ ଦେବାକୁ ହେବ । ତେଣୁ ମୁଁ ଆପଣମାନଙ୍କୁ ଅନୁରୋଧ କରୁଛି, ଏଥିରେ ଆପଣମାନେ ସାହାଯ୍ୟ ନକଲେ ଆମର ଏତେବଡ଼ ଆୟୋଜନ ପଣ୍ଡ ହୋଇଯିବ ।'

ଶିକ୍ଷୟିତ୍ରୀଙ୍କ ଭିତରେ ଦୁ' ତିନିଜଣ ଉଗ୍ରପନ୍ଥୀ ବାଲାଥିଲେ । ସେ ସଙ୍ଗେ ସଙ୍ଗେ ପ୍ରସ୍ତାବଟା ଶୁଣି କହିଲେ ନିଶ୍ଚୟ ନିଶ୍ଚୟ । ସଂଘ ଏବଂ ଆମ ଭାଇମାନଙ୍କ ପାଇଁ ଆମ୍ଭେମାନେ ପ୍ରାଣବଳୀ ଦେବାକୁ ପ୍ରସ୍ତୁତ । କୁହନ୍ତୁ ଆମେମାନେ କଅଣ କରିବା ।

ନେତା ଜଣକ କହିଲେ—ଦେଖନ୍ତୁ ଆପଣମାନେ ତ ମହାଭାରତ ପଢ଼ିଥିବେ । ମହାଭାରତ ଯୁଦ୍ଧରେ ପିତାମହ ଭୀଷ୍ମଦେବ ଯେତେବେଳେ ରଣକ୍ଷେତ୍ରକୁ ବାହାରିଲେ, ସେତେବେଳେ ପାଣ୍ଡବମାନଙ୍କ ଶିବିରରେ କାନ୍ଦବୋବାଳି ପଡ଼ି ଯାଇଥିଲା । ମାତ୍ର ଏହି ବିପଦକୁ ଶ୍ରୀଖଣ୍ଡି ସମ୍ଭାଳି ନେଲାରୁ ପାଣ୍ଡବମାନେ ଭୀଷ୍ମଙ୍କ ହାତରୁ ରକ୍ଷା ପାଇଲେ । ବର୍ତ୍ତମାନ ସେଇ ଅବସ୍ଥା । ଆପଣମାନେ ହେଲେ ଏ ପୁଲିସବାଲା ଭୀଷ୍ମଙ୍କ ପାଇଁ 'ଶ୍ରୀଖଣ୍ଡି' । ବର୍ତ୍ତମାନ ଛତ୍ରଭଙ୍ଗ ଦେଇଥିବା ଆମର ସେନାକୁ ମୁଁ ସଜେଇ ଦଉଛି; ମାତ୍ର ତାର ନେତୃତ୍ୱ ଆପଣମାନେ ନେବେ ।'

ଏ ସୁନ୍ଦର ଉଦ୍‌ବୋଧନ ଶୁଣି ଗୋଟିଏ ଅଳ୍ପବୟସ୍କା ମାଷ୍ଟ୍ରାଣି ବେଞ୍ଚପରେ ଝପ୍ କିନା ଆଗକୁ ଡେଇଁ ପଡ଼ି କହିଲେ—କିଛି ପରବାୟ ନାହିଁ, ମୁଁ ଆଜି ଏ ଧର୍ମଯୁଦ୍ଧର ନେତୃତ୍ୱ ନେବି 'ଯାଗିଜାଖିସ୍ତେ ପୋଲିସ୍, ବାଳ ଯଦି ନ ମରିବେ ମୋତେ କହିବ । କ'ଣ କରିବାକୁ ପଡ଼ିବ ମୋତେ କୁହନ୍ତୁ ।

ନେତା ଜଣଙ୍କ ତାଙ୍କ ଉଦ୍‌ବୋଧନଟା ଠିକ୍ ଜାଗାରେ ବାଜିଛି ବୋଲି ଜାଣି ଆରମ୍ଭ କଲେ—'ଦେଖନ୍ତୁ ଆପଣଙ୍କ ଭାଇ ଭଉଣୀମାନେ ପୁଲିସ ବାହିନୀର ଆକ୍ରମଣରେ କିପରି ଛତ୍ରଭଙ୍ଗ ଦେଇ ବେଞ୍ଚ; ଛତା, ବେକ, କାନ୍ଧରେ ଝୁଲାଇ ଯିଏ ଆ ତା ବାରଣ୍ଡା ଉପରେ ଧକେଇଲେଣି । କିଏ ଖସିବାର ଉଦ୍ଦେଶ୍ୟରେ ବସିଛି । ମୁଁ ସାଥି ସାଥି ଶୋଭାଯାତ୍ରା ଆରମ୍ଭ କରୁଛି । ସେମାନଙ୍କ ଆଗରେ ଆପଣମାନେ ରହିବେ । ଶୋଭାଯାତ୍ରା ଯାଇ ଯେତେବେଳେ ପୁଲିସ କର୍ଡନ୍ ପାଖେ ପହଞ୍ଚିବ ସେମାନେ ତ ଅଟକେଇବେ । କିଛି ଚିନ୍ତା ନାହିଁ, ଆପଣମାନେ ସାଙ୍ଗେ ସାଙ୍ଗେ ପେଲା ଠେଲା ଆରମ୍ଭ କରିଦେବେ । ସ୍ତ୍ରୀ ଲୋକ ଦେଖି ସେମାନେ ହଠାତ୍ କିଛି କରିବେନି । ଆପଣମାନେ ଠେଲା ପେଲା କରୁଥିବା ସମୟରେ ପଛରୁ ଆମେ କେତେଜଣ ପୁଲିସବାଲାଙ୍କ ଉପରକୁ ଟେକାମାଡ଼ କରିବୁ । ଗୋଟି ମାଡ଼ରେ ଦୁ'ଅଣ୍ଟା ଖଣ୍ଡେ ପୁଲିସ ଝଣ୍ଟିଆ ଖାବରା ହୋଇଗଲେ ଦେଖିବେ, ତାଙ୍କୁ କେହି ସମ୍ଭାଳି ପାରିବେନି । ଯେମିତ ମାଡ଼ ଆସିବେ, ଆପଣମାନେ ସଙ୍ଗେ ସଙ୍ଗେ ତଳେ ପଡ଼ିଯିବେ ।

କାଟକୁ ଟସ୍ତାଲେ ବାଡ଼େଇ ଗର୍ଜି ଦେବେ, ଲୁଗାପଟା ହାତରେ ଚିରାଚିରି କରି-ଦେବେ । ଆପଣମାନଙ୍କ ଏ ଅବସ୍ଥା ଦେଖି ନିଶ୍ଚୟ ପୁଲିସବାଲା ଉଠାଉଠି କରିବାକୁ ଚେଷ୍ଟା କରିବେ । ସେତିକିବେଳେ ସେମାନଙ୍କୁ ଦି' ଚାରିଟା ନାତ ମାରିବେ । ସେ ନାତ ମାରିବାଟା ଯେମିତି ଜଣାପଡ଼ିବ ଯେ ସେମାନେ ଆପଣଙ୍କୁ ଭିଡ଼ାଓଟାରି କରୁଛନ୍ତି । ଏଇ ସମୟରେ ମୁଁ କ୍ୟାମେରା ଧରି ଲୁଚିକରି ଠିଆ ହୋଇଥିବି । ଫଟୋ ଗୋଟେ ଝଇଟା ଉଠାଇ ନେବି । ଦେଖିବେ ତାପରେ, କେମିତି କଥାଟା ଜମିବ ।

ଇନ୍ଦ୍ର ଗଛ ପଛଆଡ଼େ ଠିଆ ହୋଇ ଏକଥା ଶୁଣୁଥିଲେ । ମନେ ମନେ ଏ ପ୍ରସ୍ତାବ ଶୁଣି ତାଙ୍କୁ ଆଶ୍ଚର୍ଯ୍ୟ ଲାଗୁଥାଏ । ଯୁଦ୍ଧ ବିଦ୍ୟାରେ ଯେତେ କୌଶଳ ସେ ଶିକ୍ଷା କରିଥିଲେ, ଏ ପ୍ରକାର କୌଶଳ ତ ସେ ବିଦ୍ୟାରେ ନାହିଁ । ତେଣୁ କଥାଟା ଗହିରିଆ କରି ଶୁଣିବାକୁ ସେ ପାଖେଇ ଆସିଲେ ।

ନେତାଙ୍କ ଏ ପ୍ରକାର ପ୍ରସ୍ତାବ ଶୁଣି ଜଣେ ମାଷ୍ଟ୍ରାଣୀ କହିଲେ—'ଆଜ୍ଞା ଏମିତି କଲେ ଲାଭ କଅଣ ?

ନେତା ଜଣଙ୍କ କହିଲେ—'ବହୁତ ଲାଭ । ଆପଣ ସେତିକି କରନ୍ତୁ, ଦେଖିବେ ସନ୍ଧ୍ୟାବେଳକୁ ଅତିଥି ଭବନରେ ପ୍ରେସ କନ୍‌ଫରେନ୍‌ସ ଡ଼ାକି ଏ 'ପୁଲିସ' ବାଲାଙ୍କ ଚଉଦ ପୁରୁଷ ଉଦ୍ଧାରି ଦେବି । ଆପଣମାନେ ସେତେବେଳେ ଉପସ୍ଥିତ ରହି ପୁଲିସ ଅତ୍ୟାଚାରର କରୁଣ କାହାଣୀ ଅଶ୍ରୁଭରା ଆଖିରେ ବର୍ଣ୍ଣନା କରିବେ । ଆମମାନଙ୍କ ସପୋର୍ଟର ପେପର୍‌ବାଲା ବି ଅଛନ୍ତି । ପରେ ହେଡ଼୍‌ଲାଇନରେ ଚାରିଟା ଖବର କାଗଜରେ "ନିରୀହ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ଉପରେ ପୁଲିସର ନିର୍ମମ ଲାଠି ପ୍ରହାର ।" ବାହାରି ଗଲା ପରେ, ଦେଖିବେ ଆମ କାମ ହାସଲ । ଏ ଭୀଷ୍ମଦଳଙ୍କୁ ଶର ଶଯ୍ୟାରେ ନ ଶୁଆଇଲେ ଆମେ ଏ ଯୁଦ୍ଧ ଜିତିବା ସହଜସାଧ୍ୟ ନୁହେଁ ।"

କଥାଟା ସମସ୍ତଙ୍କ ମନକୁ ପାଇଲା । ନେତା ଜଣଙ୍କ ଆଗପଛକୁ ଚାହିଁ ଛନ୍ଦ-ଭଙ୍ଗକାରୀ ଦଳଙ୍କୁ ଡ଼ାକ ପକାଇଲେ । ଇନ୍ଦ୍ରଙ୍କୁ ପାଖରେ ଦେଖି ତାଙ୍କୁ ଆଗ ଦଳର ପଛରେ (ସ୍ତ୍ରୀ ଲୋକ) ସେମାନଙ୍କ ସୁରକ୍ଷା ଦାୟିତ୍ୱ ଦେଲେ । ଶୋଭାଯାତ୍ରା ଆଗେଇ ଚାଲିଲା । କିଛି ସମୟ ପରେ ଦୁଇଦଳ ମଧ୍ୟରେ ଟେନସନ୍ ଦେଖାଦେଲା । ଗୋଟେ-ପଟୁ 'ଜିନ୍ଦାବାଦ୍', 'ମୁର୍ଦ୍ଦାବାଦ' ଧ୍ୱନିରେ ଗଗନ ପବନ ମୁଖରିତ ହୋଇ ଉଠିଲା ବେଳକୁ, ଆରପଟୁ ଲମ୍ବା ହୁଇସିଲ, ନିଦାଦୋଡ଼ାର ମଚ ମଚ ଶବ୍ଦ ସାଙ୍ଗକୁ ରଥ (ଗାଡ଼ି) ଗୁଡ଼ାକର ଫେଁ ଫାଁ ଶବ୍ଦ ସେ ଅଞ୍ଚଳକୁ ଗୋଟିଏ ଯୁଦ୍ଧ କ୍ଷେତ୍ରରେ ପରିଣତ

କରିଦେଲ । ନେତା ଦୁଇଜଣ ଯେପରି ଆଗବେ ପରାମର୍ଶ ଦେଇ ପଠେଇଥିଲେ, ଠିକ୍ ଠିକ୍ ସେଇ ଘଟଣାମାନ ଇନ୍ଦ୍ରଙ୍କ ଆଖି ଆଗରେ ଘଟିଲ । ସେମାନଙ୍କ ଭିତରୁ କେତେଜଣ ଲଠିମାଡ଼ ଖାଇଲେ, ଛନ୍ଦଭଙ୍ଗ ଦେଲେ, କେତେଜଣଙ୍କୁ ପୋଲିସବାଲ ଧରିନେଲେ ।

ମାତ୍ର କିଛି ସମୟ ପରେ ନେତାମାନେ ମାଇକ୍‌ରେ ଶୁଣେଇ ଦେଲେ ଯେ, ଏ ବର୍ବୋରଚିତ ପୁଲିସ ଅତ୍ୟାଚାରର' ପ୍ରତିବାଦ କରାଯିବ । ଆଜି ସନ୍ଧ୍ୟାରେ ପ୍ରେସ୍ କନ୍‌ଫରେନ୍‌ସରେ ଆଗ ଏ ସମସ୍ତ ଘଟଣା ଜଣାଇ ଦିଆଯିବ । ତେଣୁ ଆମେ ଅନୁରୋଧ କରୁଛୁ ଯେଉଁମାନେ ମାଡ଼ ଖାଇ ପୁଲିସ ହାତରୁ ଖସି ଯାଇଛନ୍ତି, ସେମାନେ ସନ୍ଧ୍ୟା ପର୍ଯ୍ୟନ୍ତ ଲୁଚି ରୁହନ୍ତୁ । ପ୍ରେସ୍ କନ୍‌ଫରେନ୍‌ସ ସରିଲ ପରେ ଯାହା ହେବ ଦେଖିବା ।''

( ୧୪ )

ସନ୍ଧ୍ୟା 'ଛ'ଟା ବେଳକୁ ଅତିଥି ଭବନରେ ଲୋକାରଣ୍ୟ । ସାଢ଼େ ୬ଟା ବେଳକୁ ସାମ୍ବାଦିକ ସମ୍ମେଳନ । ପାଞ୍ଚଟା ବାଜିବା ପୂର୍ବରୁ ଇନ୍ଦ୍ର ଆସି ଜାଗା ଉପରେ ହାଜର । ତାଙ୍କ ହାତ ଦେଖାଇ ଦେଇଥିବା କାମ ଯୋଗୁ ନେତାମାନେ ସନ୍ତୁଷ୍ଟ ହୋଇ ତାଙ୍କୁ ଜଳଯୋଗ ଏବଂ ପାନୀୟ ବନ୍ଦୋବସ୍ତର ଦାୟିତ୍ୱ ଦେଇଥାନ୍ତି । ଯେ ଦିନ ଶୋଭାଯାତ୍ରା ପହଞ୍ଚିଲ ପରେ ଗଣ୍ଡଗୋଳର ସୂତ୍ରପାତ ହୋଇଥିଲ । ପୁଲିସବାଲ ଇନ୍ଦ୍ରଙ୍କୁ ମାଡ଼ିବସିଲ ବେଳକୁ, ଜାଲରେ ପଡ଼ିଥିବା ବଡ଼ ରୋହି ମାଛ ମୁଣ୍ଡିଆ ମାରି ଖସି ଆସିଲ ପରି, ଇନ୍ଦ୍ର ଦି' ଗ୍ରିଟା ପୁଲିସବାଲଙ୍କ ଦାନ୍ତ, ନାକ ଫଟେଇ ଖସି ଆସିଥିଲେ । ଜଣକ ପରେ ଜଣେ ଅଧିସ୍ୱୀକୃତ ସମ୍ବାଦଦାତା, ଅଣଅଧିସ୍ୱୀକୃତ ସମ୍ବାଦଦାତାମାନେ ପହଞ୍ଚୁଥାନ୍ତି । କେତେଜଣଙ୍କୁ ଆଣିବା ପାଇଁ ଅପରପକ୍ଷରୁ ଗାଡ଼ି ବନ୍ଦୋବସ୍ତ ହୋଇଥିଲ । ସେମାନେ ଗାଡ଼ିରେ ଆସି ପହଞ୍ଚିଲେ, ଅନ୍ୟ କେତେଜଣ ନିଜ ନିଜ ଦୁଇ ଚକିଆ, ଗ୍ଚରି ଚକିଆ ଧରି ପହଞ୍ଚିଗଲେ ।

ଲମ୍ବା ହଲ୍‌ରେ ସମସ୍ତଙ୍କ ବସିବା ପାଇଁ ସୁବିଧା ହୋଇଥିଲ । ମାଇକ୍, ଟେପ୍‌ରେକର୍ଡ଼ର ମଧ୍ୟ ଯୋଗାଡ଼ ହୋଇ ଥୁଆ ହୋଇଥାଏ । ଏଣେ ଆଉ ଗୋଟେ ପାଖ ରୁମ୍‌ରେ କେତେଜଣ ନେତା ଖଣ୍ଡିଆ ଖାବରା ହୋଇଥିବା ମାଷ୍ଟ୍ରାଣୀମାନଙ୍କୁ ସଜଡ଼ୁଥାନ୍ତି । କାହା ଦେହରେ ଟିଂଚର ଆଇଓଡ଼ିନ୍ ଲଗାଇ ତୁଳାମରା ଯାଉ-ଥାଏ ତ କାହା ଦେହରେ ନାଲି ମଲମ । ସେଥିପାଇଁ ସ୍ୱତନ୍ତ୍ର 'ଜାଗୁଲେଇ କଳାମନ୍ଦିର'ର ପେଣ୍ଟର ଆସିଥାନ୍ତି । ଏଣେ ଇନ୍ଦ୍ରଙ୍କ ପାଖେ ବିଭିନ୍ନ ରଙ୍ଗ ବେରଙ୍ଗର ପାନୀୟ ଥୁଆ ହୋଇଥାଏ । ତା'ସାଙ୍ଗକୁ ଭିନ୍ନ ଭିନ୍ନ ପ୍ରକାରର ଖାଦ୍ୟ ।

ଠିକ୍ ସମ୍ମୁଖରେ ସମ୍ମିଳନୀ ଆରମ୍ଭ ହେଲା । ଏଥିରେ ଏକୋଇଶ ବର୍ଷୀୟ ଯୁବ ସମ୍ବାଦଦାତାଙ୍କଠାରୁ ଆରମ୍ଭ କରି ବର୍ଷୀୟାନ ସମ୍ବାଦଦାତା ମଧ୍ୟ ଉପସ୍ଥିତ ଥାନ୍ତି । ଘଟଣାଟି କଅଣ ହେଉଛି ଦେଖିବା ପାଇଁ ଇନ୍ଦ୍ର ଯାଇ କବାଟ ପାଖେ ଠିଆ ହେଲେ । କିଛି ସମୟ ପରେ ରଙ୍ଗମଞ୍ଚକୁ ଅଭିନେତ୍ରୀ, ଅଭିନେତାମାନେ ଆସିଲା ଢଙ୍ଗରେ କେତେଜଣ ନେତା, ମାଷ୍ଟ୍ରାଣୀମାନଙ୍କୁ ଧରି ଘର ଭିତରେ ପ୍ରବେଶକଲେ । ମୃଦୁ ଗୁଞ୍ଜନ ହଲ୍‌ଟିଯାକ ଖେଳିଗଲା । ଯୁବକଠାରୁ ବୃଦ୍ଧ ସାମ୍ବାଦିକମାନେ ହାଁ କରି ସେମାନଙ୍କ ଆଡ଼କୁ ଏକ ଦୃଷ୍ଟିରେ ଚାହିଁ ରହିଲେ ।

ଏହି ସମୟରେ ନେତାଜିଆ ଲୋକଟି କୋହଭରା କଣ୍ଠରେ ଆରମ୍ଭ କଲେ, 'ମୁଁ ଜଣେ ସାହିତ୍ୟ ଶିକ୍ଷକ—କିନ୍ତୁ ଆଜିର ଏ ଦାରୁଣ ଘଟଣା ପରେ ମୋ ମୁହଁରେ ଭାଷା ନାହିଁ ଏ ବର୍ବରୋଚିତ, ଅମାନୁଷିକ, ନପୁଂସକ ଅତ୍ୟାଚାର ବିଷୟରେ ବର୍ଣ୍ଣନା କରିବାକୁ'—କହୁ କହୁ ସେ କୋହ ଧରି କାନ୍ଦି ପକେଇଲେ । ତାଙ୍କ କାନ୍ଦ ଦେଖି ଠିଆ ହୋଇଥିବା ସ୍ତ୍ରୀଲୋକମାନେ ମଧ୍ୟ ତାହା ଧରି କାନ୍ଦିବାକୁ ଆରମ୍ଭ କଲେ ।

ଏ ପ୍ରକାର କରୁଣ ଦୃଶ୍ୟ ଜଣେ ବର୍ଷୀୟାନ ସାମ୍ବାଦିକଙ୍କ ମନରେ ଦାରୁଣ ଆଘାତ କରିଥିଲା । ତେଣୁ ସେ ଅଖିରୁ ଚଷମା କାଢ଼ି 'ଚୂ ଚୂ, ଓହୋଃ ଓହୋଃ ଉଚ୍ଚାରଣ କରି ସମବେଦନା ଜ୍ଞାପନ କଲାବେଳକୁ, ଆଉ ଜଣେ ଯୁବକ ସାମ୍ବାଦିକ ପଛରୁ ଠିଆ ହୋଇ ପ୍ରଶ୍ନ ପଚାରିଲେ, ''ଆପଣଙ୍କ ପିନ୍ଧିଥିବା ବ୍ଲାଉଜକୁ କଅଣ ପୋଲିସବାଲା ଚିରିଦେଲେ ?''

ତାଙ୍କ କଥାଶୁଣି ଯୁବ ମାଷ୍ଟ୍ରାଣୀ ଜଣକ କହିଲେ, 'ଆଉ କଅଣ ଚିରିବ ? ସେମାନଙ୍କ ଅତ୍ୟାଚାର କଥା ତ ଆପଣ ଆଖିରେ ଦେଖୁଛନ୍ତି ।'

ତାଙ୍କ ଉତ୍ତର ଶୁଣି ଯୁବ ସାମ୍ବାଦିକ ପୁଣି ପଚାରିଲେ 'ଗଣ୍ଡଗୋଳ ସମୟରେ ଆଉ ଜଣେ କିଏ ଭିଡ଼ କରି ଚିରିଥିଲେ, ବ୍ଲାଉଜଟା ତ ଏପରି ଚିରି ନଥାନ୍ତା ?' ତାଙ୍କ ପ୍ରଶ୍ନ ଶୁଣି ଆଗପଟକୁ ବସିଥିବା ସାମ୍ବାଦିକ ଜଣେ ଉଠି କହିଲେ 'କି ପ୍ରଶ୍ନ ପଚାରୁଛ ? ସାମ୍ବାଦିକ ସମ୍ମିଳନୀରେ ପ୍ରଶ୍ନ କିପରି ପଚାରି ଯାଏ ଶିଖିନ ?' ତାଙ୍କ କଥା ଶୁଣି ଯୁବକ ଜଣକ ଉତ୍ତ୍ୟକ୍ତ ହୋଇ କହିଲେ—ମୁଁ ଜଣେ 'ଇନଭେଷ୍ଟିଗେଟିଂ ଜର୍ଣ୍ଣାଲିଷ୍ଟ ।' ଯାହା ଲେଖିବ ଭଲ ଭାବେ ବୁଝି ସୁଝି, ଦେଖି, ଲେଖେ । ଆପଣଙ୍କ ପରି ଏ ଅଫିସ ସେ ଅଫିସ ଯାଇ କାନକୁହା କଥା ଶୁଣି ଲେଖେନ । କଥାଟା ପ୍ରୌଢ଼ ସାମ୍ବାଦିକଙ୍କୁ ବାଧିଲା । ସେ ସଙ୍ଗେ ସଙ୍ଗେ କହିଲେ—'ହଁ ବଡ଼ ଖବର କାଗଜର ସାମ୍ବାଦିକ ତ ! କହିବନି କାହିଁକି ?'

କଥାଟା ଗଣ୍ଡଗୋଳିଆ ଧରୁଥିବା ଦେଖି କେତେଜଣ ପୁରୁଖା ସାମ୍ବାଦିକ ଦୁଇ ଜଣଙ୍କୁ ଚୁପ୍‌ଚାପ୍ କରିଦେଲେ ଏବଂ ନେତାମାନଙ୍କୁ ଘଟଣା ବର୍ଣ୍ଣନା କରିବାକୁ କହିଲେ । ଏହି ସମୟରେ କେତେଜଣ ସାମ୍ବାଦିକ ବାହାରକୁ ବାହାରିଯାଇ ଜଳ-

ଯୋଗ କୋଠରୀରେ ବସି ଇନ୍ଦ୍ରଙ୍କୁ ଜଳଯୋଗ ଅଣ୍ଡା ଚମ୍ମ ପାନୀୟ ଇତ୍ୟାଦି ବିଷୟରେ ପଚରିବା ଆରମ୍ଭ କଲେ । ସମସ୍ତ ଆୟୋଜିତ ନିଦ୍ରଙ୍କୁ ଦେଖାଇ ଦବାପରେ, ସେ ଯାହାର ଇଚ୍ଛାମୁତାବକ ବରାଦ ଦେଲେ ।

ଏହି ମଜକା ଦେଖି ଇନ୍ଦ୍ର ପଚାରିଲେ, 'ଇଂଛା ଆପଣମାନେ ନିଜ ନିଜ ଭିତରେ ଝଗଡ଼ା କରୁଛନ୍ତି ?'

ତାଙ୍କ କଥା ଶୁଣି ଜଣେ କହିଲେ, "କଣବେନି କମିତ ? କାଓଁ ଆମ ଭିତରେ କଅଣ ଗୋଟେ ଦଳ ? ଆମମାନଙ୍କ ଭିତରେ ବ ଡ଼' ତିନିଟା ଦଳ ଅଛି । ଇସ୍ଥା ଭିତରେ ମାଷ୍ଟ୍ରବାଲା ଗୋଟେ ଦଳକୁ ଧରିଥିଲେ, ପୁଲିସବାଲା ଆଉ ଗୋଟେ ଦଳକୁ ଧରିଥିବେ । ଆମେ ଭାଇ କାହାପଟେ ନୋହୁଁ । ଗ୍ଲୁଡ଼, ସେଥିରୁ କଅଣ ମିଳିବ କହିଲ ? ଘଟଣାଟ ଘଟିଗଲା; ତା ଉପରେ ତ ଗୋଟେ ଖବର 'ବାଡି ଭାଙ୍ଗି ବନି କି ସାପ ମରବନି' ବାଟରେ ଦେଇଦେଲେ ସମସ୍ତଙ୍କ ମନ ଖୁସି । ଆଉ ଏତେ ଖୋଳ-ତାଡ଼ ମାର ମୁଣ୍ଡା କାହିଁକି ? ଏଇଟା 'ଆମେରିକା' ନା 'ଲଣ୍ଡନ' ? ଆମ ଲୋକତ 'ରସାଳିଆ' ଖବର ବାହାର ନ କଲେ କାଗଜ ପଢ଼ିବେନି । ତେଣୁ ଖବରଟା ରସାଳିଆ ହୋଇଥିବ, ମାଲ ମସଲା ଥିବ, କାହା ଆଡ଼କୁ ଢଳୁ ନଥିବ । ବେଶ୍ କଥା ସଇଲା । ହଉ ସେ ପଞ୍ଚାଟା କଅଣ କରୁଛନ୍ତି କରନ୍ତୁ, ଆପଣ ଆପଣଙ୍କ କାମଟା ଆରମ୍ଭ କଲେ !"

ଇନ୍ଦ୍ର ସାଥି ସାଥି ତାଙ୍କୁ ଦାୟିତ୍ୱ ବୁଲାଇଲେ । ସେ ତ ଏ ସମସ୍ତ ବିଷୟ ପରିଚାଳନା କରିବାରେ ବିଜ୍ଞ ଲୋକ, କିନ୍ତୁ ଏମାନଙ୍କ କଥାଟା ଶୁଣି ସେ ମନେ ମନେ ଭାବିଲେ, ମର୍ତ୍ତ୍ୟ ଲୋକରେ, ଆପତତଃ ଦେବଭୂମୀ ଭାରତ ବର୍ଷରେ କଅଣ 'କାମଳ ସାମ୍ବାଦିକତା'ର ମୂଲ୍ୟ ବେଶୀ ? ଯେଉଁ ଦେଶରେ ଦେବତାମାନେ ଜନ୍ମ-ଗ୍ରହଣ କରିବାକୁ ବୈକୁଣ୍ଠଧାମ ଛାଡ଼ି ଆସନ୍ତି, ସେ ଦେଶର ଲୋକମାନଙ୍କର ଅରୁଚି-କର, ରସାଳିଆ, ଅତିରଞ୍ଜିତ, ଅଶ୍ଳୀଳ ଖବର ପଢ଼ିବା ଆଉ ଶୁଣିବା ପାଇଁ ଆଗ୍ରହ କମିତ ବଢ଼ିଲା, ଆଉ ଏ ଦେଶରେ ସାମ୍ବାଦିକମାନେ ଏପରି ଖବର ପରିବେଷଣ କରିବାକୁ କମିତ ବା ଯାଉଛନ୍ତି ! ତା ଛଡା ଏ ଦେଶର ବିଜ୍ଞ ପାଠକମାନେ ଏପରି ସମ୍ବାଦ ପରିବେଷଣ ବିରୁଦ୍ଧରେ ପ୍ରତିବାଦ କରୁ ନାହାନ୍ତି କାହିଁକି ?

ଏଇ କଥା ଭାବି ସେ ପୁଣି କଥା ଆରମ୍ଭ କଲାବେଳକୁ ସେ ଦିନ ସନ୍ଧ୍ୟାର ସମ୍ମିଳନୀ ଶେଷ ହେଲା ।

## ( ୧୭ )

ସାମ୍ବାଦିକମାନଙ୍କୁ ବିଦାୟ ଦେଲାବେଳକୁ ରାତି ପ୍ରାୟ ଏଗାର । ଏତେ ରାତିରେ ସେ କୁଆଡ଼େ ଯିବେ ! ଅବଶ୍ୟ ରାତି ଭୋଜନ ସେ ଏଇ ସାମ୍ବାଦିକ କେତେ ଜଣଙ୍କ ସଙ୍ଗେ ଶେଷ କରିଦେଇଥିଲେ, କେବଳ ଶୋଇଯିବା କଥା ।

ତାଙ୍କୁ ...ଟ ସେପଟ ହେବା ଦେଖି ଅତିଥି ଭବନର ଜଣେ ପ୍ରକୋଷ୍ଠ ଅନୁଚର ...ଙ୍କୁ ପଚାରିଲେ, "ଆଜ୍ଞା କଅଣ ଅସୁବିଧା ହେଲକି ?" ଖାଇବା,ପିଇବା, ଦିଆନିଆ ଭିତରେ ଦୁଇଜଣଙ୍କ ପରିଚୟ ହୋଇ ଯାଇଥାଏ, ତା'ଛଡା ଇନ୍ଦ୍ରଙ୍କ ବ୍ୟବହାରରେ ସମସ୍ତ ଅନୁଚରମାନେ ବିଶେଷଭାବେ ଖୁସି ।

ଇନ୍ଦ୍ର ଅନୁଚରଟିକୁ କହିଲେ, "ନାଇଁ ଭାଇ, ରାତି ଏତେ ହେଲାଣି, ଏବେ କୁଆଡ଼େ ଯିବି ସେଇଆ ଭାବୁଛି ! କାମ ସରିଲା ମାନେ ଯେ ସୁଆଡେ 'ଉଡ଼ାଣଛୁ' । ମୋତେ ଯେତେବେଳେ ଗୋଟେ ଦାୟିତ୍ୱ ଦେଇଥିଲେ, ତାକୁ ତ ତୁଲାଇ କରି ଯିବାକୁ ହେବ ?"

ଇନ୍ଦ୍ରଙ୍କ କଥା ଶୁଣି ପ୍ରକୋଷ୍ଠ ଅନୁଚର ଜଣକ କହିଲେ—"କିଛି ଚିନ୍ତା ନାହିଁ ଭାଇନା, ରାତିଟା ତ, ଏଇ ଲାଉଂଜ ଭିତରେ ଶୋଇଯାଆନ୍ତୁ, ସକାଳୁ ଉଠି ଯିବେ । ମୁଁ ବି ସେଇ ସୋଫା ଉପରେ ଗଡ଼ିଯିବି । ଏତେ ରାତିରେ ଆଉ କିଏ ଦି' ତିନି କିଲୋମିଟର ଯାଉଛି ?" ଏତକ କହି ଅନୁଚର ଜଣଙ୍କ ଲାଉଂଜରେ ପଡ଼ିଥିବା ସୋଫା ସବୁ ଝଡ଼ାଝଡ଼ି କରିବାରେ ଲାଗିପଡ଼ିଲେ ।

ଲୋକଟିର ହିମତ୍ ପାଇ ଇନ୍ଦ୍ର ଯାଇ ସୋଫା ଉପରେ ବସିପଡ଼ି ଶୀତତାପ ନିୟନ୍ତ୍ରଣ ଯନ୍ତ୍ର ଆଡେ ଚାହିଁଲେ । ସୋଫା ଗୁଡ଼ିକ ଝାଡ଼ିଦେଲା ପରେ, ଲୋକଟି ଶୀତ-ତାପ ନିୟନ୍ତ୍ରଣ ଯନ୍ତ୍ରଟି ଦେଇ, ସୋଫା ଉପରେ, ଚଉକି ଉପରୁ ଗୋଟେ କୁସନ ଆଣି ମୁଣ୍ଡତଳେ ମାଣ୍ଡି କରି ଶୋଇପଡ଼ିଲେ । ଇନ୍ଦ୍ରଙ୍କୁ ଡର ଲାଗୁଥାଏ । ସେ ଡରି ଡରି ପଚାରିଲେ, "ଆମେ ଏଠି ଶୋଇଲେ କେହି କିଛି କହିବେନି ତ ?"

ଅନୁଚର ଜଣକ କହିଲେ, "ତୁମେ ଭାଇନା ଶୋଉନ—ମୁଁ ସେ କଥା ବୁଝିବି । ଏ ଅତିଥି ଭବନରେ ଯେଉଁମାନେ ସବୁ ରହୁଚନ୍ତି, ସେମାନେ କଅଣ ନିୟମ ଅନୁଯାୟୀ ରହୁଛନ୍ତି ? ସେ ପନ୍ଦର ନମ୍ବର ରୁମ୍‌ରେ ଦେଖିଲନି, ସେ ନେତା ଜଣକ କେତେ ଗୁମଗୁଙ୍କୁ ଆଣି କି ନାଟ ଲଗେଇଛି ! ପାଟି କରୁଛନ୍ତି ଯେ ଅନ୍ୟ ରୁମ୍‌ର ଲୋକମାନେ ଶୋଇପାରୁ ନାହାଁନ୍ତି । କିନ୍ତୁ ତାଙ୍କୁ କିଏ କହିବ ? ସେ ତ ନେତା । ଏଠି ସେମାନଙ୍କର ବିଭିନ୍ନ ଆଳରେ ଆଡ୍‌ଡ଼ା । ମାସକଯାକ ରହିବେ, ଖାଇବେ, ବିଲ୍ ଦେଲା ବେଳକୁ ପନ୍ଦର ଦିନର । କାହା ଉପରେ ହଜାର ହଜାର ଟଙ୍କା ପଡ଼ିଛି ତ କିଏ ଖାଇକରି କୁଆଡ଼େ ଗଲେଣି ତାର ପତ୍ତା ନାହିଁ । ଏଠି କିଏ କାହା କଥା ପଚାରୁଛି ? ନେତା ହୋଇଗଲେ ସବୁ ସରିଗଲା । ଆଉ ଆମ ବାବୁ-ମାନେ ତାଙ୍କୁ ପାଟି ଫିଟେଇବେ ? ସେମାନେ ତ ମାସ ମାସ ଧରି ଲୁଟ୍ କରୁଛନ୍ତି, ଆଉ ଆମେ ଏ ଲାଉଂଜ ଭିତରେ ଗୋଟେ ରାତି ଶୋଇ ପଡ଼ିଲେ କଅଣ ପୃଥିବୀ ପ୍ରଳୟ ହୋଇଯିବ ?"

ତାଙ୍କ କଥା ଶୁଣି ଇନ୍ଦ୍ର କହିଲେ, "ଏପରି ହରିଲୁଟ ଚାଲିଲେ ଏ ସଂସ୍ଥା ଚାଲିବ କିମିତ ? ଇଏ ତ ବୁଡ଼ିଯିବ ଜାଣ ।"

ଅନୁଚର ଜଣକ କହିଲେ, "ବୁଡ଼ିଯିବ ? ବୁଡ଼ିଯିବାର ହୋଇଥିଲେ ତ କେବେଠୁ ବୁଡ଼ିଯାଣି—ପୁଣି ଚାଲିଛି କିମିତ ? କହିଲି ଭାଇନା, ଏ ସଂସ୍ଥା ହେଉଛି ସମସ୍ତଙ୍କପାଇଁ "କାମଧେନୁ" । ଯେ ଯେତେବେଳେ ଆସୁ (ଅବଶ୍ୟ ସେମିତଆ ଲୋକ —ତୁମ ଆମପରି ଲୋକ ନୁହଁ) "କାମଧେନୁ" ଖାଇବା ପିଇବାକୁ ଦେବାରେ ଅଭାବ କରିବନି । ତେଣୁ ସମସ୍ତେ ଖୁସି । କିଏ ଭିତରେ ପଶୁଛି, ନା ଦେଖୁଛି ? ଦେଖିବା ବା ଦରକାର କଅଣ ? ଦେଖୁନ, ସେ ଯେଉଁ ଅଠର ନମ୍ବରରେ ପଶିଲେ, ସେ ବାବୁ ରାଉରକେଲା ଆଡ଼ୁ ଆସିଛନ୍ତି । ଆଗେ ଭାରି ଫାଙ୍କିଥିଲେ, ଏବେ ଟିକିଏ ତାଙ୍କ ଭାବ-ମୂର୍ତ୍ତି ପଙ୍କଚର ହୋଇଯାଇଛି । ଯାଙ୍କରେ କେତେଟା ଦଣ୍ଡାବାଲୁଙ୍କା ଆଉ କାହା ଘରର ବୋହୂ, ଝିଅ । ଏତେ ରାତିରେ ଆସିଲେ ଏଇଠି ରହିବେ । ଆମ ଭବନପରି ନିରାପଦ ସ୍ଥାନ ଆଉ କେଉଁଠି ଅଛି ? ଅବଶ୍ୟ ଏପରି ବାବୁମାନଙ୍କ ଠାରୁ ଆମକୁ ଭଲ ଦି'ପଇସା ମିଳେ । କିନ୍ତୁ ଭାଇନା, ବଡ଼ ଜଘନ୍ୟ କାମ, ଏକୁ ଆଣେ, ତାକୁ ଆଣେ, ରାତିଟାଯାକ ହଇରାଣେ ।"

ଇନ୍ଦ୍ର ତାଙ୍କକଥା ଶୁଣି କହିଲେ, "ତୁମେ ଯାହା କୁହ ବାବୁ, ଏ ସବୁ ମୋତେ ଭଲ ନୁହଁ । ଗୋଟିଏ ସ୍ଥାନର ମାନ ମର୍ଯ୍ୟାଦା ରକ୍ଷା କରିବା ସମସ୍ତଙ୍କ କର୍ତ୍ତବ୍ୟ । ଏମାନେ ଏପରି ବେପରୁଆ ଭାବେ ଏ ଭବନକୁ ବ୍ୟବହାର କରିବା ଜନସ୍ୱାର୍ଥ ଦୃଷ୍ଟିରୁ ଅତି ଗୁରୁତର । ତା'ଛଡ଼ା ଏଠି ରହିବା, ଖାଇବା, ଯିବା, ଆସିବା ପାଇଁ ଧରାବନ୍ଧା ନିୟମ କାନୁନ ହେବା ଉଚିତ ।"

ଇନ୍ଦ୍ରଙ୍କ କଥା ଶୁଣି ପ୍ରକୋଷ୍ଠ ଅନୁଚରଟି କହିଲା, "ତା' ତ ସତ ଭାଇନା; ହେଲେ ସବୁବେଳେ ନିୟମ କାନୁନ୍ ତୁମ ଆମ ପାଇଁ, ବଡ଼ ଲୋକମାନଙ୍କ ପାଇଁ ନୁହେଁ । ତା'ଛଡ଼ା 'ବାରଜାତି ତେରଗୋଲ, ବୈଷ୍ଣବ ହେଲେ ସବୁ ଗଲା' ପରି ତୁମେ ଚୋର, ଡାକୁ ଯାହା ହୁଅନା କାହିଁକି 'ନେତା' ବନିଗଲେ ଚୌରଖୁଣ ମାଫ୍ । ହଉ ରାତି ବେଶି ହେଲଣି । ଶୋଇପଡ଼"—କହି ସେ ମୁହଁ ବୁଲାଇଲା ।

ଲାଇଟ୍ ବନ୍ଦ କରି ଇନ୍ଦ୍ର ଆଖି ବୁଜିଲେ ।

( ୧୭ )

କୁଆ "କା" କଲାବେଳକୁ ପ୍ରକୋଷ୍ଠ ଅନୁଚରଟି ଇନ୍ଦ୍ରଙ୍କୁ ଦି' ଡାକ ମାରି ଲଉଡ଼ିରୁ ବିଦାୟ ନେଇ ସାରିଥାଏ । ସ୍ୱର୍ଗପୁରୀ ଛାଡ଼ିବା ଦିନଠାରୁ ଏତେ ଶାନ୍ତିରେ

ସେ କେଉଁଠି ଶୋଇପାରି ନଥିଲେ । ତର ତର ହୋଇ ବାଥ୍ ରୁମ୍‌ରେ ମୁହଁଟି ଧୋଇ ଅତଥି ଭବନ ଛାଡ଼ି, ରାଜରାସ୍ତା ଉପରକୁ ଓହ୍ଲାଇ ପଡ଼ିଲେ ।

ରାସ୍ତାକୁ ସିନା ବାହାରି ଆସିଲେ, ହେଲେ ଯିବେ କୁଆଡେ ? ଆଗ ପଛକୁ ନଦେଖି ସେ ସିଧା ଚାଲିଥାନ୍ତି । କିଛିବାଟ ଗଲାପରେ ତାଙ୍କ ପଛପଟୁ ଗୋଟେ ଆମ୍ବାସାଡ଼ର କାର୍ ଆସି ଟିକିଏ ଆଗକୁ ଯାଇ ବ୍ରେକ୍ ଦେଇ ଠିଆହେଲା । ତାଙ୍କୁ ବାଟଓଗାଳି ଠିଆ ହେବା ଦେଖି ଇନ୍ଦ୍ର ପୁଣି କିଛି ବିପଦ ଆସିଲା ଭାବି ଶଙ୍କାକୁଳ ମନରେ ବାଟ ଛାଡ଼ିଦେଇ ଗଲାବେଳକୁ ଗାଡ଼ି ଭିତରୁ ଜଣେ ଭଦ୍ରଲୋକ ଓହ୍ଲାଇ ପଡ଼ି ଇନ୍ଦ୍ରଙ୍କୁ ନମସ୍କାର କଲେ । ଇନ୍ଦ୍ର କାବା ହୋଇ ତାଙ୍କ ମୁହଁକୁ ଚାହିଁ ଚିହ୍ନିଲେ ଯେ, ସେଇ ବ୍ୟବସାୟୀ ଭଦ୍ରଲୋକ, ଯାହାଙ୍କୁ ସେ ଜେଲରେ ଭେଟିଥିଲେ ଏବଂ ସେ ଜେଲ 'ଦାଦା'ମାନେ ତାଙ୍କୁ ହଇରାଣ କଲାବେଳେ ସାହାଯ୍ୟ କରିଥିଲେ ।

ଭଦ୍ରଲୋକ ଜଣକ କହିଲେ, "ବୁଝିଲ ଭାଇନା, କାଲି ସନ୍ଧିରେ ଜେଲରୁ ମୁକୁଳିଲି—ଆଉ ତୁମେ କୁଆଡ଼େ ଚାଲିଛ ?"

ଇନ୍ଦ୍ର କିଛି କହିବା ପୂର୍ବରୁ ସେ ତାଙ୍କୁ ଗାଡ଼ି ଭିତରକୁ ଟାଣିଆଣି କହିଲେ, "ଚାଲ, ମୋ' ଘର ଏଇ ପାଖରେ, ଆମଘର ଆଡ଼େ ଟିକିଏ ବୁଲି ଆସିବ" ।

ଇନ୍ଦ୍ରଙ୍କର ତ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ କିଛି ନଥିଲା, ତେଣୁ ବ୍ୟବସାୟୀ ଭଦ୍ର-ଲୋକଙ୍କ ନିମନ୍ତ୍ରଣକୁ ସେ ଆଉ ଉପେକ୍ଷା ନକରି ତାଙ୍କ ସାଙ୍ଗେ ଚାଲିଲେ । ଗାଡ଼ି ଦୁ' ତିନ ମିନିଟ୍ ପରେ ବାବୁଙ୍କ ବିରାଟ ଦୁ' ମହଲା କୋଠା ପାଖରେ ଲାଗିଲା । ବିରାଟ କୋଠା, ବାଡ଼ି, ବଗିଚା, ଚାକର, ପୂଜାରୀ, ଧନ ଧାନ୍ୟରେ ଘର ପୂରି ଉଠିଥାଏ । ଇନ୍ଦ୍ର ଏସବୁ ଦେଖି ଆହୁରି ଆଶ୍ଚର୍ଯ୍ୟ ହୋଇଗଲେ । ଏପରି ଲୋକ ପୁଣି ଜେଲକୁ ଯାଆନ୍ତି ? ବ୍ୟବସାୟୀ ବାବୁ ଜଣଙ୍କ ତାଙ୍କୁ ସବୁ ଦେଖାଉ ଥାନ୍ତି । ବଗିଚା ବୁଲାଇ ସାରିଲାପରେ ସେ ତାଙ୍କୁ ଡ୍ରଇଂ ରୁମ୍ ଭିତରକୁ ନେଲେ ।

ଡ୍ରଇଁ ରୁମ୍ ଭିତରକୁ ପଶୁ ପଶୁ ଇନ୍ଦ୍ର ଭାବିଲେ ତାଙ୍କ ଇନ୍ଦ୍ରପୁରୀରେ ତ ଏତେ ସୁନ୍ଦର ସଜା ହୋଇଥିବା ରୁମ ନ ଥିବ ! ବ୍ୟବସାୟୀ ବାବୁ ତାଙ୍କୁ ଗୋଟିଏ ଚେୟାର ଉପରେ ବସିବାକୁ କହି ପୂଜାରୀଙ୍କୁ କିଛି ଚା' ଜଳଖିଆ ବନ୍ଦୋବସ୍ତ କରିବାକୁ କହିଲେ । 'ବ୍ରାହ୍ମଣ ଲୋକ', ଭଲ ଘିଅରେ ତିଆରି କରିବାକୁ ନିର୍ଦ୍ଦେଶ ଦେଇ ଇନ୍ଦ୍ରଙ୍କ ସଙ୍ଗେ କଥାବାର୍ତ୍ତା ଆରମ୍ଭ କଲା ବେଳକୁ ଗେଟ୍ ପାଖେ କାହା ଗାଡ଼ିର ହର୍ଣ୍ଣ ଶୁଣାଗଲା । 'ଗେଟ୍ କିପୁଆଲୀ' ଆସି ଦେଖା କରିବାକୁ ଆସୁଥିବା ବାବୁଙ୍କ ନାଁ କହିଲାରୁ ଭଦ୍ରଲୋକ ଇନ୍ଦ୍ରଙ୍କୁ ଡ୍ରଇଁ ରୁମ୍ ପାଖ ରୁମ୍‌ରେ ଅପେକ୍ଷା କରିବାକୁ କହିଲେ । ଇନ୍ଦ୍ର ଭାବିଲେ, ବ୍ୟବସାୟୀ ଲୋକର ବ୍ୟବସାୟ ସମ୍ବନ୍ଧୀ

ମାମଲାଟା ମୋ ଶୁଣିବା ଉଚିତ ହେବନି । ତେଣୁ ସେ ଯାଇ ଚୁପ୍‌ଚାପ୍ ଆର ରୁମ୍‌ରେ ବସିଲେ ।

ଏଇ ସମୟରେ ତିନି ଚାରିଜଣ ଯୁବ ନେତାଳିଆ ଢଙ୍ଗରେ ପିନ୍ଧିଥିବା ଖଦଡ଼ ଧୋତି ପଞ୍ଜାବୀ ପିନ୍ଧି ଡ୍ରଇଁ ରୁମରେ ପ୍ରବେଶ କରି ଆରମ୍ଭ କଲେ 'ଆହେ ମଦନ ବାବୁ ନମସ୍କାର, ନମସ୍କାର । ଆପଣ କଅଣ କାଲି ରାତିରେ ଫେରିଲେ ?' ସେମାନଙ୍କୁ ଦେଖି ବ୍ୟବସାୟୀ ବାବୁ ଟିକିଏ ଗମ୍ଭୀର ହୋଇ ବସିଥାନ୍ତି । ସେ କିଛି କହିବା ପୂର୍ବରୁ ସେମାନଙ୍କ ଭିତରୁ ଆଉ ଜଣେ କହିଲେ 'ବୁଝିଲେ ମଦନ ବାବୁ, ଆପଣଙ୍କୁ ସେ କେସରେ ବେଲରେ ଛାଡ଼ିଦେବା ପାଇଁ ସେଦିନ ଆମେ ଯୋଗାଣ ମନ୍ତ୍ରୀଙ୍କ ପାଖେ ଘଣ୍ଟା ଘଣ୍ଟା ଧରି ବସିଲୁ । ଚାରିଆଡ଼କୁ ଟେଲିଫୋନ ଗଲା । ଜାଣି ଜାଣି ସେ କଲେକ୍ଟର ଟେଲିଫୋନ ଧରିଲେନି । ରାତି ଦ'ଟାରେ—ବୁଝିଲେ ରାତି ଦ'ଟାରେ ତାଙ୍କୁ ପାଇଲା ବେଳକୁ ଆପଣ ଜେଲ ଭିତରେ । ଅବଶ୍ୟ ଆମେମାନେ ନିଷ୍ପତ୍ତି ଗ୍ରହଣ କରିଛୁ ଏ କଲେକ୍ଟରଙ୍କୁ ଯେ କୌଣସି ପ୍ରକାରେ ଏଇ ମାସକ ଭିତରେ ଏ ଜିଲ୍ଲାରୁ ବିଦାୟ କରିବୁ । ମନେ ମନେ ଭାରି କାଢ଼ୁଆ କଲେକ୍ଟର ଦେଖାଉଛି ।'

ବ୍ୟବସାୟୀ ବାବୁ ଶୁଣିକରି କହିଲେ, "କଲେକ୍ଟରତ 'ଉପରବାଲାଙ୍କ' ଲୋକ । ଆଉ ତାଙ୍କର ବା ଭୁଲ କଅଣ ?"

ତାଙ୍କ କଥା ଶୁଣି ମୋଟାଳିଆ ନେତା ଜଣକ କହିଲେ, "ଉପରବାଲାଙ୍କ ଲୋକ କଅଣ ? ତଳବାଲାଙ୍କୁ ଧରି 'ଉପରବାଲା' ନା ନାହିଁ ? ଆମେ କମିଛୁ ତଳେ ଏସବୁ କାମ ଚଳେଇବୁ—ସେ କଥା କଅଣ 'ଉପରବାଲା' ବୁଝିନାହାନ୍ତି ? ଆମକୁ ଯେଉଁମାନେ ସାହାଯ୍ୟ କରୁଛନ୍ତି ତାଙ୍କୁ ଯଦି ଜେଲକୁ ପଠାଇବେ ଆମେ ଏଠି ଏ ସଂସ୍ଥାକୁ ସମ୍ଭାଳିବୁ କେମିତି ? ଠିକ୍ ଅଛି । ଆମେ ଯାଇ ସେଇ 'ଉପରବାଲା'ଙ୍କୁ କହିବୁ—ସେ ଆସି ଏଠି ସମ୍ଭାଳନ୍ତୁ ନହେଲେ ଆମେ ସବୁ ମାସ୍ ରେଜିଗ୍‌ନେସନ୍ ଦେବୁ ।"

ନାଟକୀୟ ଛଟାରେ ନେତାଜଣକ ଏକାଥରକେ କଥାଗୁଡ଼ାକ କହିଗଲେ । ବ୍ୟବସାୟୀ ବାବୁ ମୁହଁରେ ଗାମ୍ଭୀର୍ଯ୍ୟ ଫୁଟାଇ ବସିଥାନ୍ତି । 'ହଉ ମଦନ ବାବୁ,ଆମେ ଚାଲିଲୁ—ଆମକୁ ଆପଣ ଖରାପ ଭାବିବେନି । ପରେ ଆସିଲେ କଥାବାର୍ତ୍ତା'—କହି ସେମାନେ ବିଦାୟ ନେଲେ ।

ସେମାନେ ଗେଟ୍ ପାରହୋଇଛନ୍ତି କି ନାହିଁ ଆଉ ଜଣେ ବାବୁ ଆସି ପହଞ୍ଚିଲେ । ଇନ୍ଦ୍ର ମୁହଁ ଦେଖେଇ ବାହାରିଲା ବେଳକୁ ପୁଣି ଭିତରେ ବସିବାକୁ ଭଦ୍ରଲୋକ ନିର୍ଦ୍ଦେଶ ଦେଲେ ।

ନୂତନ ଲୋକଟି ରୁମ୍‌ରେ ପଶୁ ପଶୁ ଆରମ୍ଭ କଲେ "ମଦନ ବାବୁ ଆମେ-ମାନେ ସମସ୍ତେ ଦୁଃଖିତ । ଆପଣଙ୍କ ପରି ଲୋକ ଜେଲ ଯିବ ? ମୁଁ ଗୃହକର୍ତ୍ତା କରିବା ଦିନଠାରୁ ଏ ଘଟଣା ଦେଖି ନଥିଲି । ଆମେ କଅଣ କରିବୁ କୁହନ୍ତୁ ! ସେ କଲେକ୍ଟରତ କାହାକୁ ନକହି ସିଧା ଆସି ରେଡ୍ କଲା । ପାଞ୍ଚ ମିନଟ୍ ଆଗରୁ ଜାଣିଥିଲେ ମୁଁ ତ ଇନ୍‌ଷ୍ଟାନ୍ସ ଫୋନ୍ କରି ଦେଇଥାନ୍ତି ।

ବ୍ୟବସାୟୀ ବାବୁ ତାଙ୍କ କଥା ଶୁଣି ମଧ ସେଇପରି ଗମ୍ଭୀର ହୋଇ ବସି-ଥାନ୍ତି । ମଝିରେ ମଝିରେ ତାଙ୍କ ଭାଗ୍ୟରେ ଯାହାଥିଲା ତାହା ଘଟିଲା ବୋଲି କହୁଥାନ୍ତି । କିନ୍ତୁ ଆଗନ୍ତୁକ ଜଣକ କହୁଥାନ୍ତି "ବୁଝିଲେ ମଦନ ବାବୁ; ଆପଣମାନେ ଯଦି ଚେଷ୍ଟା ନକରିବେ ହେବନି । ଏ କଲେକ୍ଟର ଯଦି ଆଉ କିଛି ଦିନ ଏ ଜିଲ୍ଲାରେ ରୁହନ୍ତି, ତାହେଲେ ଆମର ସବୁ ଧନ୍ଦା ମାନ୍ଦା ପଡ଼ିଯିବ । ହଉ ମୁଁ ଯାଉଛି । ଶୁଣିଲି କାଲି ଆପଣ ଫେରିଲେ । ଭାବିଲି ଟିକିଏ ଦେଖା କରିଦେବା" କହି ସେ ଉଠିଲେ ।

ଏଇ ସମୟରେ ଚା ଜଳଖିଆ ସବୁ ଆସି ପହଞ୍ଚିଲା । ବ୍ୟବସାୟୀ ବାବୁ ଇନ୍ଦ୍ରଙ୍କୁ ଡାକି ଚା ଖାଇବା ପାଇଁ କହି ନିଜେ ଗୋଟେ କପ୍ ଚା ପିଇବାକୁ ଆରମ୍ଭ କଲେ । ଇନ୍ଦ୍ର ପଚାରିଲେ, ଆଜ୍ଞା ଏମାନେ ସବୁ କିଏ ? ଏ ସମୟରେ ପୁଣି ଗେଟ୍ ପାଖେ ଗାଡ଼ି ଶବ୍ଦ । ଜଗୁଆଳିକୁ ଡାକି କାହାରିକୁ ଭିତରକୁ ନଛାଡ଼ିବାକୁ ବ୍ୟବସାୟୀ ବାବୁ କହି, ଇନ୍ଦ୍ରଙ୍କୁ କହିଲେ "ଭାଇନା ସବୁ କଥା ନିଜେ ଶୁଣିବ, ଦେଖିବ, ଚା'ଟା ପିଇଦିଅ—ସେଇ ଘରେ ବସ । ଏମାନେ ଗଲାପରେ ଆମେ କଥାବାର୍ତ୍ତା ହେବା ।"

ଇନ୍ଦ୍ର ପୁଣି ନିକଟ ଘର ଭିତରକୁ ପଶିଗଲେ ।

( ୧୮ )

ଆଗନ୍ତୁକଙ୍କ ଯିବା ପରେ, ଆଉ ଦଳେ ପଶିଲେ । ଏମାନଙ୍କ ବେଶଭୂଷା 'ଇନ୍ଦ୍ର' ଝରକା ଫାଙ୍କରୁ ଦେଖି ଚମକି ପଡ଼ିଲେ । ଦଳର ନେତା ଡ୍ରଇଁ ରୁମ୍‌କୁ ପଶୁ ପଶୁ ଆରମ୍ଭ କଲା—'ମଦନ ବାବୁ, ହାମ୍‌କୁ କାହିଁକି ଖବରଟା ପଠେଇଲନି ? ଶଳା ହାମଯାକ୍ସ ଗୋଦାମ ଘରେ ରେଡ୍ କରିବେ ? ଦି'ପଟୁ ଟେକାମାଡ଼, ସୋଡ଼ା ବୋତଲ ଫୋପଡ଼ା ଆରମ୍ଭ କରିଥିଲେ ସେମାନେ ଏଠି ପଶି ପାରିଥାନ୍ତେ ?' ସେମାନଙ୍କ କଥା ଶୁଣି ବ୍ୟବସାୟୀ ବାବୁ ତାଙ୍କୁ ବୁଝା ସୁଝା କରି ବିଦାକଲେ । ତା ସାଙ୍ଗେ ମଧ କିଛି ଦକ୍ଷିଣା ଦେଲେ ।

ସେମାନେ ସମସ୍ତେ ବିଦା ହୋଇଗଲା ପରେ, ବ୍ୟବସାୟୀ ବାବୁ ଇନ୍ଦ୍ରଙ୍କୁ ଡ୍ରଇଁ ରୁମ୍‌କୁ ଆସିବାକୁ ଡାକିଲେ । ଇନ୍ଦ୍ର ପଚାରିଲେ 'ଆଜ୍ଞା ଏ ଝବର କଅଣ ? ମୁଁ ତ କିଛି ବୁଝିପାରୁନି । ଏମାନେ ସବୁ କିଏ ? ଆଉ କଅଣ ପାଇଁ ଆସିଥିଲେ ?'

ତାଙ୍କ କଥା ଶୁଣି ମଦନ୍‌ଲାଲ ବାବୁ ଆରମ୍ଭ କଲେ—"ଦେଖନ୍ତୁ ଆପଣ ଜଣେ ଭଦ୍ରଲୋକ, ପୁଣି ବ୍ରାହ୍ମଣ । ଜେଲରୁ ମୁଁ ଆପଣଙ୍କୁ ଭଲ ଭାବେ ଚିହ୍ନିଛି । ତେଣୁ ଆପଣଙ୍କ ପାଖେ କିଛି ମିଛ କହିବିନି । ଆମେ ବ୍ୟବସାୟୀଲୋକ ବ୍ୟବସାୟ କରୁଛୁ, ଏଥିରେ ପୁଣି ଜେଲ ଯିବା,ପୁଲିସ ଥାନାରେ ବସିବା, ଏସବୁ କାହାକୁ ଭଲ ଲାଗେ ? କିନ୍ତୁ ଆମେ କଅଣ କରିବୁ ? ଏ ଯେଉଁ ଲୋକମାନେ ଆସି ସମବେଦନା ଜ୍ଞାପନ କରିଗଲେ, ସେମାନେ କିଏ ଜାଣନ୍ତି ? ପ୍ରଥମ ଦଳ ହେଲେ ରାଜନୈତିକ ନେତା ଦଳ । ଏମାନେ ମାସକୁ ମାସ ଆମ ପାଖରୁ ପାଉଣା ନେବେ । ପୁଣି କେତେ-ବେଳେ ମିଟିଙ୍ଗ ହେବ କି କେଉଁ 'ଉପରବାଲା' ବାବୁ ନେତା ଆସିଲେ ଆମ ଗାଡ଼ିଠାରୁ ଆରମ୍ଭ କରି, ସେମାନଙ୍କର ଖାଇବା ପିଇବା ସମସ୍ତ ଖର୍ଚ୍ଚ ଆମର । ତା'ଛଡ଼ା 'କୁଜନେତା' ! ସେମାନଙ୍କର ପୁଣି ଭଲମନ୍ଦ ସମସ୍ତ ଦେଖିବାକୁ ଅଛି । ଏମାନଙ୍କ ମାସିକିଆ ପାଉଣାରେ ଏପଟ ସେପଟ ହେଲେ, ଆମର 'କୋଟା' ମିଳିବନି କି ଆମ ବ୍ୟବସାୟ ଚାଲିବ ନି । ତେଣୁ ଏମାନଙ୍କ ମର୍ଜି ଜାଣି ଚାଲିବାକୁ ହେବ । ସେ ଯେଉଁ ଦଳର ହୁଅନ୍ତୁ । ଦେଖିଲେନି, କିଏ ତଥା ମନ ବୁଝାଣିଆ କଥା ଗୁଡ଼ାକ କହିଦେଇ ଗଲେ !

ଦ୍ୱିତୀୟ 'ଆଗନ୍ତୁକ' ଜଣକ ସରକାରୀ ଅଫିସର । ସେ ଯୋଗାଣ ବିଭାଗରେ କାମକରନ୍ତି । ସେମାନଙ୍କୁ ତ ହାତରେ ରଖିବାକୁ ପଡ଼ିବ, ନହେଲେ ଭାଇନା, ଯୋଗାଣ ଅଫିସରେ କାଗଜପତ୍ର କିଛି ମିଳିବନି । ମିଳିଲେ ବି ଆପଣଙ୍କୁ ଦଉଡ଼େଇ ଦଉଡ଼େଇ ପ୍ରାଣାନ୍ତକ କରିବେ । ତା'ଛଡ଼ା ଏ ଯେଉଁ ବାବୁ ଆସିଥିଲେ, ଏ ସମସ୍ତ ସରକାରୀ ଗୁପ୍ତ ଖବର ଫୋନ ଦ୍ୱାରା ଆଗରୁ କହିଦଅନ୍ତି । ଆଗରୁ ଖବର ପାଇ ଆମେମାନେ ସତର୍କ ହୋଇଯାଉ । ନହେଲେ ତ ସେମାନେ ଯେକୌଣସି ମୁହୂର୍ତ୍ତରେ ଆମକୁ ଜେଲରେ ଭର୍ତ୍ତି କରିଦେବେ । ତେଣୁ ଏ ଆଗନ୍ତୁକ ବାବୁ ମଧ୍ୟ ଆମ "ମାସିକିଆ" ଫାଇଲରେ ଅଛନ୍ତି ।

ତା'ପରେ ଆପଣ ଦେଖିଲେ ତୃତୀୟ ଦଳ । ଏମାନେ ହେଲେ ଆମ ସାଙ୍ଗ ଗୁଣ୍ଡା । ବ୍ୟବସାୟ ବଣିକ ପୁଣି ଦୁଇନମ୍ବରୀ ବ୍ୟବସାୟ କଲେ ଗୁଣ୍ଡାମାନଙ୍କ ସାହାଯ୍ୟ ନହାତି ଦରକାର । ବିପଦ ବେଳେ ପୁଲିସ୍‌ବାଲାକୁ ଖବର ଦେଇ ତାଙ୍କ ସାହାଯ୍ୟ ପାଇଲା ବେଳକୁ ତୁମର ମାଲ୍ ଲୁଟି ହୋଇ ଯାଇଥିବ । ପୁଣି ଲକ୍ଷ ଲକ୍ଷ ଟଙ୍କାର ମାଲ୍ । ଆମ ମାନଙ୍କର ବି ବିରୋଧୀ ଦଳ ଅଛନ୍ତି । ବ୍ୟବସାୟୀ ବ୍ୟବ-ସାୟୀମାନଙ୍କ ଭିତରେ କନ୍ଦଳ । ତେଣୁ ବ୍ୟବସାୟକୁ ସମ୍ଭାଳିବାକୁ ହେଲେ ଏ ଗୁଣ୍ଡା ଦଳର ବି ଆବଶ୍ୟକତା ଅଛି । ଆପଣ ବି ଦେଖୁଥିବେ ନିର୍ବାଚନ ବେଳେ ବିଭିନ୍ନ ଦଳ କିମିତି ଏମାନଙ୍କ ଘର ଆଗରେ ଆଗରୁ ବିହନା ଦେଇ ଯାଆନ୍ତି ।"

ଇନ୍ଦ୍ର ତାଙ୍କ କଥା ଶୁଣି କହିଲେ, ଏ ତ ବଡ଼ ବିଚିତ୍ର କଥା ! ତାଙ୍କ ମୁହଁରୁ ସ୍ୱର୍ଗ କଥା ବାହାରି ଆସୁଥିଲା । ମାତ୍ର ମୁହଁରେ ହାତ ରଖି ବାହାରି ଆସୁଥିବା କଥାଟିକୁ ବନ୍ଦ ରଖିଦେଲେ । ବ୍ୟବସାୟୀ ମଦନଲାଲ ବାବୁ ଆରମ୍ଭ କଲେ, "ତୁମେ କହିଲ ଭାଇନା, ଯଦି ଏତିକ ଚାର୍ଜ ଗ୍ରମଣ୍ଡାକୁ ଆମେ ପ୍ରତ୍ୟେକ ମାସରେ ଦେବୁ, ତା'ହେଲେ ବ୍ୟବସାୟରେ କେତେ ଲାଭ କରିବୁ ଯେ, ଏମାନଙ୍କ ଦାବୀକୁ ମିଣ୍ଟ୍ କରିପାରିବୁ ? ଏକଥା କଅଣ କେହି ଜାଣୁନାହାନ୍ତି ! ସବୁ ଜାଣୁଛନ୍ତି । ଲୋକଙ୍କୁ କହିଲା ବେଳକୁ ଗୋଟେ କଥା—ସଭାରେ ଭିତରଆଙ୍କ ହାତରେ ଆଉ ଗୋଟେ କଥା । ସେଇଥିଲାଗି ତ ଆମ୍ଭେମାନେ ଦୁଇନମ୍ବରୀ କାରବାର କରୁଛୁ । ନହେଲେ ହାଜମସ୍ତାନ, କରିମ୍ ଲାଲ,ପଟେଲ୍—ଏମାନେ ସବୁ କୋଟି କୋଟି ଟଙ୍କାର ମାଲିକ ହେଲେ କେମିତି ?

ଏ କଲେକ୍ଟରଙ୍କ ସାହେବ ଯାହା କରିଛନ୍ତି ଠିକ୍ କରିଛନ୍ତି । ମୁଁ ଜିନଷରେ ଭେଜାଲ ମିଶାଇ ବିକି କରୁଥିଲି, ଧରା ପଡ଼ିଲି, ଜେଲ ଗଲି, କିଛି ଦୁଃଖ ନାହିଁ । କିନ୍ତୁ ଏ ଯେଉଁମାନେ ଭଦ୍ରଲୋକର ମୁଖା ପିନ୍ଧି ଆମମାନଙ୍କୁ ଏ କାମ କରିବାକୁ ପରୋକ୍ଷରେ ମତାଉଛନ୍ତି, ସେମାନଙ୍କୁ କିଏ ଜେଲ୍ ଦଉଛି ? ସେ ତ ରକ୍ତ ଖାଇ ଝିଙ୍କଭଳି ଫୁଲୁଛନ୍ତି । ହେଲେ ଏମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କିଏ କରିବ ?"

## ( ୧୯ )

'ଜଳଯୋଗ' ପର୍ବଟା ଶେଷ ହେବା ଉତ୍ତାରୁ, ଇନ୍ଦ୍ର ମଦନଲାଲ ବାବୁଙ୍କଠାରୁ ବିଦାୟୀ ନବା ଭଙ୍ଗିରେ ଉଠି ଠିଆହେଲେ । ତାଙ୍କୁ ଦେଖି ମଦନଲାଲ କହିଲେ "ଭାଇନା, (ଇନ୍ଦ୍ର ଜେଲରେ ଥିଲାବେଳେ ସମସ୍ତେ ତାଙ୍କୁ 'ଭାଇନା' ବୋଲି ଡାକୁଥିଲେ) ମୁଁ ତ ଗୋଦାମ ଘର ଦେଇ ଗଦି ଉପରକୁ ଯିବି । ଚାଲନ୍ତୁ ଆମ ଗୋଦାମ ଘରଆଡେ ଟିକିଏ ବୁଲିଯିବେ । ତାପରେ ଡ୍ରାଇଭର ମୋତେ 'ଗଦି' ପାଖେ ଛାଡ଼ି, ଆପଣଙ୍କୁ ଛାଡ଼ି ଦେବ ।"

ଇନ୍ଦ୍ର ଭାବିଲେ ପ୍ରସ୍ତାବଟା କିଛି ମନ୍ଦ ନୁହେଁ । ସେ ଅଉ ଏତେ ବାଟ ଚାଲିବେ କାହିଁକି, ଏ ମର୍ତ୍ତ୍ୟର ଐରାବତରେ କିଛି ବାଟ ପାର ହୋଇଗଲେ ଭଲ । ତା ଛଡ଼ା ମଦନଲାଲ'ଙ୍କ ଗୋଦାମ ଘର, 'ଗଦି' ଇତ୍ୟାଦି ଦେଖିବାକୁ ସୁବିଧା ମିଳିବ । ଯେତେହେଲେ ସେ ଜଣେ ନାମଯାଦା ବ୍ୟବସାୟୀ । ତାଙ୍କ କଥାରେ ସେ ରାଜି ହେଲେ ।

ଏଇ ସମୟରେ 'ରାମସିଂହ' (ମଦନଲାଲଙ୍କ ଡ୍ରାଇଭର) ଗାଡ଼ିଧରି ଠିଆ ହେଲା । ଦୁଇଜଣ ଯାକ ଗାଡ଼ିରେ ବସିଲେ । କିଛି ସମୟ ପରେ ଗାଡ଼ିଯାଇ ତାଙ୍କ

ଗୋଦାମ ଘର ଫାଟକ ପାଖେ ପହଞ୍ଚି ହର୍ଣ୍ଣ ମାରିଲା । ଗାଡ଼ି ହର୍ଣ୍ଣ ଶୁଣି ଜଣେ ଗୁର୍ଖା ଜଗୁଆଳୀ ବିରାଟ ଲୌହ ଫାଟକ ମଝିରେ ଥିବା ଗ୍ରେଟ 'ଗ୍ରିଲ୍'ରେ ମୁହଁ ଗଳାଇ ଆଗ ଦେଖିଲା, କେଉଁ ବାବୁଙ୍କ କାର ଆସିଛି । ଜାଣିଲା ପରେ ଫାଟକ ଖୋଲିଲା । ଗାଡ଼ି ଫାଟକ ଦେଇ ଗୋଟେ ଗ୍ରେଟ ଅଫିସ ଘର ସାମ୍ନାରେ ଠିଆ ହେଲା ବେଳକୁ ଦୁଇଜଣ 'ମୁନସୀ' ଆସି ନମସ୍କାର କଲେ । ମଦନଲାଲ୍ ବାବୁ ଓହ୍ଲାଇ ଓହ୍ଲାଉ ସବୁ ଠିକ୍ ଅଛି କି ନାହିଁ ପଚାରିଲେ । ଲୋକ ଦୁଇଟି 'ଇନ୍ଦ୍ର'ଙ୍କୁ ଦେଖି ଉତ୍ତର ଦେବା ଭଙ୍ଗିରେ ଠିଆ ହୋଇଥାନ୍ତି, ମାତ୍ର ପାଟିରୁ କଥା ବାହାରୁ ନଥାଏ । ତାଙ୍କ ହାବ ଭାବକୁ ମଦନବାବୁ ବୁଝି ନେଇ କହିଲେ 'ନାଇଁ ନାଇଁ ସେ ଆମ ନିଜ ଲୋକ, କିଛି ଭୟ ନାହିଁ: କୁହ ।' ତାଙ୍କଠାରୁ ଅଭୟବାଣୀ ଶୁଣି ସେମାନେ ଗୋଦାମ ଘରେ ଥିବା 'ମାଲ' ସବୁର ହିସାବ ଦେଲେ । କେତେକ ଗୋଦାମଘର ଖୋଲି ମଦନବାବୁ ନିଜେ ଦେଖିଲେ । ଇନ୍ଦ୍ର ମଧ୍ୟ ତାଙ୍କ ସାଙ୍ଗରେ ଥାନ୍ତି ।

ଇନ୍ଦ୍ର ଦେଖୁଥାନ୍ତି କେତେକ ଘର ଆଗରେ 'ହାଇପୋଥେଟିକେଟେଡ୍ ଟୁ ଅମୁକ ବ୍ୟାଙ୍କ, ସମୁକ ବ୍ୟାଙ୍କ୍' ବଡ ବଡ଼ ଅକ୍ଷରରେ ଲେଖା ହୋଇ ଥାଏ । ମାତ୍ର ଗୋଦାମ ଘର ଭିତର ଖାଲି । ଆଗପଟେ ସିମ୍‌ଟ୍ ଚାଲା—ପଛପଟେ ସୁନ୍ଦର ରାସ୍ତା । କେତେ ଗୋଦାମ ଘର ଖାଲି ଦେଖି ଇନ୍ଦ୍ର ପଚାରିଲେ 'କଅଣ ଲାଲବାବୁ (ମଦନ ବାବୁଙ୍କୁ ସେ ଜେଲରୁ ଲାଲବାବୁ ବୋଲି ଡ଼ାକନ୍ତି) ଆପଣଙ୍କ ଗୋଦାମରେ ମାଲ ପତ୍ର କିଛି ନାହିଁ ? ଆଉ ଆପଣଙ୍କ ମୁନସିତ ବହୁତ 'ମାଲ' ଥିବାର ହିସାବ ଦେଲେ ?'

ତାଙ୍କ କଥା ଶୁଣି ମଦନବାବୁ କହିଲେ, "ଏଇଟା ହେଲା ଆମ ଟ୍ରେଡ଼ ସିକ୍ରେଟ । କିନ୍ତୁ ମୁଁ ଆପଣଙ୍କୁ ବିଶ୍ୱାସ କରେ, ତାଛଡା ମାରୁଓ୍ୱାଡ଼ି ହୋଇ ଅନେକ ଜେଲ ଗଲିଣି ଆଉ ବା ଭୟ କଅଣ ? ଏ ଯେଉଁ ସବୁ ଖାଲି ଗୋଦାମ ଦେଖିଲ, ସରକାରୀ କାଗଜପତ୍ର ଆଉ ବ୍ୟାଙ୍କ କାଗଜରେ ସବୁ 'ଫୁଲ' ଅଛି, ଆମ ଦେନନ୍ଦିନ ଖାତାରେ ସବୁ ଖାଲି । ଯେଉଁ ବ୍ୟାଙ୍କକୁ ବ୍ୟବସାୟ ପାଇଁ ଋଣ ଆଣିବାକୁ ଗଲେ ତ ସେମାନଙ୍କୁ ଆଗତୁରା ଦଶ ପରସେଣ୍ଟ ଦେଲେ ଯାଇ ଲୋନ୍ ସାଙ୍କସନ୍ ହେବ । ଲକ୍ଷେ ଟଙ୍କାରେ ଦଶ ହଜାର ଦବୁ ବ୍ୟାଙ୍କବାଲାଙ୍କୁ । ତାଛଡ଼ା ଆପଣ ଦେଖିଲେ ତ ଅନ୍ୟ ସବୁ ଚଣ୍ଡି ଗୃମଣ୍ଡାଙ୍କୁ । କୁହନ୍ତୁ ଏଥିରେ କିମିତି ବ୍ୟବସାୟ ହେବ ? ତେଣୁ ସେ ବ୍ୟାଙ୍କ ବାଲା, ଯୋଗାଣ ବାଲା ସମସ୍ତଙ୍କ ଜ୍ଞାତସାରରେ ଏ ଗୋଦାମ 'ଫୁଲ୍' ଆଉ 'ଏମ୍ପଟି' । ଆମର ଯାହା 'ମାଲ' ଆସିଲା ସେ ଦୁଇନମ୍ବର ଗୋଦାମକୁ ଆସି ସେଉଠୁ, ସେଉଠୁ ଗଲା । ଆମେ ସେଥିରୁ ଯାହା ପଚାଶ ଷାଠିଏ ପରସେଣ୍ଟ ପାଇଲୁ ଏମାନଙ୍କ ମୁହଁରେ କିଛି ଫୋପାଡ଼ିଲା ପରେ ବି ଆମର ଢେ଼ର ଲାଭ ।

ତାଙ୍କ କଥା ଶୁଣି ଇନ୍ଦ୍ର ପଚାରିଲେ 'ଏ ଗୋଦାମ ଗୁଡ଼ାକୁ କଅଣ କେହି ଉପରବାଲା ଚେକ୍ କରିବାକୁ ଆସନ୍ତିନି' ?

ମଦନ ବାବୁ କହିଲେ ଆସନ୍ତି । ଦେଖିଲେ ବାହାରେ ସିଲମରା ତାଲା । ଦେଖିଲେ ଅଜ ଗଲେ । ଯେଉଁଠି ଦରକାର ପଡ଼େ, ଗୃଡ଼ଳ ବସ୍ତା ଜାଗାରେ କୁଣ୍ଡାବସ୍ତା ରଖି ଗୋଦାମ ଘର ପୂର୍ଣ୍ଣ କରାଯାଏ ।'

ଇନ୍ଦ୍ର କହିଲେ "ବିଚରା ଝିଟିଖିଆ ଲୋକଗୁଡ଼ାକ ତ ଦରଦାମ ବୃଦ୍ଧି ଯୋଗୁ ବହୁତ ହଇରାଣ ହେଉଥିବେ ? ମଝିରେ ସିନା ଆପଣମାନେ ସୁବିଧା ମାରିନେଲେ ?"

ମଦନବାବୁ କହିଲେ "ହଁ, ଆପଣ ଯାହା କହିଲେ ଏଇଟା ନିରାଟ ସତ୍ୟ । କିନ୍ତୁ କଅଣ କରାଯିବ ? ବର୍ତ୍ତମାନ ଯେଉଁ ସିଷ୍ଟମ ଚାଲିଛି ସେ ସିଷ୍ଟମ ନ ଭାଙ୍ଗିବା ପର୍ଯ୍ୟନ୍ତ ସମସ୍ତେ ଏପରି ହେବେ । ତାଛଡ଼ା, ମୁଁ ବି ଭାବୁଛି, ଆମେ ଏତେ ଟଙ୍କା ଗରିବ ଗୁରୁବାଙ୍କୁ ଠକି ରୋଜଗାର କରି ଲାଭ କଅଣ ? କେତେଗୁଡ଼ାଏ ଭୂତ ମଝିରେ ମାରି ଖାଇ 'ସାଧୁ' ବନୁଚନ୍ତି । ଆମେ ତାଙ୍କୁ ଦେଇ 'ଚୋର' ବନୁଛୁ । ତାଛଡା ଆମ ପାଖେ ଧନ ଅଛି, ହେଲେ ମନରେ ଶାନ୍ତି ନାହିଁ କି ରାତିରେ ନିଦ ନାହିଁ । ଆଜି ଇନ୍‌କମ୍‌ଟାକ୍ସ ତ କାଲି ସେଲ୍‌ଟାକ୍ସ, ଯୋଗାଣବାଲା ଆସିଲେଣି ତ ଭିଜିଲାନ୍‌ସ ବାଲା ବୁଲିଗଲେଣି । ବୁଝିଲ ଭାଇନା, ମୁଁ ଭାବୁଛି ଏ ବ୍ୟବସାୟ ଛାଡ଼ି ଦେବି । କାହିଁକି ଆଉ ବଣିମାରି ଝିଣ୍ଟିକା ପୋଷିବି ?"

ଇନ୍ଦ୍ର କହିଲେ "ଗାଁଗଣ୍ଡାର ଲୋକମାନେ ତ ଏଥିଲାଗି ବିଶେଷ ହଇରାଣ ହରକତ ହେଉଥିବେ ?"

ମଦନବାବୁ କହିଲେ "ନିଶ୍ଚୟ; ଏଥିରେ କିଛି ସନ୍ଦେହ ଅଛି ? ମୁଁ ଭାବୁଥିଲି ଆପଣ ମଫସଲରୁ ଆସିଛନ୍ତି, ସେଠାକାର ହାଲଚାଲ ସବୁ ଜାଣିଥିବେ ।"

ଇନ୍ଦ୍ର ଦେଖିଲେ କଥାଟାକୁ ଅନ୍ୟ ବାଟକୁ ନନେଲେ ଚଳିବନି । ସେଇଠୁ ସେ କଥାକୁ ବାଁ'ରେଇ ତାଙ୍କ ଗୋଦାମ ଘରୁ ବାହାରିଲେ ଏବଂ ତାଙ୍କୁ ବାଟରେ ଛାଡ଼ିଦେବା ପାଇଁ କହିଲେ ।

## ( ୨୦ )

ମଦନ ବାବୁଙ୍କ ଗାଡ଼ି ଇନ୍ଦ୍ରଙ୍କୁ ରାସ୍ତାରେ ଓହ୍ଲାଇ ଦେଇ ଗଲା । ରାସ୍ତା ଉପରେ ଠିଆ ହୋଇ ଇନ୍ଦ୍ର ଭାବିଲେ ସହରଟା ବାବୁମାନେ ତ ଏପରି କାମ କରୁଛନ୍ତି, ତେଣେ ମଫସଲ ଭାଇମାନେ କିମିତି ଅଛନ୍ତି ଟିକିଏ ବୁଲି ଆସିଲେ ହୁଅନ୍ତା । ମନରେ ଏ କଥା ବିଚାରି କଲାବେଳକୁ ତାଙ୍କ ପାଖରେ ଗୋଟେ 'ମେଟାଡ଼ର' ଗାଡ଼ି

ଆସି ଠିଆ ହୋଇ 'ନୂଆଳୀ-ନୂଆଳୀ' ବୋଲି ପାଟି କରି 'କଅଣ ଯିବ' ବୋଲି ଡାକିଲା । ଇନ୍ଦ୍ର କିଛି ନବୁଝି ପଶିଗଲେ—ଭାବିଲେ 'ନୂଆଳୀ' ନିଶ୍ଚୟ ଗୋଟେ ମଫସଲ ଅଞ୍ଚଳ ହୋଇଥିବ । 'ମେଟାଡ଼ର' ଗାଡ଼ି ଭିତରେ ସିନା ପଶିଗଲେ, ହେଲେ ବସିବେ କେଉଁଠି ? ପିମ୍ପୁଡ଼ି ପଶିବାକୁ ଜାଗା ନାହିଁ । ସେତେବେଳକୁ କିଛି ସମୟ ସେ ବେକ ଭାଙ୍ଗି ଠିଆ ହେଲେଣି । କେତେଟା ଲୋକ ଦୁଆର ମୁହଁରେ ଝୋଲି ଥାଆନ୍ତି । ଗାଡ଼ି କିନ୍ତୁ ଚାଲିଥାଏ । ଏଇ ସମୟରେ ଗାଡ଼ିର କଣ୍ଡକ୍ଟର ଟୋକାଟି ପେଲି ଠେଲି କରି ତାଙ୍କୁ ପ୍ରାୟ ଜଣଙ୍କ କୋଳ ଉପରେ ବସେଇ ଦେଇଥାଏ । ସେ ବାବୁ ଜଣକ ଯାକଯୁକ ହୋଇ ବସିଥାନ୍ତି । ତାଙ୍କ ପାଖକୁ ସ୍ତ୍ରୀ-ଲୋକ ତିନି ଚାରିଜଣ । ସେମାନେ ମଧ୍ୟ ଏ ପେଲି ଠେଲିରେ ଚପିଚୁପି ହୋଇ ବସିଥାନ୍ତି ।

ଏତିକି ବେଳକୁ ଗାଡ଼ି ମେନ୍‌ରୋଡ଼ ଛାଡ଼ି ନାଲି ରାସ୍ତା ଧରିଲା । ଇନ୍ଦ୍ର ତାଙ୍କ ପାଖ ଲୋକଟିକୁ ପଚାରିଲେ "ନୂଆଳୀ ରାସ୍ତା କଅଣ ଇଆଡ଼େ ?" ପାଖ ଲୋକଟି କହିଲେ "ନାଇଁ ନାଇଁ ଆଗରେ ଚେକ୍ ଗେଟ୍ । ଏ 'ମେଟାଡ଼ର' ଏଇଠୁ ରାସ୍ତା ଭାଙ୍ଗି ପୁଣି ଆଗରେ ଏଇ ରାସ୍ତାରେ ମିଶିବ ।" ଇନ୍ଦ୍ର ପଚାରିଲେ "କାହିଁକି ଆଜ୍ଞା ଚେକ୍ ଗେଟ୍ ବାଟ ଦେଇ ଗଲେ ଅସୁବିଧା କଅଣ ?" ଲୋକଟି କହିଲେ "ମୁଁ ଟ୍ରାନ୍‌ସପୋର୍ଟ ଡିପାର୍ଟମେଣ୍ଟରେ କିରାଣୀ ଚାକିରି କରେ । ଆଜି ଶନିବାର ତ, ଗାଁକୁ ଯାଉଛି । ଏମାନଙ୍କ କାରବାର ମୁଁ ସବୁ ଜାଣେ । କଅଣ କରିବା ଗାଁକୁ ଯେତେବେଳେ ଯିବାକୁ ଦରକାର, ତେଣୁ ବାଧ ହୋଇ ମୁହଁ ନଖୋଲି ଚପିଚୁପି ହୋଇ ଯିବାକୁ ପଡ଼ୁଛି । ଆପଣ ଜାଣନ୍ତି, ଏ ମେଟାଡ଼ର ଗାଡ଼ି ପାସେଞ୍ଜର ନବା ପାଇଁ ପରମିଟ୍ କରିନି କି ସରକାରଙ୍କୁ ଟାକ୍ସ ଦିଅନ୍ତିନି । ଯେଉଁମାନେ ବା କରିଥିବେ ସେମାନେ ଏ ଗାଡ଼ିରେ ସବୁଠୁ ବେଶୀ ସାତ ଜଣ ଲୋକ ନେଇ ପାରିବେ । କିନ୍ତୁ ଦେଖନ୍ତୁ ବିନା ପରମିଟ୍‌ରେ ବାଇଶି ଜଣ ଲୋକ ନେଇ ଯାଉଛି । ଯେ କହିବ ତାଙ୍କୁ ଏମାନେ କହିବେ ଓହ୍ଲାଅ । ସରକାରଙ୍କର ତ ଗାଡ଼ି ନାହିଁ—ତେଣୁ ଯିବାକୁ ତ ପଡ଼ିବ ?"

ତାଙ୍କ କଥା ଶୁଣି ଇନ୍ଦ୍ର କହିଲେ, "ଯଦି ସରକାରଙ୍କ ଗାଡ଼ି ନାହିଁ, ତାହେଲେ ଏମାନଙ୍କୁ ପରମିଟ୍ ଦଉନାହାନ୍ତି କାହିଁକି ? ପରମିଟ୍ ଦେଲେ ସରକାର ଟାକ୍ସ ପାଆନ୍ତେ, ଲୋକମାନେ ବି ଶାନ୍ତିରେ ଯାଆନ୍ତେ, ଆଉ ଏ ଡ୍ରାଇଭରମାନେ ଖଣ୍ଡିଆ ଖାବରା ରାସ୍ତାରେ ଘୂରନ୍ତେନି । ତା'ଛଡ଼ା ଏ ଚେକ୍ ଗେଟ୍‌ରେ ଯେଉଁ ବାବୁମାନେ ଆପଣଙ୍କ ଡିପାର୍ଟମେଣ୍ଟରୁ ଆସି ବସିଛନ୍ତି, ସେମାନେ କଅଣ ଜାଣିପାରୁନାହାଁନ୍ତି ଏ ଗାଡ଼ି ଗୁଡ଼ାକ ଏତେ ସଂଖ୍ୟାରେ ରାସ୍ତା କାଟି ଯାଉଛନ୍ତି ।"

ତାଙ୍କ କଥା ଶୁଣି ପ୍ୟାସେଞ୍ଜର ଜଣକ କହିଲେ, "ସମସ୍ତେ ଜାଣନ୍ତି ଆଜ୍ଞା ।

କିଏ ନଜାଣେ ? ରାଜଧାନୀରୁ ଏ ଗାଡ଼ିମାନ କଟକ, ପୁଣି ମେନ୍ ରାସ୍ତାରେ ଯାତାୟାତ କରୁଛି, କାହା ଆଖିରେ ନପଡ଼ୁଛି ? କମିଶନର ସାହେବ ଦେଖୁଛନ୍ତି, ଟ୍ରାନ୍ସପୋର୍ଟ ମନ୍ତ୍ରୀ ବି ଦେଖୁଛନ୍ତି ! କିଏ କଅଣ କରୁଛି ? ସେ ସବୁ ବଡ଼ ଗମ୍ଭୀରଆ ବ୍ୟାପାର । ତା' ଭିତରେ ଆମ୍ଭପରି ଟ୍ଲୋଟ କାଟିଆ ଲୋକ ମୁଣ୍ଡ ପୂରେଇ ଲାଭ କଅଣ ? ପଇସାକୁ ପଇସା ଦବା, ଦରକାର ବେଳେ ଶଳା ବେଧୁଆ ପଦ ଶୁଣିବା । ଗାଡ଼ି ଭିତରେ ଏମିତି ବସ୍ତାମରା ହେଲାପରି ବସିକରି ଯିବା. ପ୍ରାଣଟା ଯେ କେତେ-ବେଳେ ଏ ପିଣ୍ଡ ଛାଡ଼ି ସ୍ୱର୍ଗକୁ ରାଣ୍ଡି କରି ଚାଲିଯିବ କିଏ କହିବ ?''

ଏଇ ସମୟରେ ଗାଡ଼ି ଦୁଆର ମୁହଁରେ ଠିଆ ହୋଇଥିବା କଣ୍ଡକ୍ଟର ପିଲାଟି 'ଶଳେଇ ଶଳେଇ' କହି ଯାତ୍ରୀମାନଙ୍କୁ ଓହ୍ଲାଇବା ନିମିତ୍ତ ତାଗିଦ୍ କରି-ଦେଲା । ପାଖ ପାସେଞ୍ଜର ଜଣକ କହିଲେ, ''ଆଜ୍ଞା ଆମ ଓହ୍ଲାଇବା ଜାଗା ଆସି-ଗଲା, ଆଉ ଟିକିଏ ଆଗକୁ ଗଲେ ତ ନଆଳୀ ବଜାର ।''

ତାଙ୍କ କଥା ସରିଲା ବେଳକୁ ଗାଡ଼ି ଅଟକି ଯାଇଥାଏ । ସେ ଜଣକ ଓହ୍ଲାଇ ଗଲା ପରେ, ପୁଣି ତିନିଜଣ ଦୁ'ଟା 'ପାନଝଙ୍କା' ଧରି ପଶିଲେ । ସେତେ-ବେଳକୁ ଗୋଟାଏ ଲୋକ ଇନ୍ଦ୍ରଙ୍କ ମୁଣ୍ଡ ଉପରେ ପାନ ଝଙ୍କାରୁ ଅଧେ ଲଦି ଦେଇ-ଥାଏ । ପାନ ଝଙ୍କାରୁ ଥପ୍ ଥପ୍ ପାଣି ପଡ଼ି ତାଙ୍କ ଦେହ ଅଧେ ଓଦା ହୋଇ ଗଲଣି, କିନ୍ତୁ ତାଙ୍କ ଡାକ ପାନବାଲା ପାଖରେ ପହଞ୍ଚି ପାରୁ ନଥାଏ; ଗାଡ଼ି ଧକଡ଼ ଧକଡ଼ ହୋଇ ଚାଲୁଥାଏ । ଏ ତ ନଆଳୀ ମାଧବ ରାସ୍ତା !

## ( ୨୧ )

'ଶଳେଇ' ଠାରୁ ଖଣ୍ଡେଦୂରଯାଇ, ଗାଡ଼ି ଅଟକିଲାରୁ, ସେ ପାନବାଲା ପାନ ଝଙ୍କା ଧରି ଓହ୍ଲେଇଲେ । ଇନ୍ଦ୍ର ସେତେବେଳକୁ ପୂରା ଓଦା ହୋଇ ଯାଇଥାନ୍ତି । —ଭାବିଲେ ଟିକିଏ ଓହ୍ଲାଇ ଅଣ୍ଟା ଆଉ ବେକଟା ସିଧା କରିନେବେ । ଦେହରୁ ପାଣି ସବୁ ପୋଛି ଦେବେ । ଗାଡ଼ିରୁ ଓହ୍ଲାଇ, ରାସ୍ତା କଡ଼ରେ ଠିଆ ହୋଇ ଚୌରିଆଡ଼କୁ ଚାହିଁଲା ବେଳକୁ ତାଙ୍କର ପୂର୍ବ କଥା ସବୁ ମନେ ପଡ଼ିଗଲା । ଇନ୍ଦ୍ର ଭାବିଲେ ଇଏତ ବୋଧେ ସେଇଯାଗା । ସେ ଆଉ ଆଗକୁ ନଯାଇ ସେଇଠି ଓହ୍ଲେଇବେ ବୋଲି କହିଲାରୁ ଗାଡ଼ି ଚାଲିଗଲା ।

ଇନ୍ଦ୍ରଙ୍କର ପୁରୁଣାଦିନ କଥା ମନେ ପଡ଼ିଲା । ସେତେବେଳେ ଅଯୋଧ୍ୟା ଦେଶର ରାଜା ମହାପ୍ରତାପୀ 'ସଗର' । ରାଜ୍ୟ ଜୟ, ଶତ୍ରୁକ୍ଷୟ ପରେ ସଗର ରଜା ଅଶ୍ୱମେଧ ଯଜ୍ଞ କରିବେ ବୋଲି ଗୋଟିଏ ସୁନ୍ଦର ଶ୍ୱେତ ଅଶ୍ୱ ଉପରେ ତାଙ୍କ ପତାକା ରଖି ବୁଲାଉଥାନ୍ତି । ଅଶ୍ୱଟି ମୁଲକ ପରେ ମୁଲକ ଅତିକ୍ରମ କରି ଚାଲିଥାଏ । ତାକୁ ଅନୁସରଣ କରି ଚାଲିଥାନ୍ତି ରାଜପୁତ୍ର ଏବଂ ସୈନ୍ୟବାହିନୀ ।

ଧନେ ରାଜପୁତ୍ର ଆଉ ସୈନ୍ୟବାହିନୀ ବିଶ୍ରାମ କରୁଥିବା ସମୟରେ ସେ ନଜେ (ଇନ୍ଦ୍ର) ରାକ୍ଷସ ରୂପ ଧାରଣ କରି, ରାଜଙ୍କ ଅଶ୍ୱକୁ ଚୋରାଇ ନେଇ ପାତାଳପୁରୀ କପିଳମୁନିଙ୍କ ଆଶ୍ରମରେ ବାନ୍ଧିଦେଲେ । ପରେ ରାଜପୁତ୍ରମାନେ ଅଶ୍ୱକୁ ଖୋଜି ଖୋଜି କପିଳମୁନିଙ୍କ ଆଶ୍ରମରେ ବନ୍ଧା ହୋଇଥିବାର ଦେଖିଲେ । ମୁନି ସେତେବେଳକୁ ତପସ୍ୟାରତ ଥାନ୍ତି । ଅଶ୍ୱକୁ ସେ ଚୋରାଇ ଆଣିଥିବା ଭାବି ରାଜପୁତ୍ରମାନେ ମୁନିଙ୍କୁ ଅଯଥାରେ ଅପମାନ ଦେଲେ । ସେମାନଙ୍କର ଗର୍ବ ଏବଂ ଅପମାନକୁ ସହି ନ ପାରି କପିଳମୁନି ସେମାନଙ୍କୁ ଅଭିଶାପ ଦେଇ ଭସ୍ମ କରିଥିଲେ ।

ସେଇ ପୁରାଣ ପ୍ରସିଦ୍ଧ କପିଳମୁନିଙ୍କର ସେକାଳରେ ଭାରତବର୍ଷ ଭିତରେ ବହୁଜାଗାରେ ଆଶ୍ରମ ଥିଲା । ତା ମଧ୍ୟରୁ ପୁଣ୍ୟତୋୟା ପ୍ରାଚୀ ନଦୀକୂଳରେ କପିଳମୁନିଙ୍କ ଆଶ୍ରମ ପ୍ରସିଦ୍ଧ । ଇନ୍ଦ୍ର ମନେ ମନେ ଭାବିଲେ ଲୋକଲୋଚନରେ ସଗର ରାଜାଙ୍କ ପୁଅମାନେ ସିନା ଦୋଷୀ ହୋଇ ମୁନିଙ୍କ ଅଭିଶାପରେ ଭସ୍ମୀଭୂତ ହେଲେ, କିନ୍ତୁ ସେ ତ ଏଥିପାଇଁ ପୂର୍ଣ୍ଣମାତ୍ରାରେ ଦୋଷୀ—ଏକଥା ପୁରାଣରେ ଆଉ ଲୋକକଥାରେ ବର୍ଣ୍ଣିତ ହୋଇନଥିଲେ ମଧ୍ୟ ପଛରେ ସେ ଯାଇ କପିଳମୁନିଙ୍କ ପାଖେ ସବୁ ବର୍ଣ୍ଣନା କରି ଦୋଷ ସ୍ୱୀକାର କରିଥିଲେ । ତାଙ୍କର ଷଡ଼ଯନ୍ତ୍ର ଯୋଗୁ ସଗର ରାଜା ପୁଅମାନଙ୍କ ଭସ୍ମୀଭୂତ-ଜନିତ ପାପର ପ୍ରାୟଶ୍ଚିତ ସ୍ୱରୂପ ମୁନି ପ୍ରାଚୀନଦୀ କୂଳରେ ଥିବା ଦ୍ୱାଦଶ ଶମ୍ଭୁ, ବିଭିନ୍ନ ମୁନିଙ୍କ ଆଶ୍ରମ, ତୀର୍ଥସ୍ଥାନ ଦର୍ଶନ କରି ସେ ପାପରୁ ମୁକ୍ତ ହେବାକୁ ଉପଦେଶ ଦେଇଥିଲେ । ତାଙ୍କର ଆଦେଶ ଅନୁଯାୟୀ ଇନ୍ଦ୍ର ପୁଣ୍ୟତୋୟା ପ୍ରାଚୀନଦୀ କୂଳରେ କିଛିଦିନ ଅବସ୍ଥାନ କରି ସେ ପାପରୁ ମୁକ୍ତିଲାଭ କରିଥିଲେ ।

ସେ ସମସ୍ତ ପୂର୍ବକଥା ମନେ ପଡ଼ିବାରୁ, ଇନ୍ଦ୍ର ବାକି କାମକୁ ପଛରେ ପକେଇ, ପ୍ରାଚୀନଦୀ ତଟରେ ଥିବା ଦେବ ମନ୍ଦିର, ତୀର୍ଥସ୍ଥାନ, ଆଶ୍ରମମାନ କିପରି ଅଛି ଆଗେ ଦେଖିବାକୁ ମନ ବଳେଇ କପିଳମୁନିଙ୍କ ଆଶ୍ରମଆଡ଼େ ଚାଲିଲେ । ଏବେ ସେ ଜାଗାକୁ ଯିବାକୁ ସେ ବାଟ ପାଇଲେନି । ପାରିପାର୍ଶ୍ୱିକ ଅବସ୍ଥା ପୁରା ବଦଳି ଯାଇଛି । ପ୍ରାଚୀ ନଦୀକୁ ଖୋଜି ଖୋଜି କିଛିବାଟ ଗଲାପରେ ଦେଖିଲେ ନଦୀ ନୁହଁ ତ ଗୋଟେ ନାଳ । ତାଙ୍କର ମନେପଡ଼ିଲା ଏଇ କଅଣ ସେଇ ପାଚୀନଦୀ—ଯେଉଁ ନଦୀ କୂଳର ସଭ୍ୟତା ସାରା ଭାରତ ଭୂଖଣ୍ଡରେ ପ୍ରସିଦ୍ଧି ଲାଭ କରିଥିଲା ? ଯେଉଁ ନଦୀ କୂଳରେ ବାସ କରିବାକୁ ମହାନ ମହାନ ମୁନିଋଷି ଆସି ଆଶ୍ରମ ଗଠନ କରିଥିଲେ ? ଯାହାର ପବିତ୍ର ପାଣି ଗଙ୍ଗାନଦୀର ପବିତ୍ରତା ସଙ୍ଗେ ସମାନ ? ଭଲଭାବେ ବୁଝିବା ପାଇଁ ନାଳ କୂଳରେ (ପ୍ରାଚୀନଦୀ) ଝାଡ଼ା ଫେରୁଥିବା ଲୋକଙ୍କୁ ପଚାରିଲେ —ସେମାନଙ୍କଠାରୁ ବୁଝିଲେ ଯେ ପୁରୁଣା ପ୍ରାଚୀନଦୀ ପୋତି ହୋଇ ଗଲାଣି । ବର୍ତ୍ତମାନ ତାକୁ ଗୋଟେ ସଫେଇ ନୀଯାବରେ ଗ୍ରହଣ କରାଯାଇଛି ।

ଇନ୍ଦ୍ର ଭାବିଲେ ଏ ଦେଶର ବାସିନ୍ଦାମାନେ କଅଣ ଓଲୁ ନା ବୁଡ଼୍‌ବକ୍ ? ହେଲାଏବେ କାଳ ପରିବର୍ତ୍ତନ ସଙ୍ଗେ ମହାନ୍ ନଦୀ ଯଦି ସଙ୍କଟରେ ପରିଣତ ହେଲା, ଏତେବଡ଼ ପୁରୁଣା ସଭ୍ୟତା ବିଷୟରେ ଜାଣିବା ପାଇଁ ଏମାନଙ୍କର କଅଣ ଇଚ୍ଛା ନାହିଁ ? ଅନ୍ୟାନ୍ୟ ଦେଶରେ କିଛି ଇତିହାସ ନଥାଇ ସେମାନେ ଖୋଳା-ଖୋଳି କରି ଇତିହାସ ସୃଷ୍ଟି କରୁଛନ୍ତି । ଏଠି ଇତିହାସ ଥାଇ ଏମାନେ ଇତିହାସକୁ ବାହାର କରିବେ କଅଣ ପୋତି ଦେଉଛନ୍ତି !

ମନେ ମନେ ଏଇକଥା ଭାବି ସେ କପିଳମୁନିଙ୍କ ଆଶ୍ରମଆଡେ ଚାଲିଲେ ।

ପ୍ରାୟ ବାଟ ଦେଢ଼କିଲୋମିଟର ଚାଲିଲା ପରେ, ଇନ୍ଦ୍ରଯାଇ 'କପିଳମୁନିଙ୍କ ଆଶ୍ରମ' ପାଖେ ପହଞ୍ଚିଲେ । ଆଶ୍ରମ ନାହିଁ କି ଗଛଟିଏ ବି ନାହିଁ । ଖାଲି ଗୋଟିଏ ଦରଭଙ୍ଗା ମନ୍ଦିର । ଚାଲି ଚାଲି ମନ୍ଦିର ପାଖକୁ ଗଲେ । ସେ ଜାଣିଥିଲେ ଆଗରୁ ଏଠାରେ କପିଳମୁନି ଶିବଙ୍କୁ ପୂଜା କରୁଥିଲେ । ଆଶ୍ରମ ଭିତରେ ଶିବଙ୍କ ଆରାଧନା ପୀଠଥିଲା । ପରେ ବୋଧେ କେଉଁ ଭକ୍ତ ଖ୍ରୀଷ୍ଟାବ୍ଦ ଅଷ୍ଟମ, ନବମ ଶତାବ୍ଦୀରେ ଏହି ମନ୍ଦିର ତିଆରି କରି କପିଳଙ୍କ ନାମାନୁସାରେ ଏହାକୁ କପିଳେଶ୍ୱର ନାମରେ ନାମିତ କରିଛି ।

ମନ୍ଦିର ପାଖକୁ ଗଲାବେଳକୁ ଦେଖିଲେ ମନ୍ଦିର ଦେହରୁ ପଥର ଖସି-ଚାରିଆଡେ ପଡ଼ିଛି । ମନ୍ଦିରରେ କବାଟ ନାହିଁ କି ଚାରିପଟେ ପାଚେରି ନାହିଁ । ଗୋରୁ ଗାଈ, ଛେଳିମେଣ୍ଢାମାନଙ୍କ ଅବାଧ ଗତି । ଅବଶ୍ୟ ମହାଦେବଙ୍କ ବାହନ ସେତେବେଳକୁ ମନ୍ଦିର ପ୍ରାଙ୍ଗଣରେ ଘୁମେଇ ପାକୁଳି କରୁଥାନ୍ତି । ପାଖରେ ଦି' ଚାରିଟା ବୁଢ଼ା ତାଳଗଛ । ତାଳଗଛ ବାହୁଙ୍ଗା ଉପରେ ଚାରି ପାଞ୍ଚଟା ଶାଗୁଣା । ମନ୍ଦିର ପ୍ରାଙ୍ଗଣକୁ ପହଞ୍ଚିଲା ବେଳକୁ ତାଙ୍କ ଆଣ୍ଠୁ ପର୍ଯ୍ୟନ୍ତ କାଦୁଅ ।

ମନ୍ଦିର ଦୁଆର ମୁହଁରେ ଠିଆହୋଇ 'ଇନ୍ଦ୍ର' 'କପିଳେଶ୍ୱରଙ୍କୁ' ଡ଼ାକିଲେ । ତାଙ୍କ ସ୍ୱର୍ଗୀୟ ଡ଼ାକଶୁଣି ପ୍ରଭୁ ବାହାରିଲେ । ଦେହଯାକ କାଦୁଅ, ପଙ୍କ, ମୁହଁଟା ରୁକ୍ଷ, ପେଟ ଲଗିଯାଉଥାଏ । ତାଙ୍କର ଏ ଅବସ୍ଥା ଦେଖି ଇନ୍ଦ୍ର ପଚାରିଲେ 'ପ୍ରଭୁ ଏ କି ହାଲ୍ ଚାଲ୍ ? ମନେଥିବ, ମୁଁ ବହୁଦିନ ତଳେ ଆପଣଙ୍କୁ ଦର୍ଶନ କରିବାକୁ ଆସିଥିଲି, ସେତେବେଳର ଚେହେରା, ଆଉ ଆଜି, ମୁଁ ତ ଚିହ୍ନି ପାରୁନି !,

ଟିକିଏ ପାଖକୁ ଆସି କପିଳେଶ୍ୱର ଚିହ୍ନିଲେ—'କିଓ ଇନ୍ଦ୍ର କି' ? ଏ ଅଦିନରେ ତୁମେ କୁଆଡ଼େ ? ସଂକ୍ଷିପ୍ତରେ ଇନ୍ଦ୍ର ତାଙ୍କ ଗସ୍ତ ଖବରଟି କହିଲା ପରେ ତାଙ୍କର ଏ ଅବସ୍ଥା କଥା ପଚାରିଲେ ।

ପ୍ରଭୁ କହିଲେ, 'ବୁଝିଲ ଇନ୍ଦ୍ର, ପୁଣ୍ୟତୋୟା ପ୍ରାଚୀନଦୀ ପୂର୍ବପଟରେ କପିଳ ମୁନି ଆଶ୍ରମ ସ୍ଥାପନ କରିଥିଲେ । ଘନ ଜଙ୍ଗଲ ପୂର୍ଣ୍ଣ, କି ସୁନ୍ଦର ଏ ଜାଗା

ଥିଲା । ପାଖରେ ଜନବସତି, ଫଳ ଫୁଲରେ ସେତେବେଳେ ପୂରି ଉଠୁଥିଲା । ମୋର ସେତେବେଳେ ମନ୍ଦିର ନଥିଲା, ମୁଁ ଭଲରେ ଥିଲି । ପ୍ରାୟ ୧୬ଶହ ବର୍ଷ ହେଲା ମନ୍ଦିର କରି ମୋତେ ମନ୍ଦିର ଭିତରେ ରଖିଲେ । ଦେଖିଲ, ସେଇଦିନୁ ଏ ମନ୍ଦିରରେ କିଏ ହାତ ଦେଲେଣି ? ମନ୍ଦିର ଉପରେ ବରଗଛ । ମୁଁ ପାଣିରେ ବୁଡ଼ିଛି । ସେ ପାଣି ବି କେବେ ସଫା ହୁଏନି । ମନ୍ଦିର ପାଇଁ ଯାହା ଜମିବାଡ଼ି ଥିଲା, ତାକୁ ତ ସେବକ-ମାନେ ମାରି ଖାଇଲେ । ମୋତେ ବି ତିନି ଦିନରେ ଗଣ୍ଡେ ଭୋଗ ମିଳୁନି । ଏମିତି, କିଏ କମିତି ମାନସିକ କରି ଆସିଲେ ଖାଇବାକୁ ପାଉଛି । ପୁରୁଣା ପାଚେଶି ଭାଙ୍ଗିଲାରୁ, ଦିନରାତି ସମସ୍ତେ ମଳମୂତ୍ର ତ୍ୟାଗ କରୁଛନ୍ତି । ପ୍ରଥମେ ମୋ ବାହନ (ସର୍ପ) ମାନେ ଯାଇ ତାଙ୍କୁ ପଇଡ଼ାଉ ଥିଲେ । ମାତ୍ର କିଛିଦିନ ପରେ ସେମାନେ ବି ତାଙ୍କ ଠେଙ୍ଗାରେ ଯମାଳୟ ଗଲେ । ଭାବିଲି ଆଉ କାହିଁକି କଳି କରିବି ? ଯାହା ହେଉ ଆସିଛି, ଦେଖିଯାଅ ଆମ ଅବସ୍ଥା । ଦେଖନ୍ତୁ, ସେପଟେ ମୋ ନାଟ ମନ୍ଦିର, ଭୋଗ ମଣ୍ଡପ ସବୁ ଭାଙ୍ଗିପଡ଼ିଲେଣି । ଏ କି ଯୁଗହେଲା ବାବୁ, ଏ ଯୁଗର ଲୋକ-ମାନେ କିଛି ବୁଝି ପାରୁ ନାହାନ୍ତି । ଏସବୁ ମନ୍ଦିର ସେମାନଙ୍କର ସଂସ୍କୃତି, ତାଙ୍କ ପୂର୍ବ ପୁରୁଷମାନଙ୍କର କଳା । ନହେଲା ନାହିଁ ଆମକୁ ଗଣ୍ଡେ ଭୋଗ ନ ଦିଅନ୍ତୁ, ହେଲେ ସେମାନଙ୍କ ପୂର୍ବପୁରୁଷ ତୋଳିଥିବା କଳାଭାସ୍କର୍ଯ୍ୟକୁ ରକ୍ଷା କରନ୍ତୁ । ଦେଖିଲେ ସେପଟେ ବାହାରେ 'ଷଡ଼ଭୁଜା ଗୃମଣ୍ଡା' ଖିରିଖାଇ ପଡ଼ିଛନ୍ତି । ଭାଗ୍ୟକୁ ଚୋର-ମାନଙ୍କ ଆଖି ପଡ଼ିନି, ନହେଲେ ସେ ଏତେବେଳକୁ ଆମେରିକା କି ଇଉରୋପ ଦେଶର କେଉଁ ମିଉଜିୟମରେ ବନ୍ଦୀ ହୋଇଥାନ୍ତେ । ଆଗେ ରାଜା ମହାରାଜା, ଜମିଦାରମାନେ ଥିଲେ । ସେମାନେ କଳା-ସ୍ଥାପତ୍ୟ କଥା ବୁଝୁଥିଲେ । ଆଜିକାଲି ତ ଲୋକମାନେ ତାଙ୍କ ସରକାର କଲେ । ଏବେ ସେମାନେ ଏକଥା ବୁଝୁ ନାହାନ୍ତି କାହିଁକି ? ସେତେବେଳେ ଏ ଜାଗା ଦେଖିଥିଲ । ଏବେ ଦେଖୁଛ । ଆଉ କିଛି ବର୍ଷ ପରେ ଦେଖିବ ଏଠି କିଛି ନଥିବ । ଯାଅ, ତୁମ ଟୁର୍ ଡାଇରିରେ ଏସବୁ ଲେଖିକରି ସମସ୍ତଙ୍କ ଆଖିଖୋଲ ।

ଇନ୍ଦ୍ର ମନଦୁଃଖରେ କହିଲେ, 'ହଉ ଯାଉଛି । ଆପଣଙ୍କ ଆଜ୍ଞା କଷ୍ଟସ୍ୟ ପାଳନ କରିବି ।'' କପିଳେଶ୍ୱର ତାଙ୍କୁ ବିଦାୟ ଦେବା ପୂର୍ବରୁ କହିଲେ ''ଆସିଛ ସେତେବେଳେ ଦ୍ୱାଦଶ ଶମ୍ଭୁ ଦର୍ଶନ କରିଯାଅ ।'' ଇନ୍ଦ୍ର ସମ୍ମତି ଦେଇ ତାଙ୍କଠାରୁ ବିଦାୟ ନେଲେ ।

କପିଳମୁନି ଆଶ୍ରମ ଦେଖି କପିଳେଶ୍ୱରଙ୍କ ଠାରୁ ବିଦାୟ ନେଇ ଇନ୍ଦ୍ର ନଦୀ ବନ୍ଧ ରାସ୍ତା ଧରିଲେ । ବନ୍ଧରେ ଗୋଟେ କିଲୋମିଟର ଗଲା ପରେ ପଡ଼ିଲା ତ୍ରିବେଣୀ ଘାଟ । ପ୍ରାଚୀ, ମଣିକର୍ଣ୍ଣିକା' ଆଉ ସ୍ୱରସ୍ୱତୀ ନଦୀ ସଙ୍ଗମ ସ୍ଥଳ ତ୍ରିବେଣୀ ଘାଟ'

ନାମରେ ଯୁଗ ଯୁଗ ଧରି ପୂଜାପାଉ ଆସୁଛି । ପ୍ରତ୍ୟେକ ବର୍ଷ ମାଘମାସ ଅମାବାସ୍ୟା ପ୍ରତ୍ୟୁଷରୁ ଏଠାରେ ହଜାର ହଜାର ଲୋକ ବୁଡ଼ ପକାଇ ଲୋକନାଥ ବାଲେଶ୍ୱର ମହାଦେବଙ୍କ ଦର୍ଶନ କରନ୍ତି । କଥିତ ଅଛି, ରାମଚନ୍ଦ୍ର ତାଙ୍କର ବନବାସ ସମୟରେ ପ୍ରାଚୀ ନଦୀତଟରେ ଥିବା ଦେବଦେବୀ ମନ୍ଦିର, ଆଶ୍ରମ ଦର୍ଶନ କରିଥିଲେ ଏବଂ ତ୍ରିବେଣୀ ଘାଟରେ ମାଘ ଅମାବାସ୍ୟା ଦିନ ବୁଡ଼ ପକାଇ ଅନ୍ତରବେଦୀଠାରେ ମହାଦେବଙ୍କ ଦର୍ଶନ କରିଥିଲେ । ପ୍ରସିଦ୍ଧ କବି ଜୟଦେବ କେନ୍ଦୁଲି ଗ୍ରାମରୁ (ଏଠାରୁ ପ୍ରାୟ ପାଞ୍ଚ କିଲୋମିଟର ହେବ) ଆସି ଏହି ଅମାବାସ୍ୟା ତିଥିରେ ସ୍ନାନ କରିଥିଲେ । ଏହି ସ୍ଥାନର ମାହାତ୍ମ୍ୟ ପ୍ରାଚୀ ପୁରାଣରେ ବିଶେଷ ଭାବେ ବର୍ଣ୍ଣିତ । ଇନ୍ଦ୍ର ଏ ସବୁ କଥା ଜାଣନ୍ତି । କିନ୍ତୁ ଏବେ ସେ କଅଣ ଦେଖୁଛନ୍ତି ? ଏଇ କେତେଦିନ ପର୍ଯ୍ୟନ୍ତ ଲୋକମାନେ ପ୍ରାଚୀ ଆଉ ମଣିକର୍ଣ୍ଣିକା ନଦୀକୁ ଦେଖୁଥିଲେ, ସରସ୍ୱତୀ ବହୁଦିନରୁ ଅନ୍ତର୍ଦ୍ଧାନ ହୋଇଥିଲେ । ଏବେ ମଣିକର୍ଣ୍ଣିକା ନଦୀ ଗଲେଣି, ପ୍ରାଚୀ ନଦୀ ଯିବା ଉପରେ । ଅନ୍ତରବେଦୀ ମଠର ଅବସ୍ଥା ନକହିଲେ ଭଲ । ସବୁ ମଠର ଅବସ୍ଥା ଯାହା ଏ ମଠର ଅବସ୍ଥା ସେଇଆ ।

ଇନ୍ଦ୍ର ମଠ ବୁଲି ବେଲେଶ୍ୱରଙ୍କ ମନ୍ଦିର ଦେଖିବାକୁ ଗଲେ । କେତେ-କାଳର ପୁରୁଣା ମନ୍ଦିର । ଏବେ ରାସ୍ତା ମନ୍ଦିର ପାଖ ଦେଇ ଗଲାଣି, କିନ୍ତୁ ମନ୍ଦିର ସେମିତି ମେଲା ପଡ଼ିଛି । କେତେବର୍ଷ ତଳେ ଏଠାରୁ ଶିବଙ୍କର ପିତଳ ନାଗ ମୂର୍ତ୍ତି-ମାନ ଚୋରି ଯାଇଥିଲା । ବାକି ବହୁ ବର୍ଷର ପୁରୁଣା ପଥର ମୂର୍ତ୍ତିମାନ ମେଲରେ ପଡ଼ିଛି । ଚତୁର୍ମୁଖ ବ୍ରହ୍ମା, ବରାହ ବିଷ୍ଣୁଙ୍କ ମୂର୍ତ୍ତି ଖ୍ରୀଷ୍ଟାବ୍ଦ ନବମ, ଦଶମ ଶତାବ୍ଦୀର ହେବ । ଇନ୍ଦ୍ର ଦେଖିଲେ, ଏହି ମନ୍ଦିର ଆଉ ଏ ଘାଟ ବହୁ ଯୁଗରୁ ପୁରାଣ ପ୍ରସିଦ୍ଧ ହୋଇଥିଲେ ମଧ୍ୟ ରକ୍ଷଣାବେକ୍ଷଣ ଅଭାବରୁ ଜୀର୍ଣ୍ଣ ମନ୍ଦିରରେ ପରିଣତ ହେବାକୁ ବସିଲାଣି । ବାହାରୁ ବାହାରୁ ବେଲେଶ୍ୱରଙ୍କୁ ଗୋଟିଏ ମୁଣ୍ଡିଆମାରି ନୂଆଳୀ ଅଭିମୁଖେ ଯାତ୍ରା କଲେ ।

ଏହି ଅଞ୍ଚଳଟି ବାଲିପାଟଣା ଥାନାର ବନମାଳୀପୁର ଅଞ୍ଚଳରେ ଯାଏ । ବନମାଳୀପୁର ପୁରୀ ଜିଲ୍ଲାର ଗୋଟିଏ ବଡ଼ ବ୍ୟବସାୟ କେନ୍ଦ୍ର । ଜନ-ବହୁଳ ଅଞ୍ଚଳ ମଧ୍ୟ । କିନ୍ତୁ ଯିବା ଆସିବା ପାଇଁ କିଛି ସୁବିଧା ନାହିଁ ।

ବେଲେଶ୍ୱରଙ୍କ ଠାରୁ ବାହାରି ଇନ୍ଦ୍ର ଅଣ୍ଟେ ପାଣିରେ ପଶି ସନ୍ତେଇ ନଦୀ ପାରି ହୋଇ ଆରପଟ ବନ୍ଧରେ ପହଞ୍ଚିଲେ । ବହୁ ବର୍ଷଧରି ଏଠାରେ ଗୋଟିଏ ଛୋଟ ବ୍ରିଜ୍ ହେବାର ପ୍ରସ୍ତାବ ଥିଲେ ମଧ୍ୟ ଏ ଅଞ୍ଚଳରେ ଟାଣୁଆ ଲୋକପ୍ରତିନିଧି ନଥିବା ହେତୁ ତାହା କାର୍ଯ୍ୟକାରୀ ହୋଇ ପାରୁନାହିଁ । ଇନ୍ଦ୍ର ପାଣିରେ ପଶି ପାରି

ହେଲବେଳେ ପାଖ ଲୋକମାନଙ୍କ ଠାରୁ ଏ ସବୁ କଥା ଶୁଣିଲେ । ବାଟରେ ଗଲା-ବେଳେ ଦ୍ୱାଦଶଭୁଜା ଠାକୁରାଣୀଙ୍କୁ ମଧ୍ୟ ଦର୍ଶନ କଲେ ।

ନିଆଳୀରେ ପହଞ୍ଚୁ ପହଞ୍ଚୁ ଦିନ ଚାରିଟା । ଭାବିଲେ ଆଗ ଶୋଭନେଶ୍ୱର ମନ୍ଦିର ଦେଖିଦେଇ ଯିବେ । ନିଆଳୀ-ମାଧବ ରାସ୍ତାରୁ ବଙ୍ଗାଳୀ ସାହି ବାଟ ଦେଇ ମନ୍ଦିର ପାଖେ ପହଞ୍ଚିଲା ବେଳକୁ ତାଙ୍କୁ ନାକେଦମ୍ । ଏ ମନ୍ଦିର ୧୦୭୦-୧୧୯୦ ମଧ୍ୟରେ ତିଆରି ହୋଇଥିଲେ ମଧ୍ୟ ଏ ମନ୍ଦିର ପାଖକୁ ଗୋଟେ ଭଲ ବାଟ ଏ ପର୍ଯ୍ୟନ୍ତ ତିଆରି ହୋଇ ପାରିନି । ମନ୍ଦିର ବେଢ଼ାରେ ଥିବା ନାଟ୍ୟ-ମନ୍ଦିର, ଭୋଗ ମଣ୍ଡପ ସବୁ ଭାଙ୍ଗି ତୁଟି ଗଲେଣି । ଏହି ମନ୍ଦିରଟି କୋଣାର୍କ ମନ୍ଦିର ପରି 'ରେଖା ଆଉ ସପ୍ତରଥ' ଶୈଳୀରେ ତିଆରି । ଏଠାରେ ଗୋଟିଏ ଶିଳାଲିପି ମଧ୍ୟ ଅଛି । ମନ୍ଦିରର ଦାୟିତ୍ୱ ଏଇ କେତେବର୍ଷ ହେଲା ଭାରତ ସରକାରଙ୍କର ମନ୍ଦିର ରକ୍ଷଣାବେକ୍ଷଣ ବିଭାଗ ନେଇଛି । କିନ୍ତୁ କଅଣ ହେବ ! ମନ୍ଦିର ଚାରିପଟେ ଅନାବନା ଜଙ୍ଗଲ ପଡ଼ିଛି । ମନ୍ଦିରକୁ ରାସ୍ତା ମୋଟେ ନାହିଁ । ମନ୍ଦିର ମରାମତି କିମ୍ବା ଏହା ଚାରି ପାଖର ଉନ୍ନତିକଳ୍ପେ କିଛି ଯୋଜନା ନାହିଁ ।

ମନେ ମନେ ଦୁଃଖ କରି ଇନ୍ଦ୍ର ଦେଉଳ ବେଢା ଦେଇ ମନ୍ଦିର ଭିତରକୁ ପଶିଲେ । ଶୋଭନେଶ୍ୱର, ଇନ୍ଦ୍ରଙ୍କ ଆଗମନ କଥା ଆଗରୁ ଜାଣିପାରିଥାନ୍ତି । ଇନ୍ଦ୍ରଙ୍କୁ ଦେଖୁ ଦେଖୁ ସ୍ୱାଗତ ଜଣାଇ ଭିତରକୁ ନେଇଗଲେ । ଇନ୍ଦ୍ର ଭାବିଲେ ରାତିଟା ଆଉ କୁଆଡ଼େ ନ ଯାଇ ଏଇଠି କଟାଇ ଦେବେ ।

ସନ୍ଧ୍ୟା ହେବା ପରେ ମନ୍ଦିର ବେଢ଼ା ଶୂନ୍‌ଶାନ୍ ହୋଇଗଲା । 'ଶୋଭନେ-ଶ୍ୱର' ମନ୍ଦିର ବେଢ଼ାକୁ ଆସି ଇନ୍ଦ୍ରଙ୍କ ସହିତ କଥା ଆରମ୍ଭ କଲେ । ଇନ୍ଦ୍ରଙ୍କ ଦ୍ୱାଦଶ ଶମ୍ଭୁ ମଠ, ଆଶ୍ରମ ଏବଂ ବିଭିନ୍ନ ତୀର୍ଥସ୍ଥାନ ବୁଲି ଦେଖିବାର ଅଭିଳାଷ ଶୁଣି ସେ କହିଲେ ଏ ସମସ୍ତ ସ୍ଥାନମାନଙ୍କୁ ଆଉ ଯିବା ଦରକାର ନାହିଁ । କାଳକ୍ରମେ ସେ ସ୍ଥାନମାନଙ୍କରେ ଏପରି ପରିବର୍ତ୍ତନ ଘଟିଲାଣି ଯେ, ସେ ସମସ୍ତ ପୁରାଣ ପ୍ରସିଦ୍ଧ ଏବଂ ଐତିହାସିକ ସ୍ଥାନମାନଙ୍କୁ ଏବେ ଖୋଜି ବାହାର କରିବା କଷ୍ଟକର ।

ଇନ୍ଦ୍ରଙ୍କ ପ୍ରବଳ ଆଗ୍ରହ ଦେଖି ଶୋଭନେଶ୍ୱର କହିଲେ, 'ତୁମେ ତ ନିଜ ଆଖିରେ କପିଳମୁନି ଆଶ୍ରମ, ବେଲେଶ୍ୱର, ଅନ୍ତରବେଦୀ ଆଉ ଏଠାରେ ମୋ ଅବସ୍ଥା ଦେଖୁଛ । ଝୋଲି ଗ୍ରାମରେ ରାମେଶ୍ୱର, ପିତାପଡାର 'ଅଟେଶ୍ୱର', ତାଙ୍କ ପାଖେ 'ଅମରେଶ୍ୱର' ଆଉ ନିଆରଣର 'ଗ୍ରାମେଶ୍ୱରଙ୍କ ଅବସ୍ଥା ମୋଠାରୁ ବଳି ଖରାପ । ମନ୍ଦିରମାନ ଜରାଜୀର୍ଣ୍ଣ ଅବସ୍ଥାରେ ପହଞ୍ଚିଲାଣି, ଦେବତାମାନେ ପୂଜା ପାଉନାହାନ୍ତି କି ଭୋଗ ଗଣ୍ଡେ ଠିକ୍ ସମୟରେ ଦିଆଯାଉ ନାହିଁ । ମନ୍ଦିର ରହିଲେ ସିନା କଳା,

ସ୍ଥାପତ୍ୟ ଆଉ ସଂସ୍କୃତି ରହିବ, ମନ୍ଦିର ଭାଙ୍ଗିଲେ ସେସବୁ ଆସିବ କୁଆଡୁ ? ଗ୍ରାମେଶ୍ୱରଙ୍କ ପରେ 'ସୋମେଶ୍ୱର', 'ସିଦ୍ଧେଶ୍ୱର', ନାଗିକେଶ୍ୱର ଗାଁର 'ନୃତ୍ୟେଶ୍ୱର ଆଉ ବଙ୍ଗୋପସାଗର କୂଳରେ ମୁକ୍ତେଶ୍ୱର ମନ୍ଦିରର ଅବସ୍ଥା ମଧ୍ୟ ସେଇପରି ।'

ମନ୍ଦିର ପରେ ତୀର୍ଥସ୍ଥାନମାନଙ୍କ ସତ୍ତା ଆସ୍ତେ ଆସ୍ତେ ଲିଭିବାକୁ ବସିଲାଣି । କେତେକ ବି ଲିଭିଗଲେଣି ।

ଚହଣ୍ଟା ଗ୍ରାମର 'ଗୋ-ତୀର୍ଥ' । ଦିନେ 'ଗଙ୍ଗାମାତା' ତାଙ୍କର ପାପମୋଚନ ଲାଗି ପ୍ରାଚୀ-ଲଳିତା ନଦୀର 'ସଙ୍ଗମସ୍ଥଳ' ଏଇ 'ଗୋ-ତୀର୍ଥ'ରେ ସ୍ନାନ କରି ପାପ-ମୁକ୍ତ ହୋଇଥିଲେ । ଏବେ ବି ସେଠାରେ ଭଗବାନ ବିଷ୍ଣୁ 'ଲଳିତା-ମାଧବ' ରୂପରେ ପୂଜା ପାଉଛନ୍ତି । ଏହି ତୀର୍ଥରେ ପଶ୍ଚିମରେ ମାତଙ୍ଗ ଋଷିଙ୍କ ଆଶ୍ରମ ଥିଲା । ଏହି ଆଶ୍ରମ ପାଖେ 'ଡ଼ିବଶୀ' ଦିନେ ପଥର ପାଲଟିଥିଲେ, ସେ କଥା ତୁମ ମନେ ଥିବ । ସେ ତୀର୍ଥସ୍ଥାନ ଆଉ ନାହିଁ । 'ଅର୍କତୀର୍ଥ' ଆମ ମନ୍ଦିର ପାଖେ । ଦିନେ ଏହି ତୀର୍ଥରେ ସୂର୍ଯ୍ୟ ତପସ୍ୟାକରି ସକଳ ପାପରୁ ମୁକ୍ତ ହୋଇ ସିଦ୍ଧିଲାଭ କରିଥିଲେ । ଏପରି ତ କେତେ ସ୍ମୃତି ଏ ତୀର୍ଥ ସଙ୍ଗେ ଜଡ଼ିତ । ଏବେ ଦେଖ ସେ ତୀର୍ଥର ଅବସ୍ଥା ।

'ଝୋଲି' ଜନପଦ ପାଖେ ପ୍ରାଚୀ ନଦୀ ପୂର୍ବ ତଟପ୍ରଦେଶରେ ଅଗ୍ନିତୀର୍ଥ ପୁରାଣ ପ୍ରସିଦ୍ଧ । ରାମଚନ୍ଦ୍ର ବନବାସ ସମୟରେ ଏହି ତୀର୍ଥରେ ତାଙ୍କ ପିତା ଦଶରଥଙ୍କ ଲାଗି ପିଣ୍ଡ ଦାନ କରିଥିଲେ । ଏଠାରେ ବହୁ ବର୍ଷ ଧରି ଗୋଟିଏ ଯଜ୍ଞବେଦୀ ଥିଲା । ଲୋକମାନେ ମାଘ ଅମାବାସ୍ୟା ତିଥିରେ ସ୍ନାନ କରି ମହାପୁଣ୍ୟ ଅର୍ଜନ କରୁଥିଲେ । ସେ ତୀର୍ଥସ୍ଥାନ ଏବେ ଧାନ ବିଲ ହୋଇ ଗଲାଣି ।

ଗ୍ରାମେଶ୍ୱର ଗାଁ ପାଖେ 'ମୃତ୍ୟୁତୀର୍ଥ', ପିତାପଡ଼ା ପାଖେ 'ଅଙ୍ଗତୀର୍ଥ', ପାଣ୍ଡବକୁଦ ପାଖେ 'ପାଣ୍ଡବତୀର୍ଥ', ଏବଂ ସୁଦର୍ଶନ ତୀର୍ଥ ଅବସ୍ଥା ମଧ୍ୟ ତଦ୍ରୂପ ।

ଶୋଭନେଶ୍ୱର କହିଲେ, ଇନ୍ଦ୍ର ତମର ତ ମନେଥିବ, 'ପ୍ରମୋଚ୍ଛା' ଅପସରା କଥା ? ସତ୍ୟ ଯୁଗରେ 'ଚୀରମୁନି' ଯେତେବେଳେ ଉଗ୍ର ତପସ୍ୟାରତ ଥିଲେ ତମେ ସେତେବେଳେ ସେହି ଅପ୍‌ସରାକୁ ତାଙ୍କର ତପଭଗ୍ନ ପାଇଁ ପଠାଇଥିଲ । ଅପ୍‌ସରା ଚୀରମୁନିଙ୍କ ତପଭଗ୍ନ କରି ତାଙ୍କସଙ୍ଗେ ଏହି ପ୍ରାଚୀ ନଦୀ କୂଳରେ କେତେକ ଦିନ ସୁଖରେ କଟାଇଲା । କିନ୍ତୁ ଋଷି ଯେତେବେଳେ ଜାଣିଲେ ତୁମେ ତାଙ୍କୁ ପଠାଇ ତାଙ୍କ ତପ ଭଗ୍ନ କଲ, ସେତେବେଳେ ସେ ଅପ୍‌ସରାକୁ ଶାପ ଦେଇ 'କୁମ୍ଭୀର କରି ଦେଇଥିଲେ । ତ୍ରେତୟା ଯୁଗରେ ସେଇ କୁମ୍ଭୀରକୁ ବନବାସ ସମୟରେ ଲକ୍ଷ୍ମଣ ମାରି ଶାପମୁକ୍ତ କରିଥିଲେ । ସେଇ ଦିନରୁ ସେ ଜାଗା 'ଅପ୍‌ସରା ତୀର୍ଥ' ରୂପେ ପୂଜାପାଇ ଆସୁଥିଲା, ଏବେ ଯାଇ ଦେଖ ସେ ତୀର୍ଥର ଅବସ୍ଥା ।

ତା ଛଡ଼ା, ଏ ନଦୀ କୂଳରେ କେତେ ମଠ ନଥିଲ ! ରାଧାକାନ୍ତ ମଠ, ଅର୍କ ତୀର୍ଥ ମଠ, ସିଦ୍ଧ ମଠ, ଗୋପାଳ ମଠ, ଗୁରୁଦେବ ମଠ, ରୋହଣୀ ମଠ, ବିଶ୍ୱାମିତ୍ର, ମଠ, ରତାବଡ଼ମଠ, ଆହୁରି କେତେ । ଏବେ ଯାଅ ଦେଖିବ ଏ ମଠମାନଙ୍କର ଅବସ୍ଥା । କେତେ ମଠର ନାମଗନ୍ଧ ବି ନାହିଁ । ବାକି ଯେଉଁସବୁ ମଠ ଅଛି ସେ ନରହିବା ଭଲ ।

ତାଙ୍କ କଥା ଶୁଣି ଇନ୍ଦ୍ର କହିଲେ, ପ୍ରଭୁ ଏ ସବୁ କଅଣ କାଳ ଗର୍ଭରେ ବୁଡ଼ିଯିବ ? ଏ ଯୁଗର ଲୋକମାନେ କଳା, ସ୍ଥାପତ୍ୟ,ଐତିହ୍ୟ ଆଉ ସଭ୍ୟତାକୁ ରକ୍ଷା କରି ପାରିବେନି ?

ଶୋଭନେଶ୍ୱର କହିଲେ କାହିଁକି ପାରିବେନି ? ଏବେ ବି ବହୁତ ଲୋକ ଅଛନ୍ତି, ସେମାନଙ୍କର ଦେବତା, ଗୁରୁ, ବ୍ରାହ୍ମଣମାନଙ୍କ ପ୍ରତି ବିଶ୍ୱାସ ଆଉ ଭକ୍ତିଅଛି । ଏହା ବ୍ୟତୀତ ଲୁଭିଯାଉଥିବା ସଭ୍ୟତା ଆଉ ସଂସ୍କୃତିକୁ ଉଦ୍ଧାର କଲେ, ସେଇ-ମାନଙ୍କର ମର୍ଯ୍ୟାଦା ବଢ଼ିବ । ତାଙ୍କ ଛଡ଼ା ଆଉ କଅଣ ଆମେରିକା ନା ଲଣ୍ଡନବାଲା ଆସି କହିବେ ଏଇଟା ତାଙ୍କ ସଭ୍ୟତା ଥିଲାବୋଲି ? ବର୍ତ୍ତମାନର ସରକାର ଯେପରି 'ସୁବର୍ଣ୍ଣ ତ୍ରିଭୁଜ' ଆଖ୍ୟାଦେଇ 'ପୁରୀ, କୋଣାର୍କ, ଭୁବନେଶ୍ୱର'ର ମାନ ବଢ଼ାଉ-ଛନ୍ତି, ସେହିପରି 'ପ୍ରାଚୀନଦୀ' ସଭ୍ୟତାର ଉଦ୍ଧାର ପାଇଁ ଏହି ନଦୀ କୂଳର ପୁରୁଣା ମନ୍ଦିର, ମଠ, ଆଶ୍ରମ, ତୀର୍ଥସ୍ଥାନ ମାନଙ୍କର ପୁନରୁଦ୍ଧାର କାମ କରି ଏ ସମସ୍ତ ସ୍ଥାନ-ମାନଙ୍କୁ ରାସ୍ତା ତିଆରି କରିବା ଉଚିତ । ଜବରଦଖଲ କରି ମଠ ଜମିକୁ ଖାଉଥିବା ଲୋକମାନଙ୍କୁ ଉଚ୍ଛେଦ କରି ମଠ ଆଉ ଆଶ୍ରମର ଉନ୍ନତି କରାଯାଇ ପାରିବ । ବର୍ତ୍ତମାନ ଯେତିକି ପାରାଯାଏ ସେତିକି କରାଯାଉ । ତାହାଛଡା ଏ ଅଞ୍ଚଳର ବାସିନ୍ଦାମାନେ ଏ ବିଷୟରେ ଦାବୀ କରିବା ଉଚିତ୍ ।

ଇନ୍ଦ୍ର କହିଲେ, ତା ସତ କଥା । ଏ ଅଞ୍ଚଳରେ ବହୁତ ଶିକ୍ଷିତ ବ୍ୟକ୍ତି ଅଛନ୍ତି । ଏମାନେ ମଧ୍ୟ ସ୍ୱର ଉତ୍ତୋଳନ କରିବା ଉଚିତ ।

ଶୋଭନେଶ୍ୱର କହିଲେ, ହଉ ରାତି ବେଶି ହେଲାଣି, ବିଶ୍ରାମ ନେବା ଚାଲ ।

( ୨୨ )

ପଣ୍ଡା ପଡ଼ିଆରି ମନ୍ଦିର ବେଢ଼ାକୁ ଆସିବା ପୂର୍ବରୁ, ଇନ୍ଦ୍ର ମନ୍ଦିର ବେଢ଼ା ଛାଡ଼ି ବଙ୍ଗାଳି ସାହି ରାସ୍ତା ଧରି ସାରିଥିଲେ । ଶମ୍ଭୁ ଦର୍ଶନ, ତୀର୍ଥସ୍ଥାନ ଭ୍ରମଣ ଇଚ୍ଛା, ଶୋଭନେଶ୍ୱରଙ୍କ ଠାରୁ ସବୁ ଶୁଣିଲା ପରେ, ପରିତ୍ୟାଗ କରି ମଫସଲ ଭାଇମାନଙ୍କ

ଅବସ୍ଥା ଦେଖିବାକୁ ମନବଳେଇଲେ । କିଛି ବାଟ ଗଲାପରେ ରାସ୍ତା କଡ଼ରେ ଗୋଟିଏ ବସ୍ତି ତାଙ୍କ ଦୃଷ୍ଟିଗୋଚର ହେଲା । ସେ ଭାବିଲେ ବସ୍ତି ଭିତରକୁ ଯାଇ ଭାଇମାନଙ୍କ ଅବସ୍ଥା ଦେଖି ଆସିବେ । ରାସ୍ତାରୁ ଗଡ଼ି ବସ୍ତି ମୁଣ୍ଡରେ ପହଞ୍ଚିଲା ବେଳକୁ ଦେଖିଲେ ଜଣେ ବୟସ୍କ ଲୋକ ଦଳପୋଖରୀ କୂଳରେ ଠିଆ ହୋଇ ଦାନ୍ତ ଘଷୁଛି, ଆଉ କେତେଟା ଛୋଟ ଛୋଟ ପିଲା ସେ ଦଳ ପୋଖରୀରେ ବୁଡ଼ୁଥାନ୍ତି । ବସ୍ତିକୁ ଲାଗି ପୋଖରୀ, କିନ୍ତୁ କଟକି ଦଳରେ ଭରପୂର । ଶୋରଷ ପକାଇବାକୁ ଜାଗାଟିଏ ନାହିଁ । କେବଳ ଯାହା ବାଉଁଶ ଆଡ଼ଦେଇ ଚାରିହାତ ଜାଗାରେ ମୁହଁ ଧୋଇବା, ଗାଧୋଇବା ଏବଂ ଖାଇବା ପାଣି ନବାପାଇଁ ଜାଗା କରାଯାଇଛି ।

ଇନ୍ଦ୍ର ବୁଝିଲେ ସେ ଗୋଟିଏ ହରିଜନ ବସ୍ତି । ବାଉରୀ ସମ୍ପ୍ରଦାୟର ଲୋକମାନେ ଏ ବସ୍ତିରେ ଯୁଗ ଯୁଗ ଧରି ବସବାସ କରି ଆସୁଛନ୍ତି ଏବଂ ଦାନ୍ତ ଘଷୁଥିବା ଲୋକଟିର ନାମ ବନମାଳୀ ଭୋଇ । ଇନ୍ଦ୍ରଙ୍କୁ ପୋଖରୀ ହୁଡ଼ାରେ ଠିଆ ହୋଇଥିବା ଦେଖି ବନମାଳୀ ସେ କାହାକୁ ଖୋଜୁଛନ୍ତି ବୋଲି ପଚାରି ପଚାରି ହୁଡ଼ା ଉପରକୁ ଉଠିଲା । ଇନ୍ଦ୍ର କଥାକୁ ବାଆଁରେଇ ପଚାରିଲେ ବସ୍ତିକୁ ଲାଗି ଏମିତି ଗୋଟିଏ ଦଳ ପୋଖରୀ ରହିବା ଅସ୍ୱାସ୍ଥ୍ୟକର । ତାହା ଛଡ଼ା ମଶା ବଢ଼ି ମେଲେରିଆ ବ୍ୟାପିପାରେ । ସେମାନେ ଯେତେବେଳେ ଏ ପୋଖରୀକୁ ବ୍ୟବହାର କରୁଛନ୍ତି, ପୋଖରୀର ଦଳ ସଫାକରି ପରିଷ୍କାର କରୁ ନାହାନ୍ତି କାହିଁକି ? ତାଙ୍କ କଥାଶୁଣି ବନମାଳି କହିଲା, କଣ କହିବି ଗୋସେଇଁ, ଆମ ବେଳେ ଏ ପୋଖରୀର ଅବସ୍ଥା କଅଣ ଏପରି ଥିଲା । ଦଳ ତ ଦଳ, ଏ ପୋଖରୀରେ ଘାସ ଗଛଟିଏ ଉଠିବାକୁ ଦଉନଥିଲୁ । ଆଜିକାଲି ଯେଉଁ ଯୁଗ ହେଲାଣି, ଏ ଟୋକାମାନଙ୍କୁ କଅଣ କହି ହେଉଛି ନା ଗୁରୁଜନଙ୍କ କଥା ସେମାନେ ଶୁଣୁଛନ୍ତି ? ଏଇ କେତେଦିନ ତଳେ ଆଜ୍ଞା, ଆମ ପଞ୍ଚାୟତ ନିର୍ବାଚନ ହେଲା । କି ନିର୍ବାଚନ ହେଲାବାବୁ ଆମ ଗାଁକୁ ଦି'ଭାଗ କରିଦେଲା । ଆମ ଉପର ସାଇଆ ଗୋଟେ ପଟେ, ତଳସାଇ ଆଉ ଗୋଟେ ପଟେ । ଆମେ ବୁଢ଼ାମାନେ ଗାଁ ମଙ୍ଗଳାଙ୍କ ପାଖେ ସନ୍ଧ୍ୟାବେଳେ ଟିକିଏ କୀର୍ତ୍ତନ ଭଜନ କରୁଥିଲୁ, ସାଇଟୋକାମାନେ ଆମକୁ ବନ୍ଦ କରିଦେଲେ । ଦି' ସାଇର ମନ ମିଳୁନଥିବା ହେତୁ ମଙ୍ଗଳାଙ୍କ ଘରଚାଳ ଭାଙ୍ଗି ପାଣି ଗଳୁଛି । ଏ ବର୍ଷ ବର୍ଷା ପରେ ସେ ଘର ମାଟିରେ ମିଶିବ । କଅଣ ସେତିକି ବାବୁ, ନିର୍ବାଚନ ବେଳେ କିଏ କାହାକୁ ଭୋଟ ଦେଲା, ମାଇଲା, ଧଇଲା, ଏବେ ଚାଲିଛି କୋର୍ଟ କେସ୍ । ଆମ ସାହିର କେତେଟା ନିରୀହ ପିଲା ସେ କେଶ୍‌ରେ ଅଛନ୍ତି । ତାଙ୍କ ପାଇଁ ଆମେ ସମସ୍ତେ ଚାନ୍ଦା ଦେଉଛୁ । ନ ଦେଲେ ଗୋସେଇଁ, ରାତିରେ ତମ ଚାଳିଆ ରହିବନି କି ବାହାରେ ଲଙ୍ଗଳ ଜଣ୍ଡେ ରଖିବେନି । ଖାଇବୁନି ପଛେ ସାଇ ଚାନ୍ଦା ଦେଉଛୁ ।

ତା'କଥା ଶୁଣି ଇନ୍ଦ୍ର କହିଲେ, ନିର୍ବାଚନ ତ ଗଲାଣି । ସରପଞ୍ଚ ବାବୁଙ୍କ କହି କଥାଟା ମିଳାମିଶା କରିଦେଉନ କାହିଁକି ? ଗରିବ ଲୋକ ମକଦ୍ଦମା ଲାଗି ପେଟ ପୋଡ଼ିବ ନା କୋର୍ଟ କଚେରୀ, ଓକିଲଙ୍କ ପାଇଁ ପଇସା ଖର୍ଚ୍ଚ କରିବ ?"

ବନମାଳୀ କହିଲା, ନିଷ୍ପତ୍ତି କରିବ କିଏ ଆଜ୍ଞା ? ସରପଞ୍ଚମାନେ ତ କଥାକୁ ବଢ଼ାଇବାରେ ଲାଗିଛନ୍ତି । କିଏ କହୁଛି ଆମ ହାତରେ ସରକାର ତ କିଏ କହୁଛି ତାଙ୍କ ହାତରେ ବିରୋଧୀ ଦଳ । ଗରିବ ଗୁରୁବା ମଝିରେ କେବଳ ପେଷି ହେଉ-ଛନ୍ତି । ବାବୁଭାୟାମାନଙ୍କର କଅଣ ଯାଉଛି ? 'ନିର୍ବାଚନ' ହୋଇ ଆମର ସିନା ଉନ୍ନତି ହୋଇଥାନ୍ତା, ଏବେ ଆମେ ଉଚ୍ଛନ୍ନ ହେବାକୁ ବସିଲୁଣି ।"

ବନମାଳୀ କଥା ଶୁଣି ଇନ୍ଦ୍ର ଭାବିଲେ ପ୍ରକୃତରେ ମଫସଲ ଅଞ୍ଚଳରେ ନିର୍ବାଚନ ଆଳରେ ଯେଉଁ ପ୍ରକାରର ଦଳଗତ ମନୋଭାବ ସୃଷ୍ଟି କରାଯାଉଛି, ଏହା କ୍ରମେ କ୍ରମେ ନିରୀହ, ସରଳ ଗ୍ରାମବାସୀମାନଙ୍କ ଗ୍ରାମ୍ୟ ଜୀବନକୁ ନଷ୍ଟକରି ଦେଲାଣି । ନିର୍ବାଚନ ଦ୍ୱାରା ଜନମତ ସୃଷ୍ଟି କରି ସମୂହ ଉନ୍ନତି ପରିବର୍ତ୍ତେ ସମୂହ କ୍ଷତି ଘଟାଇଲେ ସେ କି ପ୍ରକାର ନିର୍ବାଚନ ! ଦୃଷ୍ଟାନ୍ତ ସ୍ୱରୂପ ସେ ଗାଁ । ମୁଣ୍ଡ ପୋଖରୀକୁ ଦେଖିଲେ । ଆଗେ କଅଣ ଗାଁ ଗଣ୍ଡାରେ କଳି ତକରାଳ ଲାଗୁନଥିଲା ? ମାତ୍ର ତାକୁ ନିରପେକ୍ଷ, ଦଳଗତ ମନୋଭାବ ନରଖି ସମାଧାନ କରାଯାଇ ଗାଁ ଗଣ୍ଡାରେ ଶାନ୍ତି ସରଳ ପରିବେଶକୁ ରକ୍ଷା କରାଯାଉଥିଲା । ଏବର ପଞ୍ଚାୟତ ନିର୍ବାଚନ ପଦ୍ଧତିକୁ ଜଟିଳ ବ୍ୟୟବହୁଳ ରାଜନୈତିକ ପରିବେଶ ଭିତରକୁ ଟାଣି ନନେଇ, ଗ୍ରାମ୍ୟ ଜୀବନର ପୁନରୁଦ୍ଧାର ପରିକଳ୍ପେ ବ୍ୟବହାର କରିବା ଉଚିତ । ସବୁ ଜାଗାରେ ଖଣ୍ଡୁ ପୂରାଇଲେ, ସେ ଜାଗାମାନଙ୍କର ଅବସ୍ଥା କଅଣ ହେବ !

ଇନ୍ଦ୍ରଙ୍କୁ ଚିନ୍ତିତ ଦେଖି ବନମାଳୀ କହିଲା, ଗୋସେଇଁ ପୋଖରୀ ହୁଡ଼ାଟାରେ କାହିଁକି ଠିଆ ହେବ ? ଆସ ଆମ ସାଇ ଦେଇ ସେପଟେ ଉଠିଯିବ ।

ବନମାଳୀ ଭେଇ ସଙ୍ଗେ ଇନ୍ଦ୍ର ତାଙ୍କ ସାହି ଭିତରକୁ ପ୍ରବେଶ କଲେ । ସାହି ମଝିରେ ମଙ୍ଗଳା ଠାକୁରାଣୀଙ୍କ ଘର ବେଛପଖା ହୋଇପଡ଼ିଛି । ବର୍ଷାଦିନରେ ପାଣି ଗଳି ମାଟିକାନ୍ଥ ବହୁଜାଗାରେ ଭାଙ୍ଗି ଘରଭିତର ଦିଶୁଥାଏ । ବନମାଳୀ କହିଲା 'ବୁଝିଲେ ଗୋସେଇଁ, ଏ ଆମ ବାପ, ଅଜା କାଳର ମଙ୍ଗଳା ଘର । ଏଇ ଘର ଆମ ଜୀବନର ସୁଖ, ଦୁଃଖ, ଭଲ, ମନ୍ଦରେ ଭାଗି । ବାହାଘରର ଭୋଜିଭାତ, ଦଶହରା ବେଳେ ଗାଁ ଯନ୍ତାଳ, ଚୈତମାସରେ ପଣାସଙ୍କ୍ରାନ୍ତି ଏଇ ଘରେ ହଉଥିଲା । ଏଇଠି ମଧ୍ୟ ଗାଁ । କଳି ନ୍ୟାୟ ନିଶାପ ହୋଇ ତୁଟୁଥିଲା । ହଇଜା ମହାମାରୀବେଳେ ଏଇଠି କୀର୍ତ୍ତନ କରି ଠାକୁରାଣୀକୁ ଜଣାଉଥିଲୁ । ଏ କାଳକୁ ଏ ଘରଗୁଡ଼ ପିଲାମାନେ

କଲେ 'ଯୁବକ ସଂଘ' । ଦିନେ ସକାଳୁ ଦେଖୁ ଦେଖୁ ବି.ଡ଼ି.ଓ ଅନ୍ୟ ବାବୁଭାୟା-ମାନେ ଆମ ଗାଁ ମୁଣ୍ଡରେ ହାଜର । ଯୁବକସଂଘ ଘର ଉଦ୍‌ଘାଟନ ହେଲା । ବାଜା ବଜେଇ ବି ଡି.ଓ, ଚେୟାରମ୍ୟାନଙ୍କୁ ରାସ୍ତା ଉପରୁ ପାଛୋଟି ଆଣିଲେ । ସରକାରଙ୍କ ଠାରୁ କିଛି [illegible] ସାହାଯ୍ୟ ପାଇ 'ଯୁବକସଂଘ' ଚାଲିଲା । ଆମେ ଭାବିଲୁ ପିଲାମାନଙ୍କ ଅମଳରେ କିଛି ନୂଆ କାମ ହେବ । ଗାଁର ଉନ୍ନତି ହେବ । ଆପଣ ଯାଇ ଦେଖିବେ ଗୋସେଇଁ, ମୋ ଘରେ ବାଲିଆ ଢେଉଁଛନ୍ତି । ଛତରୁ ଟିଣ କାଢି କିଏ ନେଇଗଲା । ଗାଁରେ ପଲିଟିକ୍ସ ପଶିଲେ ଯାହା ହୁଏ । ଏବେ ଆମର ପୁରୁଣା ଠାକୁରାଣୀ ଘର ଗଲା ସିଆଡ଼େ, ଟୋକାମାନଙ୍କର 'ଯୁବକସଂଘ' ଗଲା । ଆମେ ବୁଢ଼ାମାନେ ଯଦି କିଛି କହୁ, ଆମକୁ ଠେଙ୍ଗାଧରି ଗୋଡ଼େଇବେ ।

ସାହି ଭିତରେ କଥାବାର୍ତ୍ତା ହୋଇ ଇନ୍ଦ୍ର ସାହି ମୁଣ୍ଡରେ ପହଞ୍ଚି ଯାଇ-ଥାନ୍ତି । ବନମାଳୀ ବାଟ କଢ଼େଇ ଦବାକୁ ଯାଇ ତାଙ୍କ ପଛେ ପଛେ ଚାଲିଥାଏ । ଗାଁ ମୁଣ୍ଡରେ ଇନ୍ଦ୍ର ଦେଖିଲେ ଗୋଟେ ନଳକୂଅ ବସିଛି । ତାକୁ ଦେଖି ଇନ୍ଦ୍ର କହିଲେ 'କିଓ ବନମାଳୀ' ତୁମ ଗାଁରେ ତ ନଳକୂଅ, ଆଉ ତୁମେ ସେ ଅପରିଷ୍କାର ଦଳ ପୋଖରୀ ପାଣି ପିଉଛ କାହିଁକି ? ବନମାଳୀ କହିଲା—'ଗୋସେଇଁ' ସରକାର ଦୁଇବର୍ଷ ହେଲା ଏ ନଳକୂଅ ବସେଇଲେ । ନଳକୂଅ ବସେଇବାର ଛ ମାସେ ନଯାଉଣୁ ତା କଳ ଅଚଳ ହୋଇ ଆଉ ପାଣି ବାହାରିଲାନି । ନଳକୂଅ ଗାଁରେ ବସିଲାରୁ ଆମେମାନେ 'ମାଟିକୂଅ'କୁ ଆଉ ଉଳାଉନଥିଲୁ । ସାହିର ଛଟିଆ ପିଲାମାନେ ସ୍କୁଲକୁ ଗଲା ବାଟରେ ସେ କୂଅ ଭିତରେ ଅଳିଆ ଆବର୍ଜନା ପକାଇ ପାଣି ମୁହାଁକୁ ନଷ୍ଟ କଲେ । ଏଣେ ନଳକୂଅ ଅଚଳ ହେଲାରୁ ଦଉଡ଼ିଲୁ ବ୍ଲକ ଅଫିସକୁ । କିଛିଦିନ ଦଉଡ଼ା ଦଉଡ଼ି କଲା ପରେ ବ୍ଲକ ଅଫିସରୁ ବାବୁ ଆସି ସଜାଡ଼ିଲେ । ପୁଣି କିଛିଦିନ ପରେ ଯେଉଁ ଅବସ୍ଥାକୁ ସେଇ ଅବସ୍ଥା । କେତେ ଆଉ ଭାବିଲୁ ଆମର ପୁରୁଣା କୂଅ ଭଲ । ସେଇଥି ଲାଗି କୂଅ ସଫାକରି ସେଇଠୁ ପାଣି ଖାଉଛୁ । କିଏ ପୋଖରୀରୁ ନଉଛୁ । ନଳକୂଅ ସେଇ ଦିନଠାରୁ ଖରାପ । ଖାଲି କଅଣ ଆମ ସାହି କଳ; ଯେଉଁ ଜାଗାରେ ନଳକୂଅ ବସିଛି ସେଇ ଅବସ୍ଥା । ସରକାର କୂଅ ବସେଇଲେ, ତାକୁ ମରାମତି କରିବାପାଇଁ ସୁବିଧା ବ୍ୟବସ୍ଥା ଯଦି ନ କରିବେ, ତାହେଲେ ଏ ବସ୍ତି ଲୋକମାନେ ତାକୁ କିମିତି ସଜାଡ଼ିବେ । ଦରକାର ପଡ଼ିଲେ ଆମେ ମାସକୁ ପାଞ୍ଚଟଙ୍କା ଭେଦା କରି ଦବୁ । ଏବେ କେଶ୍ ଲଢ଼ିବାକୁ ଶହଶହ ଟଙ୍କା ଦେଉଛୁ, ଭଲ ପାଣି ପିଇବାକୁ ପାଞ୍ଚ ଟଙ୍କା ନ ଦେବୁ କାହିଁକି ? ହେଲେ ମାସକୁ ମାସ ଏ କଳକୁ ନ ଦେଖିଲେ ଏ ଠିକ୍ ରହିବନି । ବି.ଡ଼ି.ଓ.ଙ୍କୁ ଆମେ ଏକଥା କେତେଥର କହିଲୁଣି, ଆମ କଥା ଶୁଣୁଛି କିଏ ? ଏ କେବଳ ଆମ ବସ୍ତିରେ ନୁହେଁ, ଏ ସବୁ ଆଡ଼ର କଥା ।

ବନମାଳୀ କଥା ସରିଲା ବେଳକୁ ତାଙ୍କ ସାହିର ଚାରି ପାଞ୍ଚଜଣ ଟୋକା ଆଖି ଠେମା ଠେମା କରି ରାସ୍ତା ଆଡ଼ୁ ସାହି ଭିତରକୁ ମୁହାଁଇ ଥାନ୍ତି । ସେମାନଙ୍କୁ ଦେଖି ବନମାଳୀ ଟିକିଏ ଚୁପ୍ ହୋଇ ରାସ୍ତା ଆଡ଼େଇ ଠିଆ ହେଲା । ସେମାନେ କିଛି ଦୂର ଗଲା ପରେ ବନମାଳୀ କହିଲା "କୁହନ୍ତୁନ ଗୋସେଇଁ, ଏମାନଙ୍କ ଦାଉରେ ଆମ ମାନ ସମ୍ମାନ ଗଲା" । ଇନ୍ଦ୍ର ପଚାରିଲେ, କାହିଁକି ଏମାନେ ସବୁ କୁଆଡ଼େ ଯାଇଥିଲେ ? କଅଣ କହିବି ଗୋସେଇଁ ଦି' ବର୍ଷ ହେଲା ଆମର ଏଠି ସିନେମା ହଲ୍ଟେ ହେଲା । ସନ୍ଧ୍ୟା ବୁଡ଼ୁ ବୁଡ଼ୁ ଏ ଟୋକା ଗୁଡ଼ାକ ସିନେମା ଦେଖିବାକୁ ଯାଉଥିଲେ, ଯାହା କରନ୍ତୁ ପଛେ ରାତି ଦଶଟା ବେଳକୁ ଫେରୁଥିଲେ । ଏବେ କଅଣ ଗୋଟେ 'ଭିଡିଓ ସୋ' ରାତି ଅଧିଆ ହେଉଛି । ରାତି ଦଶଟାରୁ ଆରମ୍ଭ ହୋଇ ଭୋର ଚାରିଟା ପର୍ଯ୍ୟନ୍ତ ଚାଲିଛି । ସେଥିରେ କୁଆଡ଼େ ସବୁ ନୂଆ ନୂଆ ସିନେମା ଦେଖାଉଛନ୍ତି । ଭି.ଡ଼ି.ଓ. ସୋ ଲାଗି ସିନେମା ହଲ୍‌ବାଲାର ବାରଟା ବାଜିଲାଣି, ଇସ୍ତାଡ଼େ, ଆମେ ମରିବା ଉପରେ । ଏ ଶଳେ ରାତିଯାକ ଭି.ଡି.ଓ. ସୋ ଦେଖି ଶୋଇବେ ଯେ, ଦିନ ବାରଟା ପର୍ଯ୍ୟନ୍ତ, କାମ ନାହିଁକି ଦାମ ନାହିଁ । ଭି.ଡି.ଓ. ସୋ ସାଙ୍ଗକୁ ଦେଶୀ ମାଲ ବି ମିଳିଲେ ନେ । ସେଥିରୁ ମୁନ୍ଦେ ମୁନ୍ଦେ ପକେଇ ଦଉଛନ୍ତି । ତାଙ୍କସଙ୍ଗେ କଥା କହିବା ମହା ବିପଦ । ନିଜ ମାନସମ୍ମାନ ଜଗି ବାଟ ଆଡ଼େଇ ଠିଆ ନହେଲେ ଜାଣି ଜାଣି ଏମାନେ ଦି ଧକ୍କା ପକାଇବେ । ଖାଲି କଅଣ ଆମ ସାହି ଟୋକା, ଆଙ୍କା, ବ୍ରାହ୍ମଣ ସାହି, ମହାନ୍ତି ସାହି, ବଙ୍ଗାଳୀ ସାହି ସବୁ ସାହି ଟୋକାମାନଙ୍କ ଅବସ୍ଥା ସେଇଆ । ହଉ ଗୋସେଇଁ ମୁଁ ରହିଲି—ଏଇଆଗରେ ତ ରାସ୍ତାଟା ।

ବନମାଳୀ ଦଣ୍ଡବତ ପକେଇ ଇନ୍ଦ୍ରଙ୍କଠାରୁ ବିଦାୟ ନେଲେ ।

( ୨୩ )

ବନମାଳୀକୁ ବିଦାୟ ଦେଇ ଇନ୍ଦ୍ର ରାସ୍ତା ଉପରକୁ ଉଠିଲେ ।

ହରିଜନ ବସ୍ତି ଛକ ମୁଣ୍ଡ ବରଗଛ ତଳେ ସେତେବେଳକୁ ଦି' ତିନି ଜଣ ବାବୁ ହାତରେ ବ୍ୟାଗ ଛତା ଧରି ଠିଆ ହୋଇଥାନ୍ତି । ସେ ଛକ ଜାଗାଟି ଗାଡ଼ି ମଟର ରହିବା ସ୍ଥାନ । ଇନ୍ଦ୍ର ଚାଲି ଚାଲି ସେମାନଙ୍କ ପାଖେ ଠିଆ ହେଲେ । ବାବୁମାନେ ନୂଆ ହୋଇ ଛକ ପାଖକୁ ସକାଳୁ ଆସିଥିବା ଲୋକଟି ଦେଖି ଠଉରେଇ ନେଲେ ଯେ, ସେ ବ୍ରାହ୍ମଣ ସାହିର କାହାର ବନ୍ଧୁ ବାନ୍ଧବ ହୋଇ-ଥିବେ । ଚିହ୍ନା, ଅଚିହ୍ନା ମନେ ନକରି ସେମାନେ ଇନ୍ଦ୍ରଙ୍କ ସଙ୍ଗେ କଥା ଆରମ୍ଭ କଲେ ।

କିଛି ସମୟ କଥା ହେଲା ପରେ ଇନ୍ଦ୍ର ଜାଣିଲେ ଯେ, ଏ ବାବୁମାନେ ସମସ୍ତେ ଭୁବନେଶ୍ୱରର ବିଭିନ୍ନ ସରକାରୀ ଅଫିସରେ କିରାଣୀ କାମ କରନ୍ତି । ପାଇଥିବା ସରକାରୀ ଗୃହକୁ ଅନ୍ୟକୁ ଭଡ଼ା ଦେଇ ଏମାନେ ନିଜ ଘରୁ ସବୁଦିନ ଅଫିସ ଯାଆନ୍ତି । ଗାଁରେ ଚାଷଜମି, ନଡ଼ିଆ ବଗିଚା, ମାଛ ପୋଖରୀ ଅଛି । ତା'ଛଡ଼ା ପିଲାପିଲି ସମସ୍ତେ ଏଇଠି । ଆଜିକାଲି ମଫସଲରେ ତ ସ୍କୁଲ କଲେଜ ହୋଇ ଗଲାଣି । ସେମାନଙ୍କୁ ସହରକୁ ନେଇ ଅଯଥା ଖର୍ଚ୍ଚାନ୍ତ ହେବେ କାହିଁକି ? ପିତୃଅର୍ଜିତ ଯାହା ଜମିବାଡ଼ି ଅଛି, ତାକୁ ନଦେଖିଲେ ସେ ଜମି ରହିବନି କି ଚାଉଳ ଗଣ୍ଡେ ମିଳିବନି । ତେଣୁ ଯାହା କଷ୍ଟ ହଉ ପଛେ, ସକାଳୁ ବସରେ ଧକଡ଼-ଚକଡ଼ ହୋଇ, ଯାଇ ସନ୍ଧ୍ୟାରେ ଫେରନ୍ତି ।

ଇନ୍ଦ୍ର ତାଙ୍କ କଥାବାର୍ତ୍ତାରୁ ଆହୁରି ବୁଝିଲେ ଯେ, ଜରୁରୀକାଳୀନ ପରିସ୍ଥିତି ବେଳେ ସେମାନଙ୍କ ଅଫିସ ଯିବା ଆସିବା ଉପରେ ଖୁବ କଟକଣା ଥିଲା । ଏବେ ଘଣ୍ଟେ ପରେ ପହଞ୍ଚି, ଘଣ୍ଟେ ଆଗରୁ ଆସିଲେ ମଧ୍ୟ କେହି କହିବାକୁ ନାହିଁ । ତା'ଛଡ଼ା ଅଫିସ୍ ବଡ଼ ବାବୁଙ୍କ ପାଇଁ ମଫସଲ ଅଞ୍ଚଳରୁ ମାଛଟାଏ, ଶାଗ ମେଞ୍ଚେ, ଦରକାର ବେଳେ ନେଇ ଥାଆନ୍ତି । ତେଣୁ ତାଙ୍କର ସୁବିଧା ଅସୁବିଧା ସେ ସବୁ ସମ୍ଭାଳି ନିଅନ୍ତି । ତାଙ୍କ କଥାବାର୍ତ୍ତା ଆଉ ଯୁକ୍ତିତର୍କରୁ ସେ ବୁଝିଲେ ଯେ, ଏମାନେ ମଧ୍ୟ ମଫସଲ ଅଞ୍ଚଳ ପାଇଁ ଚଳନ୍ତି ରାଜପତ୍ର (ଗେଜେଟ୍) । କିଏ ମନ୍ତ୍ରୀ ହବ, କେଉଁ ସାହେବର ବଦଳି ହେଲା, କେଉଁଠି ଦୁର୍ଘଟଣାରେ କିଏ ମଲା ଠାରୁ ଆରମ୍ଭକରି ପୃଥିବୀ ଗୋଟାକଯାକ ଖବର ଏମାନଙ୍କ ପାଖେ । ସେ ବିଷୟରେ ସତ୍ୟତା ଯାହା ଥାଉନା କାହିଁକି, ଏହି ସମ୍ଭାବ୍ୟ ଏବଂ ଅସମ୍ଭାବ୍ୟ କଥାବାର୍ତ୍ତାରେ ହିଁ ଏମାନେ ବସ୍‌ରେ ଯିବା, ଧକଡ଼ଚକଡ଼ ଆଉ ପେଲାଠେଲା ଯନ୍ତ୍ରଣାକୁ ଭୁଲିଯାଆନ୍ତି ।

ତାଙ୍କ ଭିତରୁ ଜଣେ କହୁଥିଲେ ସେ ଗତକାଲି ସମ୍ବାଦପତ୍ରରୁ ପଢ଼ିଥିଲେ ଯେ, ଫୁଲବାଣୀ ଜିଲ୍ଲାରେ ମାଈ ଛେଳିଟେ ମଣିଷ ଛୁଆ ଜନ୍ମ କରିଛି । ଆଉ ଜଣେ କହୁଥିଲେ, ଏହା ଅସମ୍ଭବ । ଛେଳି ଯଦି ମଣିଷ ଛୁଆ ଜନ୍ମ କରନ୍ତା ତା'ହେଲେ ଟେଷ୍ଟଟିଉବ୍ ବେବି ପାଇଁ ଡାକ୍ତରମାନେ କାହିଁକି ବାହାବା ନିଅନ୍ତେ ? ଯାହା ଘରେ କଳା କାଣ୍ଡେଇ ଘରଣୀ ଥିବ ସେ ତ ତାକୁ ବିଦା କରି ଛେଳି ରଖନ୍ତେ । ମାତ୍ର ପ୍ରଥମ ଲୋକ ଜଣଙ୍କ ନଛୋଡ଼୍‌ବନ୍ଧା । ସେ ପୁରାଣରୁ ବିଭିନ୍ନ ଉଦାହରଣ ଦେଇ ଏହା ସମ୍ଭବ ବୋଲି ପ୍ରମାଣ କରିବାକୁ ଚେଷ୍ଟା କରୁଥିଲେ ।

କଥାଟା ଜମି ଆସିଲା ବେଳକୁ ପାଖ ସାଇ ଭିତରେ ପାଟିତୁଣ୍ଡ ଖୁବ

ଜୋରରେ ଶୁଣାଗଲା । ବାବୁମାନେ ସେମାନଙ୍କ ଯୁକ୍ତିତର୍କ ବନ୍ଦକରି ଚାଲି ଚାଲି ଯାଇ ଅଡ଼ାକୁ ଗଲେ । ଇନ୍ଦ୍ର ବି ତାଙ୍କ ପଛେ ପଛେ ଚାଲିଲେ । କଚ୍ଛବାଟ ଯାଇଛନ୍ତି, କାଳି କରୁଥିବା ଲୋକ ଦୁ' ଜଣ ବାବୁଙ୍କ ପାଖେ ଆସି ଅଭିଯୋଗ କଲେ । ତାଙ୍କ କଳର କାରଣ ହେଲା; ସେମାନଙ୍କ ଭିତରୁ ପ୍ରଥମ ଜଣକେ ଗତ ରାତ୍ରିରେ ଇଲେକ୍‌ଟ୍ରିକ୍ ଖୁଣ୍ଟିରୁ ଝାମ୍ପ ପକାଇ ଲାଇନ୍ ନେଇଥିଲା । ସକାଳୁ ସକାଳୁ ଲାଇନ୍ ଉପରୁ ଝାମ୍ପ କାଟିଦେବା କଥା । ସେ କାଟି ଦେଇନଥିବା ହେତୁ ଆଉ ଜଣଙ୍କର ବାଛୁରୀ ଯେବାଟ ଦେଇ ଗଲାବେଳେ ତାକୁ ଇଲେକ୍‌ଟ୍ରିକ୍ ସକ୍‌ମାରି ସେ ଦରମରା ହୋଇପଡ଼ିଛି ।

ସେମାନଙ୍କ କଥା ଶୁଣି ବାବୁ ଦୁ ଜଣ ତାଙ୍କୁ ବୁଝାଶୁଝା କରି ବିଦା କରିଦେଲେ । ବେଶି ପାଟିତୁଣ୍ଡ କଲେ ତାଙ୍କ ନାଁରେ ପୁଲିସ୍ କେଶ୍ ହେବାର ଭୟ ମଧ୍ୟ ଦେଖେଇଲେ । କଥାମାନି ଲୋକ ଦୁ ଜଣ ଚୁପ୍ ଚାପ ହୋଇ ଫେରିଲେ ।

ତାଙ୍କ ଯିବା ପରେ ଇନ୍ଦ୍ର ବୁଝିଲେ ଯେ, ସେ ସାହିକୁ ଗ୍ରାମ୍ୟ ବିଦ୍ୟୁତ୍ କରଣ ଯୋଜନା ଅନୁସାରେ ବିଜୁଳି ଲାଇନ ଯୋଗାଇ ଦିଆଯାଇଛି । ସାହିଭିତରେ ପଚାଶ କି ଷାଠିଏ ଘର ଥିଲେ ମଧ୍ୟ ଜଣେ ଦୁ ଜଣ ପ୍ରକୃତରେ ଲାଇନ୍ ପଇସା ଦେଇ ନେଇଛନ୍ତି । ବାକି ସମସ୍ତେ ଚୋରରେ ହୁକ ପକାଇ ଲାଇନ୍ ନେଇ ଜାଳୁଛନ୍ତି । ଇନ୍ଦ୍ର ଆଉ ଟିକିଏ ଭିତରି କାରଣ ବୁଝିବାରେ ଜାଣିଲେ ଯେ, ପ୍ରକୃତରେ ସବୁ ଲୋକମାନେ ବେଆଇନଭାବେ ବିଦ୍ୟୁତ ବ୍ୟବହାର କରିବାକୁ ଚାହାଁନ୍ତିନି । ମାତ୍ର ଅବସ୍ଥାଚକ୍ରରେ ପଡ଼ି ସେମାନେ ଏମିତି କାମ କରିବାକୁ ବାଧ୍ୟ ହେଉଛନ୍ତି । ପ୍ରଥମକଥା ହେଲା ଦରଖାସ୍ତ ଦେଇ ମିଟର ଆଣିବା ଆଉ ଆନୁଷଙ୍ଗିକ କାମ ପାଇଁ ସହରକୁ ଯାଇ (ଏସ. ଡି. ଓ. ଇଲେକ୍‌ଟ୍ରିକାଲ) ଅଫିସିରେ ପାଞ୍ଚ-ଥର ବସିଲେ ମଧ୍ୟ ଏସ. ଡି ଓ ଙ୍କ ଦେଖାମିଳୁନି । ପୁଣି ଲାଇନ୍ ନେଇ ମିଟର କିଣି ବସେଇଲେ ଏକକାଳୀନ ହଜାରେ ଟଙ୍କାରୁ ଊର୍ଦ୍ଧ୍ୱ ଲାଗୁଛି । ଏତେ ଟଙ୍କା ଏକକାଳୀନ ଦେବା ସାହିର ବହୁ ବାସିନ୍ଦାଙ୍କ ପକ୍ଷେ ସମ୍ଭବ ନୁହେଁ । ଗାଁ ଭିତରେ ଲାଇନ୍ ଯେତେବେଳେ ଯାଇଛି ତବ, ଲଣ୍ଠନ ଜାଳିବେ କାହିଁକି ? ତେଣୁ ସନ୍ଧ୍ୟାବେଳେ ହୁକ ପକାଇ ଲାଇନ୍ ନେଲେ । ସମସ୍ତେ ଯେତେବେଳେ ଚୋରି କରୁଛନ୍ତି, କେଉଁ ଲାଇନ୍‌ମ୍ୟାନ ଆସି ଗାଁ ଭିତରୁ ଏମାନଙ୍କୁ ଧରିବେ ! ଧରିଲେ ମାଡ଼ ଭରଣକୁ ପାହୁଲାଟିଏ ପଡ଼ିବନି !

ତେଣୁ ଲାଇନ୍ ମ୍ୟାନ କେବେହେଲେ ଚେକ୍ କରନ୍ତିନି, ବରଂ ଖୁସିରେ

ବସ୍ତି ଲୋକମାନେ ନଡ଼ିଆ, କଦଳୀ ସରୁ ଅରୁଆଚାଉଳ ପୂନଅ ପର୍ବରେ ତାଙ୍କୁ ଦେଇଥାନ୍ତି । ଲାଇନମ୍ୟାନ ଚକର ଯେତେବେଳେ କରିଛନ୍ତି, ଲୋକେ ସଂପର୍କ ଭଲ ରଖିଲେ, ଚଳଣି ବି ବଞ୍ଚିଗଲା, ଯାହା କେବଳ ପଇସା ଦେଇ ଲାଇନ୍ ନେଇଥିବା ଲୋକ ମାସକୁ ଥରେ ଟ୍ରାନ୍ସଫର୍ମର ପୋଡ଼ି ଲାଇନ୍ ନପାଇବା ସାର ହେଲା । ସେ ଯାହାହେଉ ଗ୍ରାମ ବିଦ୍ୟୁତ୍‌କରଣ ଟାରଗେଟ୍‌ରେ ଏହି ସମସ୍ତ ଗ୍ରାମମାନଙ୍କର ନାଁ ଉଠିଗଲା ।

ବାବୁଙ୍କଠାରୁ ଏ କଥା ଶୁଣି ଇନ୍ଦ୍ର କହିଲେ—କାହିଁକି, ଗ୍ରାମ ବିଦ୍ୟୁତ୍‌କରଣ ଯେତେବେଳେ ହେଉଛି ଲୋକମାନଙ୍କ ସୁବିଧା ଦୃଷ୍ଟିରୁ ଇଚ୍ଛୁକ ଲୋକମାନଙ୍କ ଘରକୁ ଡିପାର୍ଟମେଣ୍ଟ ତରଫରୁ ଇଲେକ୍‌ଟ୍ରିଫିକେସନ କରି ସେ ବାବଦ ଟଙ୍କା ମାସକୁ ମାସ ସେମାନଙ୍କଠାରୁ କାଟିନେଲେ ବହୁତ ଲୋକ ସୁବିଧାରେ ଲାଇନ୍ ପାଆନ୍ତେ । ସେକ୍‌ସନ୍ ଅଫିସର, ଏସ ଡି. ଓ ଅଫିସକୁ ଦଉଡ଼ି ଖର୍ଚ୍ଚାନ୍ତ ହୁଅନ୍ତେନି କି ବିଜୁଳି ଆଲୁଅ ଚୋରି କରନ୍ତେନି ।

ଏଇ ସମୟରେ ଲାଇନ୍ ବସ ଆସିଲାରୁ ବାବୁମାନେ ବସ ଚଢ଼ିଲେ ।

( ୨୪ )

ଲାଇନ ବସ ଛକ ଛାଡ଼ିଲା ପରେ, ଇନ୍ଦ୍ର ନଆଳୀ ବଜାର ରାସ୍ତା ଧରି ସିଆଡ଼େ ମୁହାଁଇଥାନ୍ତି । ତାଙ୍କ ସାଙ୍ଗକୁ ଆଉ ଜଣେ ଧୋବଧାଉଳିଆ ଫୁଲ୍‌ପ୍ୟାଣ୍ଟ ପିନ୍ଧାବାବୁ ସାଇକେଲ ଗଡ଼େଇ ଗଡ଼େଇ ସାଙ୍ଗ ହେଲେ । ବଜାର ବେଶି ବାଟ ନୁହେଁ, ମାତ୍ର ବାବୁଙ୍କ ସାଇକେଲ ପଙ୍କ୍‌ଚର ହୋଇଥିବା ହେତୁ, ବଜାର ଛଡ଼ା ପକ୍ଷ ଦେବା ପାଇଁ ସୁବିଧା ନାହିଁ । ତାଙ୍କ ସଙ୍ଗେ କଥା ହେବା ଭିତରେ ଇନ୍ଦ୍ର ବୁଝିଗଲେ ଯେ, ବାବୁ ଜଣକ ଗ୍ରାମ ସେବକ । ତାଙ୍କ ଘର ଗଞ୍ଜାମ ଜିଲ୍ଲାର ପିତ୍ତଳ ମହକୁମାରେ । ସେ ଏଠାରେ ପ୍ରାୟ ୪ ବର୍ଷ ହେଲା କାମ କରି ଆସୁଛନ୍ତି । ବାବୁ ଜଣକ ବଡ଼ ଅଭିଜ୍ଞ କର୍ମଚାରୀ ପରି ମଧ୍ୟ ଜଣା ପଡୁଥାନ୍ତି ।

କଥାବାର୍ତ୍ତା ମଝିରେ ଇନ୍ଦ୍ର ପଚାରିଲେ 'ହରିଜନ ବସ୍ତିର ଅବସ୍ଥା କାହିଁକି ଏପରି ହୋଇଛି ? ସେମାନଙ୍କ ଉନ୍ନତି କଳ୍ପେ ସରକାର ତ ଏତେ ଯୋଜନା କରୁଛନ୍ତି । ସେ ସମସ୍ତ ଯୋଜନାର ଫଳ କଅଣ ଏମାନେ ଉପଭୋଗ କରୁ-ନାହାଁନ୍ତି ?

ତାଙ୍କ କଥା ଶୁଣି ଗ୍ରାମସେବକ ବାବୁ ଜଣକ କହିଲେ, ସରକାର ଯୋଜନା କଲେ କଅଣ ହେବ, ଏମାନଙ୍କ ଅବସ୍ଥା ଯେଉଁଠି ଥିଲା ପ୍ରାୟ ସେଇଠି କହିଲେ

ଅନ୍ତର୍ଭୁକ୍ତ ହେବେନି । ସରକାର ଭୂମିହୀନ ହରିଜନମାନଙ୍କ ପାଇଁ ବିଭିନ୍ନ ପ୍ରକାର ଋଣ ଆଇ. ଆର ଆର ପି, ଇ ଆର ପି. ଯୋଜନା ମାଧ୍ୟମରେ ବଣ୍ଟନ କଲେ । ହରିଜନ ବସ୍ତିରୁ ପ୍ରାପ୍ତ ସମସ୍ତେ କିଏ ତିନିହଜାର କିଏ ଦୁଇ ହଜାର ଟଙ୍କା ଆଣିଲେ । ସରକାରଙ୍କଠାରୁ ଟଙ୍କା କରାଇ ଦେବାପାଇଁ କେତେଜଣ ଟାଉଟର ବି ତାଙ୍କ ସଙ୍ଗେ ମିଶିଗଲେ । ବ୍ୟାଙ୍କବାଲା ଟାଳଟୁଳ କଲରୁ ସେମାନଙ୍କ ସଙ୍ଗେ ଏ ଟାଉଟର ବାବୁମାନେ ମଧ୍ୟ ମିଶିକରି କଥାବାର୍ତ୍ତା କରିନେଲେ । ଶେଷରେ ବ୍ୟାଙ୍କବାଲା ୨୫ ପରସେଣ୍ଟ୍ ସବ୍‌ସିଡିକାଟି ନେଇ ବାକି ୭୫ ପର୍‌ସେଣ୍ଟ୍ ଟଙ୍କା ଦେଇଦେଲେ । ଯେଉଁ ଦିନ ଏମାନେ ଟଙ୍କା ଆଣିଲେ ତା' ପରଦିନ କିଏ ସାଇକେଲ୍ କିଣିଲା ତ କିଏ ରେଡ଼ିଓ । ପିଲମାନଙ୍କ ପାଇଁ ଜାମାପଟା ବି କିଣାଗଲା । ଚାରିମାସ ନ ପୂରୁଣୁ ସେ ସାଇକେଲ, ରେଡ଼ିଓ ବି ବିକ୍ରି ହୋଇଗଲା । ଏମାନଙ୍କ ଅବସ୍ଥା ଯେଉଁଠି ଥିଲା ସେଇଠି । ସରକାରଙ୍କ ଋଣ ପାଣିରେ ପଡ଼ିଲା ।

ଆଉଗୋଟେ ପୋଗ୍ରାମରେ ଏମାନଙ୍କୁ ଜର୍ସି ଗାଈ କିଣେଇ ଏମାନଙ୍କ ଅର୍ଥନୈତିକ ଅବସ୍ଥା ବଦଳାଇବା ପାଇଁ ଚେଷ୍ଟା କରାଗଲା । ଗାଈ, ଘୁଷୁରି, କୁକୁଡ଼ା ଚାଷ ପାଇଁ 'ହଜାର ହଜାର ଟଙ୍କା ବ୍ଲକ ଅଫିସ ଜରିଆରେ ଦିଆଗଲା । ବାହାରେ ଦୁଇ-ହଜାରିଆ ଗାଈକୁ ବ୍ଲକବାଲା ଚାରି ହଜାରରେ କିଣି ନେଲେ । ପଶୁଡ଼ାକ୍ତରଙ୍କ ସାର୍ଟିଫିକେଟ୍ ଦବାରେ ତାଙ୍କର ଲାଭ, ବ୍ୟାଙ୍କବାଲା ଟଙ୍କା ସାଙ୍କ୍ସନରେ ତାଙ୍କର ଲାଭ, ବ୍ଲକ ଅଫିସରେ ତ ଜାଣି ସୁବିଧା, ସବୋପରି ବେନିଫିସିଆରିମାନେ ମାଗଣା ପାଇଲା ବେଳକୁ ଯାହା ପାଇଲେ ତାଙ୍କର ବି ଲାଭ । ଏଇ ବିନା ପରିଶ୍ରମରେ ଲାଭ ଧନ୍ଦା ଏମାନଙ୍କୁ ଆହୁରି ବେକାର ଆଉ ମାନ୍ଦା କରିଦେଲା । ଯେତେବେଳେ ଜାଣିଲେ ସରକାରଙ୍କୁ ଆଉ ଶୁଝିବାକୁ ପଡ଼ିବନି, ସେତେବେଳେ ଯାହା ମିଳିଲା ସେଇ ଭଲ ଭାବି 'ସାହାଯ୍ୟ'ର ସଦ୍-ଉପଯୋଗ କଲେନି । ମଝିରେ କେବଳ ମଝିବାଲାମାନେ ବେଶ୍ ଦି'ପଇସା ରୋଜଗାର କଲେ । ତା'ଛଡ଼ା ଯେଉଁ ଲୋକର ଘରେ ନିଜେ ଖାଇବାକୁ ଦାନା ନାହିଁ, ସେ ଲୋକ ଘରେ ଗୋଟେ କି ଦିଟା ଜର୍ସି ଗାଈ ରଖି ତାକୁ ଖାଇବାକୁ କଅଣ ଦେବ ? ତେଣୁ ସେ ଗାଈମାନଙ୍କ ଭିତରୁ ବାରଅଣା ମଲେ, ବାକି କେତେକ ଅଧା ଦାମ୍‌ରେ ବିକ୍ରି ହେଲେ । ଘୁଷୁରି କୁକୁଡ଼ାଙ୍କୁ ମାରି ଖାଇଲେ ।

ତାଙ୍କ କଥା ଶୁଣି ଇନ୍ଦ୍ର କହିଲେ, ଆପଣ ତ ଏତେଦିନ ବ୍ଲକରେ କାମ କଲେଣି, ଏମାନଙ୍କ ମନୋଭାବ ଆଉ ଅର୍ଥନୈତିକ ଅବସ୍ଥା ଦେଖୁଛନ୍ତି, ତେବେ ଏମାନଙ୍କ ଉନ୍ନତି କଲେ ତ କହାତ କିଛି କରିବା ଦରକାର—ଆପଣଙ୍କ ମତାମତ କଅଣ ?

ତାଙ୍କ କଥା ଶୁଣି ଗ୍ରାମସେବକଙ୍କ ବାବୁ ଜଣକ କହିଲେ, ଏମାନଙ୍କ ଅର୍ଥନୈତିକ ଉନ୍ନତି ହେବାକୁ ହେଲେ, କୁଟୀର ଶିଳ୍ପର ବିକାଶ, ଆଉ ଶିକ୍ଷାହିଁ ଅତ୍ୟନ୍ତ ଆବଶ୍ୟକ । ସରକାର ଏପରି ଋଣ ନଦେଇ ବ୍ଲକ ଜରିଆରେ ଛୋଟ ଛୋଟ ଶିଳ୍ପାନୁଷ୍ଠାନ ଗଢ଼ି ସେଠାରେ ଏମାନଙ୍କୁ ଅଧିକ ରୋଜଗାର କରିବାର ସୁବିଧା ଦବା କିମ୍ବା ଏମାନେ ଜାଣିଥିବା ବ୍ୟବସାୟକୁ କିପରି ଅଧିକ ଆକର୍ଷଣୀୟ କରି ଏମାନେ ଅଧିକ ସମ୍ବଳ ପାଇବା ପାଇଁ ସୁବିଧା ପାଇବେ, ତା'ର ବ୍ୟବସ୍ଥା କରିବା ଉଚିତ । ଖାଲି ଏମାନଙ୍କୁ ଟଙ୍କା ଧରାଇଦେଲେ କି ସେମାନେ ନ ଜାଣିଥିବା ବ୍ୟବସାୟ କରିବାକୁ ଦେଲେ, ଶହେରୁ ନବେ ଭାଗ ଫେଲ୍ ହେବ । ଯାହା ବର୍ତ୍ତମାନ ଘଟୁଛି ।

ଟିକିଏ ଋମି ପଡ଼ି ପୁଣି ଗ୍ରାମସେବକ ବାବୁ କହିଲେ—ଦେଖନ୍ତୁ ଆମ ଏ ଅଞ୍ଚଳରେ ବର୍ଷାଦିନେ ବିଲରେ ବହୁତ କାଇଁଚ ହୁଏ । କାଇଁଚରେ ଡାଲି, ସୋଫେରେଇ, ଟେବୁଲ୍ ଉପରେ ପକାଇବାକୁ ଛୋଟ ଛୋଟ ମ୍ୟାଟ୍ ଦେଶ ବିଦେଶରେ ବହୁତ ଆଦୃତ । ଦିଲ୍ଲୀ ପ୍ରଭୃତି ସହରରେ ଲୋକମାନେ ଏ ଜିନିଷ ଖୋଜି ପାଉ ନାହାଁନ୍ତି । ଆମେ ଯଦି ଏମାନଙ୍କୁ ଲଗାଇ ବର୍ଷା ଋତୁରେ କାଇଁଚ ସଂଗ୍ରହ କରି ଛୋଟ ଛୋଟ ଝିଅ ଆଉ ସ୍ତ୍ରୀଲୋକମାନଙ୍କ ସାହାଯ୍ୟରେ ଏସବୁ ଜିନିଷ ତିଆରି କରି ବିକ୍ରି କରନ୍ତେ, ତା'ହେଲେ ଏମାନେ ଯଥେଷ୍ଟ ପଇସା ପାଆନ୍ତେ ଏବଂ କୁଟୀର ଶିଳ୍ପର ଉନ୍ନତି ହୁଅନ୍ତା । ଯେଉଁ ଶିଳ୍ପ ବ୍ୟବସାୟ ଏମାନଙ୍କ ପାଇଁ ସମ୍ଭବ, ସେପରି ବ୍ୟବସ୍ଥା ନକରି ବାହାର ଦେଶରେ କ'ଣ ହଉଛି, ତାକୁ ଯଦି ଆମ ଗ୍ରାମ୍ୟ ଅଞ୍ଚଳରେ ପ୍ରବର୍ତ୍ତନ କରିବା, ତା'ହେଲେ ଏହା କେବେ ସଫଳ ହେବନି ।

ଗ୍ରାମସେବକ ବାବୁ ରାସ୍ତା କଡ଼ରେ ଲଗାଯାଇଥିବା ଗଛ ଗୁଡ଼ିକ ଦେଖାଇ କହିଲେ ଦେଖନ୍ତୁ, ଏ ଯେଉଁ ସବୁ ଇଉକାଲିପଟ୍ସ, ଆକାଶିଆ ଗଛମାନ ରାସ୍ତା କଡ଼ରେ ଏବଂ ସରକାରୀ ପଡିଆ ଜମିମାନଙ୍କରେ ଲଗାଯାଇଛି, ଏ ସମସ୍ତ ସାମାଜିକ ବନୀକରଣ ଦପ୍ତର ଦ୍ୱାରା ଲଗାଯାଇଛି । ଅପଣ ଜାଣିଥିବେ, ଏବେ ଆମର 'ବନନିଗମ' ବୋଲି ଗୋଟିଏ ସଂସ୍ଥା ଖୋଲାଯାଇ ସେଇ ସଂସ୍ଥା ମାଧ୍ୟମରେ ମଫସଲ ଅଞ୍ଚଳମାନଙ୍କରେ ସାମାଜିକ ବନୀକରଣ କରାଯିବ । ତାହାଛଡ଼ା ନୂତନ ଜଙ୍ଗଲ ସୃଷ୍ଟି, ରାସ୍ତା କଡ଼ରେ ବୃକ୍ଷ ରୋପଣ ଇତ୍ୟାଦି କାର୍ଯ୍ୟ ମଧ୍ୟ ଏ ସଂସ୍ଥା ହାତକୁ ନେଇଛି । ଖବର କାଗଜମାନଙ୍କରେ ଏ ସଂସ୍ଥା ବିଷୟରେ ବାହାରିଲା । ସାମାଜିକ ବନୀକରଣ ବିଭାଗମାନ ସୃଷ୍ଟି ହୋଇ ଯେଠାରେ ବଡ଼ ବଡ଼ ଅଫିସର ରହିଲେ, ଅଫିସମାନ ସୃଷ୍ଟି ହେଲା । ଲୋକମାନଙ୍କୁ ଜଣାଇଁ ଦିଆଗଲାଯେ ଏହି ସଂସ୍ଥା ପଡିଆ

ଜମିରେ (ସରକାରୀ) ଗ୍ରାମ୍ୟ ଜଙ୍ଗଲ ସୃଷ୍ଟି କରିବେ । ତା'ଛଡ଼ା ଯେଉଁ ଲୋକ ତା ନିଜ ବଗିଚା ପାଇଁ ଗଛ ଚାହିଁବ ତାଙ୍କୁ ପାଞ୍ଚଶହ ପର୍ଯ୍ୟନ୍ତ ଚାରା ଗଛ ମାଗଣାରେ ଯୋଗାଇ ଦେବେ ।

ଏ ଖବର ଲୋକମାନେ ଜାଣିଲା ପରେ ବହୁତ ଆମ ପାଖକୁ ଆସିଲେ । ଆମେ ତାଙ୍କ ଦରଖାସ୍ତ ସବୁ ସାମାଜିକ ବନୀକରଣ ଅଫିସ୍‌କୁ ପଠାଇଲୁ । ସେମାନେ ସେ ଅଫିସ୍‌କୁ କିଛି ଦିନ ଦଉଡ଼ିଲା ପରେ ନର୍ସରୀରୁ ଚାରାଗଛ ନେବା ପାଇଁ ଅର୍ଡ଼ର ମିଳିଲା । ଲୋକମାନେ ଅଫିସଠାରୁ ନର୍ସରୀ ୩୦ କିମ୍ବା ୪୦ କିଲୋମିଟର ଦଉଡ଼ିଲେ ଚାରା ପାଇଁ । ଦେଖିଲାବେଳେ କେତେକ ନର୍ସରୀରେ ଚାରା ନାହିଁ । ଯେଉଁଠି ଅଛି ଏଇ ଆକାଶିଆ ଇଉକାଲିପଟାସ ଇତ୍ୟାଦି । ଥରକୁ ଦିଥର ମଫସଲ ଖର୍ଚ୍ଚାନ୍ତ ହୋଇ ଦଉଡ଼ିଲା ବେଳକୁ ଆଗ୍ରହ ମଧ୍ୟ କମିଗଲା ।

ଦେଖନ୍ତୁ ଆଜ୍ଞା, ଏ ଅଞ୍ଚଳ ଦିନେ ଘନ ଜଙ୍ଗଲରେ ପୂର୍ଣ୍ଣ ଥିଲା । ଏ ଜଙ୍ଗଲ ଶାଳ, ପିଆଶାଳ, ଗମ୍ଭାରୀ, କସି, ଆମ୍ବ, ପଣସ, ବର ଇତ୍ୟାଦି ଗଛରେ ଭରପୂର ଥିଲା । ଲୋକମାନେ ଏହି ଜଙ୍ଗଲରୁ ସେମାନଙ୍କ ଦୈନନ୍ଦିନ ବ୍ୟବହାର ପାଇଁ ଜାଳେଣି କାଠ ପାଉଥିଲେ, ଗୃହ ଉପକରଣ ଏବଂ ଘର ତିଆରି କରିବା ପାଇଁ କାଠ ବାଉଁଶ ଆଣିପାରୁଥିଲେ । ତା' ଛଡ଼ା ଏ ଗ୍ରାମ୍ୟ ଜଙ୍ଗଲ, ଆଉ ସେତେବେଳର କାଠ ବଗିଚା ମାନଙ୍କରୁ ଆମ୍ବ, ପଣସ ଇତ୍ୟାଦି ଫଳ ଯଥେଷ୍ଟ ପରିମାଣରେ ମିଳୁଥିଲା । ଏଇ କେତେବର୍ଷ ହେଲା ସିନା ଗାଁ ଅଞ୍ଚଳରୁ ଜଙ୍ଗଲ, ବଗିଚା ସବୁ ଲୋପ ପାଇଗଲା ! କିନ୍ତୁ ଏ ଅଞ୍ଚଳରେ ଯେଉଁମାନେ ଏବେ ବି ବଞ୍ଚିଛନ୍ତି ସେମାନେ ନିଜ ଆଖିରେ ଏ ସବୁ ଦେଖିଛନ୍ତି, ଅଙ୍ଗେ ନିଭେଇଛନ୍ତି ।

ଏବେ ସାମାଜିକ ବନୀକରଣ ସଂସ୍ଥା ସେଇ ପଡ଼ିଆ ହୋଇଯାଇଥିବା ଜଙ୍ଗଲମାନଙ୍କରେ ଯଦି ଆକାଶିଆ, ଇଉକାଲିପଟାସ ଗଛ ଲଗେଇବେ, ତାହେଲେ କେଉଁ ଗାଁବାଲା ସେ ଜଙ୍ଗଲ ପ୍ରତି ଆଗ୍ରହ ପ୍ରକାଶ କରିବେ ? ତା'ଛଡ଼ା ଯେଉଁମାନେ ବାଡ଼ି ବଗିଚା କରିବେ ସେମାନେ ତ କିଛି ପାଇବା ଆଶାରେ ବଗିଚା କରିବେ ! ଆପଣ କୁହନ୍ତୁ ତ ଏ ଗଛମାନ କି ପ୍ରକାର ସୁବିଧା ଏମାନଙ୍କୁ ଦେବ ? କହିପାରନ୍ତି ଏ ଅଞ୍ଚଳ ଗ୍ରିନ୍ ଦିଶିବ ଆଉ ଅକ୍‌ସିଜେନ୍ ଯଥେଷ୍ଟ ମିଳିବ । ଏସବୁ କଥା ସହରରେ କହିଲେ ଲୋକେ ବୁଝିବେ । ସେଠି ଆଗ ଏ ଗଛମାନ ଲଗାଇ 'ପ୍ରାକୃତିକ ପରିବେଶ' ସୃଷ୍ଟିକର । କିନ୍ତୁ ମଫସଲ ଅଞ୍ଚଳରେ ଏବେ ବହୁତ ଅକ୍‌ସିଜେନ୍ ମିଳୁଛି । ଏଠାରେ ବନୀକରଣ କଲେ ଆମ୍ବ, ପଣସ, ଶାଳ, ପିଆଶାଳ, ବରଗଛ ଲଗେଇ ଜଙ୍ଗଲ ସୃଷ୍ଟି କର । ତାହେଲେ ଲୋକମାନଙ୍କର ସମର୍ଥନ, ସହଯୋଗ

ମିଳିବ । ଲୋକମାନଙ୍କ ଗୃହବ୍ୟବହାର କେଉଁ ଅଞ୍ଚଳରେ କଅଣ ଦରକାର ଏବଂ କେଉଁ ଅଞ୍ଚଳରେ କି ପ୍ରକାର ଜଙ୍ଗଲମାନ ଆଗେ ଥିଲା, ସେ ବିଷୟରେ ଅନୁଧ୍ୟାନ କରି ସାମାଜିକ ଜଙ୍ଗଲ ସୃଷ୍ଟି କରିବା ପାଇଁ ଚେଷ୍ଟା କରାଯାଉ । ତାହେଲେ ଯାଇ ଯେଉଁ ଉଦ୍ଦେଶ୍ୟରେ ଏ ସଂସ୍ଥା ସୃଷ୍ଟି ହୋଇଛି, ତା ପୂରଣ ହେବ । ନହେଲେ ଆମେମାନେ ଏ ମଫସଲରେ ରହି ଏମାନଙ୍କଠାରୁ ଶୋଧା ଗାଳି ଖାଇବା ଛଡ଼ା ଅନ୍ୟ ଗତି ନାହିଁ ।

କଥାବାର୍ତ୍ତା ଭିତରେ ସେ ଦୁହେଁ ବହୁତ ବାଟ ଚାଲିଆସିଥାନ୍ତି । ଇନ୍ଦ୍ର ଦେଖିଲେ ରାସ୍ତା କଡ଼ରେ ପଂଚେ ଲୋକ କୋଡ଼ି, କୋଦାଳ ଧରି କଣ ବଡ଼ ଚାଣ୍ଡୁଛନ୍ତି କିଏ ପାନ ଭାଙ୍ଗୁଛି । ସେମାନଙ୍କୁ ଦେଖି ଇନ୍ଦ୍ର ପଚାରିଲେ, "ଦିନ ଆସି ଦିଶଟା ପାଖାପାଖି ହବଣି, ଏମାନେ କଅଣ ସବୁ କାମ କରିବା ପାଇଁ ଆସିଛନ୍ତି ?" ତାଙ୍କ କଥା ଶୁଣି ଗ୍ରାମସେବକ ବାବୁ କହିଲେ, "ମଫସଲ ଅଞ୍ଚଳରେ କାମ କରେଇବା ଏବେ ମହା କଷ୍ଟକର ବ୍ୟାପାର ହେଲଣି । ଆଗେ ଯେଉଁମାନେ ଚାଷ ବାସ କରୁଥିଲେ, ସେମାନେ ତାଙ୍କ ଘରେ କାମ କରୁଥିବା ମଜୁରିଆମାନଙ୍କୁ (ସେତେବେଳେ ସେମାନଙ୍କୁ ହଳିଆ କହୁଥିଲେ) ତିନପା (ତ୍ରିଚୌର ଥ ଅଫ୍ ଆନ ଏକର) ଜମି ହେତା ଦଉଥିଲେ । ତା'ଛଡ଼ା' ଯେଉଁଦିନ ହଳିଆ ତାଙ୍କ ଘରେ କାମ କରୁଥିଲେ, ସେ ଦିନ ଚାରିସେର ଧାନ ମଜୁରି ବାବଦକୁ ନେଉଥିଲେ । ସ୍ତ୍ରୀ ପୁରୁଷଙ୍କ ମଜୁରି ସମାନଥିଲା । ସେ ଚାରିସେର ଧାନର ବର୍ତ୍ତମାନ ଦାମ ତିନ ଚାରି ଟଙ୍କା ହେବ । ତା' ଛଡ଼ା ହଳିଆ ଯେଉଁ ଜମି ଏକରକ ନେଲା, ତାକୁ ସେ ଚାଷିଙ୍କ ହଳ, ବଳଦ ସାହାଯ୍ୟରେ ଚାଷ କରି ସମସ୍ତ ଉତ୍ପନ୍ନ ଶସ୍ୟକୁ ସେ ନେଉଥିଲା । ଏଥିରେ ଆଉ ଗୋଟିଏ ସୁବିଧା ଥିଲା, କାମ ଥାଉ ନଥାଉ ଚାଷୀ ଘରକୁ ହଳିଆ ଆସିଲେ, ଚାଷୀ ତାଙ୍କୁ କାମ ନାହିଁ କହି ଫେରାଇ ଦେଇ ପାରୁ-ନଥିଲା । ଏହା ଦ୍ୱାରା ଚାଷୀ ଆଉ ହଳିଆର ପରିବାର ଗୋଟିଏ ପରିବାର ରିଲେସନ୍ ନେଇ ଚାଲୁଥିଲେ । ଭଲ ମନ୍ଦରେ ସମସ୍ତେ ସମସ୍ତଙ୍କ ପାଇଁ ଦାୟୀ ରହୁଥିଲେ । ଏପରିକି ଶୁଦ୍ଧି ଶ୍ରାଦ୍ଧରେ ହଳିଆମାନଙ୍କୁ 'ଦଶରୁଠ'କୁ ଡକାଯାଇ ସେମାନଙ୍କୁ ନୂଆ ଲୁଗା ଦିଆଯାଉଥିଲା । ସେତେବେଳେ ହଳିଆ-ଚାଷୀ ସମ୍ବନ୍ଧ ଥିଲା ଗୋଟିଏ 'ସାମାଜିକ ବନ୍ଧନ' । ଏତ ବେଶିଦିନର କଥା ନୁହେଁ । ଆମ ପିଲା ଦିନର ଦେଖିବା କଥା ।

କାଳକ୍ରମେ ଏ ବ୍ୟବସ୍ଥା ଭିତରେ ବ୍ୟତିକ୍ରମ ଦେଖାଗଲା । ସମାଜ ବଦଳିଲା, ସାମାଜିକ ସମ୍ପର୍କ ମଧ୍ୟ ବଦଳିଲା । ଯେଉଁ ହଳିଆକୁ ଚାଷୀମାନେ ବର୍ଷକ ପାଇଁ ଏକରେ ଜମି ବେଠିଦେଇ ତା' ପରିବାରକୁ ସାହାଯ୍ୟ କରୁଥିଲେ, ସେମାନେ ଅନ୍ୟମାନଙ୍କ କଥାରେ ପଡ଼ି ଚାଷ ଉପରେ ଓ. ଏଲ. ଆର.

କେସ୍‌ମାନ କଲେ । ସେ ହେଲା ପରେ ଲିଟିଗେସନ୍ ବଢ଼ିଲା, ତା ସଙ୍ଗେ ସଙ୍ଗେ ପୁରୁଣା ସାମାଜିକ ସମ୍ପର୍କ ବି ଗଲା ।

ହେଲା ଏବେ ସମାଜ, ବଦଳିବା ସଙ୍ଗେ ସଙ୍ଗେ ସାମାଜିକ ସମ୍ପର୍କ ମଧ୍ୟ ପରିବର୍ତ୍ତିତ ସଂସାର ଭିତରେ ବଦଳିଲା । ଏ ପରିବର୍ତ୍ତନକୁ କେହି ରୋକି ପାରିବେନି । ଏବେ ସରକାର ମଜୁରିଆମାନଙ୍କପାଇଁ 'ସର୍ବନିମ୍ନ ମଜୁରି' ସାବ୍ୟସ୍ତ କଲେ । ଯେଉଁମାନେ ତା'ଠାରୁ କମ ମଜୁରି ଦେଇ କାମ କରେଇବେ, ସେମାନେ ସର୍ବନିମ୍ନ ମଜୁରି ଆଇନ ଅନୁଯାୟୀ ଦଣ୍ଡିତ ହେବେ ।

ସେ କଥା ମଧ୍ୟ ମଫସଲ ଅଞ୍ଚଳରେ ପ୍ରଚାର ହେଲା । ମଜୁରିଆମାନେ ସର୍ବନିମ୍ନ ମଜୁରି ନଦେଲେ କାମ କରିବେନି ବୋଲି କହିଲେ । ଚାଷୀମାନେ ଏଥିରେ ରାଜିହେଲେ । ଦରକାର (ରୁଆରୋଇ, ବିଲ ବଗୁଚଛ) ସମୟରେ ମଜୁରି ଦେଢ଼ାବି ଦେବାକୁ ରାଜି ହେଲେ । କିନ୍ତୁ ମଜୁରିଆମାନେ ଆଠଘଣ୍ଟା କାମ କରିବାକୁ ପ୍ରସ୍ତୁତ ନୁହଁନ୍ତି । ସେମାନେ କହିଲେ, ଆଗେ ଯେପରି ସେମାନେ ଦିନ ନଅଟା ଦଶଟା ବେଳକୁ ଆସି ଗୋଟେ ବେଳକୁ ଯାଇ ପୁଣି ତିନଟା ଚାରିଟା ବେଳକୁ ଆସି ସନ୍ଧ୍ୟା ଆଗରୁ ଯାଉଥିଲେ ସେଇପରି କରିବେ । ଚାଷିମାନେ କହିଲେ ତୁମେ ଯେତେବେଳେ ମଜୁରି ଠିକ୍ ଠିକ୍ ଦାବୀ କରୁଛ କାମ କାହିଁକି '୮ ଘଣ୍ଟା' ନ କରିବ ? ତାଙ୍କ କଥା ଶୁଣି ଏମାନେ କହିଲେ ସର୍ବନିମ୍ନ ମଜୁରି ନଦେଲେ, ଆପଣମାନଙ୍କ ବିରୁଦ୍ଧରେ ଆମେମାନେ ଆଇନର ସହାୟତା ନେଇ ପାରିବୁ, କିନ୍ତୁ ଆଠଘଣ୍ଟାରୁ କମ୍ କାମକଲେ ଆଇନ୍ ଅନୁଯାୟୀ ଆମ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାର ଅଧିକାର ଆପଣମାନଙ୍କର ନାହିଁ ।

ତା' ବି ସତ କଥା, ଚାଷୀ ଯେ ଚାଷ କରୁଛି ସେ ତ ଆଉ ପଚାଶ ମାଇଲ ଦୂରରୁ ମଜୁରିଆ ଯୋଗାଡ଼ କରି ଚାଷ କରିବନି ? ଏଇମାନଙ୍କୁ ଧରି ଚାଷ କରିବ । ଡେରିରେ କାମକୁ ଆସିଲେ ବୋଲି ମଜୁରି କାଟିଲେ ଏମାନେ 'ମେଳିବାନ୍ଧି' ତା' କାମକୁ ଆସିବେନି । ଚାଷୀ ବିଚରା ମଲା । ଚାଷ ଛାଡ଼ିବ, ନହେଲେ ଏମାନଙ୍କ କଥା ଅନୁଯାୟୀ ଚାଲିବ । ଏବେ ଯାହା ଦେଖୁଛନ୍ତି ସେଇଆ । ମଫସଲରେ ଚାଷୀମାନେ ଏହିପରି ଅବସ୍ଥାରେ ହଇରାଣ ହେଉଛନ୍ତି । ମଜୁରିଆଙ୍କ ମଜୁରି ଆହୁରି ଅଧିକା ହେଉ, ·ଚାଷୀମାନେ ଦବାକୁ ପ୍ରସ୍ତୁତ ଅଛନ୍ତି । କିନ୍ତୁ ମଜୁରି ପାଇଁ ଯେଉଁ ସମୟ ଦରକାର ତା' ନଦେଲେ ହବ କେମିତି ? ଏଇଥିଲାଗି ମଫସଲ ଅଞ୍ଚଳରେ ଗାଁ ଗାଁରେ 'ଚାଷୀ, 'ମଜୁରିଆଙ୍କ ଭିତରେ ଗଣ୍ଡଗୋଳ । ସେଇ ଗଣ୍ଡଗୋଳ ବେଳେବେଳେ ସାଂପ୍ରଦାୟିକ ଗଣ୍ଡଗୋଳରେ ପରିଣତ ହେଉଛି ।

ଗ୍ରାମସେବକ ବାବୁଙ୍କ ସଙ୍ଗେ ଇନ୍ଦ୍ର ଯାଇ ପଞ୍ଚୁ ସାହୁ ମିଠା ଦୋକାନରେ ପଶିଲେ । ଯେତେ ମନା କଲେ ବି ଗ୍ରାମସେବକବାବୁ ତାଙ୍କୁ କପେ ଚା ନଦେଇ ଛାଡ଼ିବାକୁ ଜିଦ୍ ଧରିଥାନ୍ତି । ଅଗତ୍ୟା ବାଧ୍ୟ ହୋଇ ଇନ୍ଦ୍ର ଯାଇ ପଞ୍ଚୁ ସାହୁଙ୍କ ଦୋକାନ ସାମନା କାଠ ବେଞ୍ଚ ଉପରେ ବସିଲେ । ତାଙ୍କ ଆଗରୁ ଆଉ କେତେ-ଜଣ ସାଇକେଲ ଡେରି ଚା ଗ୍ଲାସ ଧରିଥାନ୍ତି । ଗ୍ରାମସେବକ ବାବୁ ଚା ବରାଦ ଦେବାପାଇଁ ଦୋକାନ ଭିତରକୁ ପଶିଲେ । ଇନ୍ଦ୍ର ଦେଖିଲେ ସହରର ବାବୁମାନେ ଯେମିତି କ୍ଲବ କମ୍ବା ବାର୍ ଭିତରେ ପଶି ଗୋଟେ 'ପେଗ' ନମାଇଲେ, ତାଙ୍କ କଣ୍ଠ ସଫା ହୁଏନା, ମଫସଲରେ ମଫସଲିଆ ବାବୁମାନେ କପେ ଚା ନପିଇଲେ ତାଙ୍କ କଣ୍ଠ ପରିଷ୍କାର ହୁଏନା । ପଞ୍ଚୁ ସାହୁ ଦୋକାନ ଚା' ବଜାରରେ ବିଖ୍ୟାତ । ଦେଶ୍ର ଶ୍ରେଷ୍ଠ ଶ୍ରେଷ୍ଠ ବାବୁଭାଇୟାଙ୍କଠାରୁ ଆରମ୍ଭକରି ଲାଇନ ବସ ଡ୍ରାଇଭର, ସ୍କୁଲ, କଲେଜ ଟୋକା ସମସ୍ତଙ୍କ ଭିଡ଼ ପଞ୍ଚୁ ସାହୁଙ୍କ ଦୋକାନରେ ।

ଇନ୍ଦ୍ରଙ୍କ ହାତକୁ ଚା ଗ୍ଲାସଟା ବଢ଼େଇ ଦେଇ ଗ୍ରାମସେବକବାବୁ ତାଙ୍କ ପାଖେ ବେଞ୍ଚ ଉପରେ ବସି ପଞ୍ଚୁ ସାହୁ ଚା'ର ତାରିଫ କରୁଥାନ୍ତି । ଏଇ ସମୟରେ ଦଳେ ଟୋକା ଖାତା ପେନ୍ସିଲ ଧରି ପଞ୍ଚୁ ଦୋକାନ ସାମ୍ନାରେ ଠିଆହେଲେ । ପଞ୍ଚୁ ସାହୁ ଏମାନଙ୍କୁ ଦେଖୁ ଦେଖୁ ସକାଳୁ ସକାଳୁ ମାଟିଆ ଶଲ ମୁହଁ ଦେଖିଲେ ମୁହଁରେ ଯେପରିଭାବ ପରିସ୍ଫୁଟ ହୁଏ, ସେହିପରି ମୁହଁଟି କରି କ୍ୟାସ୍ ବାକ୍ସରୁ ଦଶଟା ଟଙ୍କା ଧରି ସେମାନଙ୍କ ଆଡ଼କୁ ବଢ଼େଇଲେ । ଦଶଟଙ୍କିଆ ନୋଟ ଦେଖି ଟୋକାଙ୍କଦଳ ଭିତରୁ ଜଣେ କହିଲା ନାଇଁ, ଆପଣଙ୍କର ଏବର୍ଷ କୋଡ଼ିଏ ଟଙ୍କା । ପଞ୍ଚୁ ସାହୁ କହିଲେ—"କାହିଁକି ·ଆରବର୍ଷତ ମୁଁ ଦଶଟଙ୍କା ଦେଇଥିଲି, ଏବର୍ଷ କିମିତି କୋଡ଼ିଏ ହେଇଗଲା ?" ତାଙ୍କ ପାଟିରୁ କଥା ନସରୁଣୁ ଆଉଗୋଟେ ଟୋକା କହିଲା ଆରବର୍ଷ କିମିତି ରସଗୋଲା ଗୋଟିକୁ ପନ୍ଦର ପଇସାରେ ବିକୁଥିଲ ଏବର୍ଷ କେମିତି ଟଙ୍କାଟେ କରି ଦେଲ ? ଚା' ଚାଳିଶ ପଇସା ଥିଲା ଏବେ ପନ୍ଦର । ବଜାର ଦର ବଢ଼ୁଛି, ଦଶହରା ଚାନ୍ଦା ବି ବଢ଼ିବ ।

ପଞ୍ଚୁ ସାହୁ ଅବାକ୍ ହୋଇ କିଛିକ୍ଷଣ ଚାହିଁଲା ପରେ, ଆଉ ପାଞ୍ଚୋଟି ଟଙ୍କା ବଢ଼ାଇଲେ । ପାଞ୍ଚୋଟି ଟଙ୍କା ଦେଖି ଟୋକାଦଳର ଲିଡର କହିଲେ—'ଆମେ ଏଠିକି କଅଣ ଭିକ ମାଗିବାକୁ ଆସିଛୁ ? ବଜାର କମିଟି ଡିସାଇଡ଼୍ କଲା ଦଶହରା, କାଳୀପୂଜା, କାର୍ତ୍ତିକେଶ୍ୱର ମେଢ଼ ·ହେବ, ସମସ୍ତଙ୍କ ଉପରେ ଚାନ୍ଦା ଫିକ୍ସ୍ ହୋଇଛି । ତମ ଚାନ୍ଦା ୨୦ ଟଙ୍କା । ଦେବତ ଦିଅ ନ ହେଲେ ଆମେ ଚାଲିଲୁ ।' କାଳ ବିଳମ୍ବ ନକରି ପଞ୍ଚୁ ସାହୁ କୋଡ଼ିଏ ଟଙ୍କା ବଢ଼ାଇଲେ । ଟଙ୍କା ଧରି ବାବୁମାନେ ଅନ୍ୟ ଦୋକାନକୁ ଚାଲିଲେ ।

ସେମାନେ ଗଲାପରେ ଗ୍ରାମସେବକ ବାବୁ କହିଲେ, ବୁଝିଲେ, କଟକରେ ଏ ଚାନ୍ଦାଭେଦା ମାଡ଼ ଖୁବ୍ ଜୋରରେ ଚାଲେ । ସାହି ସାହିରେ ଦୁର୍ଗାମେଢ଼, କାଳୀମେଢ଼, ମାସକ ପାଇଁ କଟିକିମାନେ ସବୁ ଭୁଲି ଯାଆନ୍ତି । ମଫସଲ ଅଞ୍ଚଳରେ ଦୋଳମେଲଣ, ତୀର୍ଥସ୍ଥାନ ମାନଙ୍କରେ ବାର୍ଷିକ ଯାତ୍ରା, ଗାଁ ଗାଁ ମାନଙ୍କରେ ନୃସିଂହ ଜନ୍ମ, ଭଗବତ୍ ଜନ୍ମ, ରଜ, ସୁନିଆ ପ୍ରଭୃତି ପର୍ବପର୍ବାଣିରେ ଯାତ୍ରା, ପାଲି ହେଉଥିଲା, ବଜାର ବସୁଥିଲା । ଏବେ ସେ ସବୁ ବନ୍ଦ ହୋଇ ମଫସଲ ଅଞ୍ଚଳରେ ଦୁର୍ଗା, କାଳୀ, ଲକ୍ଷ୍ମୀ, କାର୍ତ୍ତିକେଶ୍ୱର, ମହାଦେବ ମେଢ଼ ହେଲାଣି । ଆଗେ ଗୋଟିଏ ମେଢ଼ ହେଉଥିଲା, ଏବେ ଛ'ଟା ମେଢ଼ ହେଲାଣି । ଠିକ୍ କଟକ ପରି ।

ଏଥରେ ପୁଣି ଏ ଟୋକା ପଞ୍ଝାକ ଗଣେଶଙ୍କୁ ସନ୍ତ୍ରାସବାଦୀ ରୂପରେ ଠିଆ କଲେଣି ତ ପାର୍ବତୀଙ୍କୁ ହେମାମାଳିନୀ ରୂପରେ । ମହାଦେବଙ୍କୁ ଷଣ୍ଢରୁ ଓହ୍ଲାଇ ମାରୁତି ଗାଡ଼ିରେ ବସେଇଲେଣି । ଦଳେ ଲଫଙ୍ଗା ଟୋକା ଜୁଟିଗଲେ, କମିଟି ଗଢ଼ା ହେଲା, ମନଇଚ୍ଛା ଚାନ୍ଦା ଆଦାୟ । ତାଆର ହିସାବ ଏମାନଙ୍କୁ କିଏ ପଚାରୁଛି ନା, ପଚାରିବାର ସାହସ ଅଛି ? ଜୋର ଜବରଦସ୍ତ ଚାନ୍ଦା ନେବା, ଏମାନଙ୍କୁ କିଛି କହିଲେ, ଆପଣ ବଜାରରେ ଦୋକାନ କରିପାରିବେନି କି ଆପଣଙ୍କ ଦୋକାନ ପାଖେ ଗୋଟିଏ ଗରାଖକୁ ଏମାନେ ପୂରେଇ ଦେବେନି । ଖାଲି କଅଣ ଦୋକାନମାନଙ୍କରୁ ଏମାନେ ଚାନ୍ଦା ନେଉଛନ୍ତି ? ଏ ଲାଇନ୍‌ରେ ଯେତେ ବସ୍, ଟ୍ରକ, ଟ୍ୟାକ୍ସି, ମେଟାଡର ଚାଲୁଛି, ସେମାନେ ବି ଚାନ୍ଦା ଦେବାକୁ ବାଧ୍ୟ । ନ ଦେଲେ ଠେଙ୍ଗା ମାଡ଼ରେ ସେମାନଙ୍କ କାଚ ଭାଙ୍ଗିବ । ଏମାନଙ୍କୁ ଦେଖି, ଏ କଟକରାସ୍ତାରେ ଯେଉଁଠି ଯେଉଁଠି ଶ୍ରେଷ୍ଠ ଶ୍ରେଷ୍ଠ ବଜାର ଅଛି, ସେଠି ବି ମେଢ଼ ହେଲାଣି, ସେମାନେ ବି ଚାନ୍ଦା ଆଦାୟ କରୁଛନ୍ତି । କାହା ପାଖକୁ ଯାଇ କିଏ ଗୁହାରି କରିବ ?

ପୁଲିସଙ୍କୁ କହିଲେ ପୁଲିସ ଲେଖିକରି ଦିଅ ବୋଲି କହିବେ । "ଜୋର-ଜବରଦସ୍ତ" ଶବ୍ଦ ନଥିଲେ ପୁଲିସ ଧର୍ତ୍ତବ୍ୟ ଅପରାଧ ହୋଇ ପାରିବନି । ମାତ୍ର ଏକଥା କେଉଁ ବ୍ୟବସାୟୀ ଯାଇ ପୁଲିସ ପାଖେ କହିବ ? ଯେଉଁଦିନ ସେ ଖବର ଏମାନେ ପାଇବେ, ତା' ଦୋକାନ ରହିବ ନା ତା' ମୁଣ୍ଡ ରହିବ ? ସବୁଠାରୁ ସୁବିଧା ହେଲା ଯାହା ମାଗୁଛନ୍ତି, ଦେଇ ରକ୍ଷାପାଅ । ଏ ଯୁଗଟା ଚାନ୍ଦା ଯୁଗ ହୋଇଗଲା, ଯୁଆଡ଼େ ଯାଅ ବିଭିନ୍ନ ଆଳରେ ଚାନ୍ଦା । ବିନା ଚାନ୍ଦାରେ କିଛି ହୋଇ ପାରିବନି । ଚାନ୍ଦା ଦେଇ ଆମେ ସମସ୍ତେ ଚନ୍ଦା ହେଲୁଣି । ଏ ଦୋକାନୀ,

ଟ୍ରକବାଲା, ମେଟାଡ଼ର, ବସ—ଏମାନେ ଯେପରି ସରକାର, ଲୋକଙ୍କୁ ଠକୁଛନ୍ତି, ତାଙ୍କୁ ଏ ଟୋକାଦଳ ଭଲ ଭାବେ ନାଲିଆଖି ଦେଖେଇ ଚଳଉଛନ୍ତି । ମଝିରେ ଯାହା ଆମ ତୁମ ପରି ଲୋକ ହଇରାଣ ହରକତ ହବା କଥା ।

ତାଙ୍କ ମୁହଁରୁ କଥା ସରିଛି କି ନାହିଁ, ଗୋଟେ ଟ୍ରକ ଡ୍ରାଇଭରକୁ ଧରି ସେ ଟୋକା ପଞ୍ଝାକ ଚାନ୍ଦା ପାଇଁ ଭିଡ଼ା ଓଟରା କରୁଥାନ୍ତି । ଗ୍ରାମସେବକ ବାବୁ କହିଲେ, ଏ ଅବସ୍ଥା ଆମର ଏଠି ଏକା ନୁହେଁ, ସାରାଦେଶରେ ଯୁଆଡ଼େ ଯିବ ସେଇ ଅବସ୍ଥା । ଦେଖାଯାଉ କେବେ ଏ ଅବସ୍ଥା ସୁଧୁରିବ ।

( ୨୪ )

ଚା' ପିଇସାରିବା ପରେ ଗ୍ରାମସେବକବାବୁଙ୍କୁ କୃତଜ୍ଞତା ଜଣାଇ ଇନ୍ଦ୍ର ଚଞ୍ଚୁ ସାହୁ ଦୋକାନ ଛାଡ଼ିଲେ । ସେତେବେଳକୁ ସେ ଟୋକା ପଞ୍ଝାକ ଟ୍ରକ ଡ୍ରାଇଭରକୁ ହଲପଟାଟେ କରି ସାରି ଚାନ୍ଦା ଆଉ ତାଙ୍କ ସଙ୍ଗେ ଯୁକ୍ତିତର୍କ କରିଥିବା ଯୋଗୁ ଜୋରିମାନା ବାବଦକୁ ପଚିଶ ଟଙ୍କା ଆଦାୟକରି ସିଗାରେଟ ଟାଣୁଥାନ୍ତି । ଇନ୍ଦ୍ର ବଜାରରେ ଏ ଅବସ୍ଥା ଦେଖି ବାଟଭାଙ୍ଗି ଗାଁ ରାସ୍ତା ଧଇଲେ ।

ଭୋଦୁଅମାସ ଖରା ଚୁଇଁ ଚୁଇଁ ମାରୁଥାଏ । ମୁଣ୍ଡଫଟା ଖରା ସାଙ୍ଗକୁ ସରୁ ବାଲିଗୁଡ଼ାକ ନିଆଁ ପରି ଗରମ । ହାତରେ ଛତା ନାହିଁ କି ଗୋଡ଼ରେ ଯୋତା ନାହିଁ । ଜୀବନବିକଳରେ ବାଲିତକ ପାରହୋଇ ଗାଁ ଭିତରକୁ ପଶିଲା-ବେଳକୁ ବାଟ ଦେଢ଼ କିଲୋମିଟର ସେ ପାରିହୋଇ ଯାଇଥାନ୍ତି । ଦେହ ମୁଣ୍ଡରୁ ଗମଗମ ହୋଇ ଝାଳ ବୋହୁଥାଏ । ଶୋଷରେ ତଣ୍ଟି ଶୁଖି ଆଖିରୁ ଜୁଳୁ ଜୁଳିଆ ପୋକ ବାହାରିବା ଉପରେ । ସେ ଭାବିଲେ ପାଣିମୁନ୍ଦେ ନପିଇଲେ ଆଉ ଖୋଜେ ଚାଲିପାରିବେନି ।

ପାଣି ପିଇବାପାଇଁ ଇନ୍ଦ୍ର ଜଣକ ପିଣ୍ଡା ଉପରକୁ ଉଠି କବାଟ ଠକ୍ ଠକ୍ କଲେ । କିଛି ସମୟ ପରେ ଜଣେ ବୁଢ଼ୀ ବାହ୍ମୁଣୀ କବାଟ ଖୋଲି ଇନ୍ଦ୍ରଙ୍କୁ ନ ଚହ୍ନିବା ଆଖିରେ ଚାହିଁ ରହିଲେ । ଇନ୍ଦ୍ର ପାଣିମାଗି ତାଙ୍କ ପିଣ୍ଡା ଉପରେ ଲଥ୍‌କିନା ବସିପଡ଼ି, ଗାମୁଛାରେ ଦେହ ମୁଣ୍ଡର ଝାଳ ପୋଛୁଥାନ୍ତି । କିଛି ସମୟ ପରେ ବୁଢ଼ୀ ବାହ୍ମୁଣୀ ଗୋଟେ କଂସା ଢାଳରେ ଢାଳେ ପାଣି, ଆଉଗୋଟେ ପିତଳ ଗିଲାସ ଧରି ପହଞ୍ଚିଲେ । ଇନ୍ଦ୍ରଙ୍କ ବେଶଭୂଷାରୁ ବ୍ରାହ୍ମଣ ପିଲା ବୋଲି ସେ ଆଗରୁ ମନେ ମନେ ଭାବି ନେଇ ଥାଆନ୍ତି । ମାତ୍ର ପାଣି ଗିଲାସ ବଢ଼ାଇ ଦେବା ପୂର୍ବରୁ ସେ କେଉଁପାଟକର ଲୋକ ବୋଲି ବୁଢ଼ୀ ବୁଝି ନେଲେ ।

ଇନ୍ଦ୍ର ପାଣିପିଇ ଦମ ମାରିଲା ପରେ ବୁଢ଼ୀ ତାଙ୍କୁ ତାଙ୍କର କୁଶଳବାର୍ତ୍ତା ପଚାରି ସେ କୁଆଡ଼େ ଯିବେ ବୋଲି ବୁଝିଲେ । ଇନ୍ଦ୍ରଙ୍କ କଥାବାର୍ତ୍ତା ଆଉ ଅବସ୍ଥାରୁ ବୁଢ଼ୀଟି ବୁଝିନେଲା ଯେ ସେ ବିଚାରା ବଡ଼ ବ୍ୟସ୍ତ ହୋଇ ପଡ଼ିଛନ୍ତି । ଦିନ ସେତେବେଳକୁ ଗାଧୁଆବେଳ ଉପରେ । ବୁଢ଼ୀ ବାହ୍ମୁଣୀ କହିଲେ, 'ବାପ ଦିନ ଆସି ମୁଣ୍ଡଉପରେ ହେଲେଣି । ଆଉ କୁଆଡ଼େ ଯିବୁ ? ଆମେତ ଗରିବ ଲୋକ । ଯାହା ଘରେ ଅଛି—ଶାଗ, ପଖାଳ ନଭିବ ଗଣ୍ଡେ ଖାଇ ଦେଇ, ସ୍ତ୍ରୁଇ ନେଉଟିଲେ ତୋ ବାଟରେ ଯିବୁ । ଯେତେହେଲେ ତୁ ମୋର ଅତିଥି ଅଭ୍ୟାଗତ, ପୁଣି ବ୍ରାହ୍ମଣ ପିଲା । ପାଣି ପିଇଲୁଣି ଯେତେବେଳେ, ଗଣ୍ଡେ ମୁହଁରେ ନଦେଇ ନଗଲେ, ମୋତେ ପାପ ଲାଗିବ । ଆଜି କାଲି ପିଲାମାନେ କଅଣ ଅତିଥି, ଅଭ୍ୟାଗତ କଥା ଭାବୁଛନ୍ତି ? ମୁଁ ବଞ୍ଚିଥିଲା ପର୍ଯ୍ୟନ୍ତ ଏ ଘରୁ କେହି ଅତିଥି ଖାଲି ପେଟରେ ଫେରିବେନି । ମଲା ପରେ ପିଲାମାନେ ପଚାରନ୍ତୁ, ନପଚାରନ୍ତୁ କିଏ ଆସୁଛି ଦେଖିବାକୁ ? ଏ ଯୁଗତ ସେଇଆ ହେଲା ବାବୁ, ଆଉ କାହାକୁ ଦୋଷ ଦେବା ?

ବୁଢ଼ୀଟିର କଥାରେ ଇନ୍ଦ୍ର ଭାବବିହ୍ୱଳ ହୋଇପଡ଼ିଲେ । ଏତେ ଦିନ ମର୍ତ୍ତ୍ୟଗସ୍ତ କଲାପରେ ମା' ପରି ସ୍ନେହ ସେ କେଉଁଠି ପାଇନଥିଲେ । ଯାହା ହେଉ ଏପରି ଲୋକ ଏବେବି ବଞ୍ଚିଛନ୍ତି । ଏମାନେ ଗରିବ ହେଲେ ବି ଶହେ ଗୁଣରେ ଧନୀମାନଙ୍କଠାରୁ ଭଲ । ଇନ୍ଦ୍ର ବୁଢ଼ୀଙ୍କ କଥାରେ ରାଜିହେଲେ । ବୁଢ଼ୀ ଝିଅ ନାଁ ଧରି ଡାକି ଗୋଟେ ସଉପମଶିଣା ଆଉ ପାନ ଡାଲଟା ଆଣିବାକୁ କହିଲେ । ଝିଅଟି ପାନଡାଲା ଆଉ ସଉପମଶିଣା ଧରି ଆସି ଠିଆ ହେଲା । ବୁଢ଼ୀ ପିଣ୍ଡା ଉପରେ ସଉପ ପକେଇ, ପାନ ଭାଙ୍ଗିବା ପାଇଁ ଡାଲାଟି ଝିଅ ହାତରୁ ନେଇ, ଝିଅକୁ ଜଲଦି ଜଲଦି ରୋଷେଇ କରିବାକୁ ବରାଦ ଦେଲେ ।

ପାନ ଭାଙ୍ଗି, ଦିଖଣ୍ଡ ଖିଲ ଇନ୍ଦ୍ରଙ୍କ ହାତକୁ ବଢ଼ାଇଲା ଭିତରେ ବୁଢ଼ୀ ତାଙ୍କ ନିଜର ପରିବାର ବିଷୟରେ ଇନ୍ଦ୍ରଙ୍କ ଆଗେ କହୁଥାନ୍ତି । ଗୋଟିଏ ବୋଲି ପୁଅକୁ ଜମି ବିକି ଏମ୍. ଏ. ପର୍ଯ୍ୟନ୍ତ ପଢ଼ାଇଛନ୍ତି, ଘରେ ଦିଓଟି ବଢ଼ିଲା ଝିଅ । ଗାଁ ପାଖ କଲେଜରୁ ଆଇ. ଏ. ପାଶ୍ କଲା ପରେ ଘରେ ଅଛନ୍ତି । ବାହାଘର କରିବେ ବୋଲି ଚାରିଆଡ଼େ ଆଖି ବୁଲଉଛନ୍ତି, ମାତ୍ର ଏ ପର୍ଯ୍ୟନ୍ତ କୁଆଡ଼େ କିଛି ଠିକ୍ ନ ହୋଇଥିବା ହୋଗୁ ବୁଢ଼ୀ ମନରେ ଭୀଷଣ ଅଶାନ୍ତି । ସ୍ୱାମୀ ପୁରୋହିତ କରି ଯାହା କିଛି ରଖି ଯାଇଥିଲେ, ବୁଢ଼ୀ ତାକୁ ବିକି ଭାଙ୍ଗି ପୁଅଝିଅଙ୍କୁ ଶିକ୍ଷିତ କଲା । ଏବେ ସେମାନେ ପାଠ ପଢି ବେକାର । ସ୍ୱାମୀ ମରିବାର ପନ୍ଦର ବର୍ଷ ହେଲେ ବି ବୁଢ଼ୀ ଆଶା କରୁଛି ପୁଅ ଚାକିରି କରିବ, ଝିଅ ବାହା ହେବ, ବୁଢ଼ୀ

ତା'ପରେ ମରିବ । ଆଶାର ବୈତରଣୀରେ ସେ ଭାସୁଛି । ବିଧବା ବୁଢ଼ୀର ଦୁଃଖରେ ଇନ୍ଦ୍ର ଦୁଃଖୀ ହେଲେ । ଘରେ ଖାଇବାକୁ ନାହିଁ ହେଲେ ଅତିଥି ସେବାରେ ଅବହେଳା ନାହିଁ ।

ବିଧବା ବ୍ରାହ୍ମଣୀ ଘରେ ମଧ୍ୟାହ୍ନ ଭୋଜନ କରି ସାରିଲା ପରେ, ଇନ୍ଦ୍ର ତାଙ୍କ ଦାଣ୍ଡପିଣ୍ଡା ଉପରେ ବିଶ୍ରାମ ନେଉଥାନ୍ତି । ମନେ ମନେ ଭାବୁଥିଲେ, ବହୁଦିନ ପରେ ଦିବ୍ୟ ଭୋଜନଟିଏ ମିଳିଲା ।

ଏହି ସମୟରେ ବୁଢ଼ୀ ପାନଡାଲା ଧରି, ତାଙ୍କ ପାଖେ ବସି ପାନ ଭାଙ୍ଗିବାକୁ ଆରମ୍ଭ କଲେ । ପାନ ଭାଙ୍ଗୁ ଭାଙ୍ଗୁ ବୁଢ଼ୀ କହିଲେ—"ବୁଝିଲୁ ପୁଅ, 'ତାଙ୍କୁ' ଧର୍ମରାଜା କେଉଁ ଦିନରୁ ସ୍ୱର୍ଗକୁ ନେଲା, ସେ ତରିଗଲେ । ସେମିତି ପୁଣ୍ୟ କରିଥିଲେ ବୋଲି ସିନା ଏ ନର୍କରୁ ଶୀଘ୍ର ପଳେଇଲେ, କିନ୍ତୁ ମୋତେ ଏଇଠି ଘାଣ୍ଟି ହେବାକୁ ଛାଡ଼ି ଦେଇ ଗଲେ । ଦି' ଦିଟା ବଢ଼ିଲା ଝିଅ, ବୟସ ବାଇଶି ଉପରେ ହେଲାଣି । କଲେଜରେ ଆଇ: ଏ:, ବି: ଏ: ପର୍ଯ୍ୟନ୍ତ ପଢ଼େଇଲି । ପୁଣି ତାଙ୍କ ଉପରେ ପୁଅ । କଟକରୁ ଏମ୍: ଏ: ପାଶ୍ କଲା ପରେ ପାଞ୍ଚବର୍ଷ ହେଲା ଘରେ ବସିଛି । ମାସକୁ ମାସ ଏ ପରୀକ୍ଷା ଦେବ, ସେ ପରୀକ୍ଷା ଦେବ କହି ଦୁଇଶହ, ତିନିଶହ ଟଙ୍କା ନଉଛି । ତା' ଭାଗ୍ୟ ଏ ପର୍ଯ୍ୟନ୍ତ କିଛି କୁଆଡ଼େ ହେଲାନି । ଭାବୁଥିଲି, ଭାଇଟା କୁଆଡ଼େ ଲାଗି ଯାଇଥିଲେ, ଏ ଝିଅମାନଙ୍କୁ ଉଠେଇ ଦେଇ ଥାନ୍ତା । ପୋଡ଼ା କପାଳରେ ସେ ଭାଗ୍ୟ ଆସିବ କେଉଁଠୁ ?"

ଏତିକି କହି ବୁଢ଼ୀ ପାନ ଖଣ୍ଡିଏ ଇନ୍ଦ୍ରଙ୍କ ହାତକୁ ବଢ଼େଇଲେ । ପାନଖିଲିଟି ହାତରୁ ନେଇ ଇନ୍ଦ୍ର ପଚାରିଲେ, "ମାଉସୀ, ଆପଣଙ୍କ ଝିଅମାନେ ତ ସୁନ୍ଦର, ଶିକ୍ଷିତା । ଘର କାମ ଦାମରେ କିଏ ଖୁଣିବାକୁ ନାହିଁ, ତାଙ୍କ ପାଇଁ ପାତ୍ର ମିଳୁ ନାହାଁନ୍ତି ?"

ବୁଢ଼ୀ କହିଲେ "ମିଳନ୍ତେନି କାହିଁକିରେ ପୁଅ, ଅସଲ 'କେତେ ଦେବ' । ମୋ ଝିଅ ଠାରୁ କଅଣ ଏ ଗାଁରେ ଏତେ ସୁନ୍ଦର ନା ଗୁଣରେ ଝିଅ ଅଛନ୍ତି ? କିନ୍ତୁ ସେମାନଙ୍କ ଭିତରୁ କିଏ ଦି'ବର୍ଷ କିଏ ତିନିବର୍ଷ ହେଲା ବୋହୂ ହୋଇ ଘର ସଂସାର କଲେଣି । ଏଇ, ଆମ ପଡ଼ିଶା ଘର ଝିଅ, ସେ ଆରବର୍ଷ ବାହା ହୋଇ ଯାଇଥିଲା । ଏ ବର୍ଷ ପୁଅ ଧରି ଆସିଛି, ତା ମା'ର ଆନନ୍ଦ ଦେଖିବ କିଏ ? ମୋର କଅଣ ଦୁଃଖ ହଉନି ? କରିବି କଅଣ ? ସେମାନଙ୍କ ଘରେ ପଇସା ଥିଲା, ବାପ ରୋଜଗାରି, ମଟରସାଇକେଲ, ଟିଭି ସବୁଦେଲେ ଜୋଇଁ କାହିଁକି ଅଭାବ ହବ ! ଝିଅ ଗୁଣକୁ ନା ରୂପକୁ କିଏ ଦେଖୁଛି ? ଆମର ବାପା, ସେ ସମ୍ବଲ

କାହିଁ ଯେ ଝିଅ ବାଇଶାଙ୍କୁ ଉଠାଇବ ? ଭାବିଥିଲି ଝିଅଟି ସୁନ୍ଦର, ପାଠ ଦି ଅକ୍ଷର ପଢ଼ିଲେ କୋଉଁ ଅଭାବ ହେବେନି । ଏବେ ପାଠ ପଢ଼େଇ ପାଣ୍ଟି ହେଉଛି ।''

ଇନ୍ଦ୍ର କହିଲେ —''ପାଠ ପଢ଼େଇ ଭଲ କଲେ ମାଉସୀ ! ଆଜି କାଲି ଯୁଗରେ ଝିଅମାନେ ପାଠ ନ ପଢ଼ିଲେ ସଂସାର ବିଷୟରେ ଜାଣିବେ କଅଣ ! ଯୁଗ କେଉଁଠି ହେଲାଣି !'' ବୁଢ଼ୀ କହିଲେ : ''ନାଇଁ ବାପା, ପ୍ରଥମେ ମୋର ଧାରଣା ସେଇଆ ଥିଲି, ଏବେ ଭାବୁଚି ମୋର ଭୁଲ ହୋଇଛି । ଦେଖୁନୁ, ଗୋଟେ ଝିଅ ଆଇ ଏ. ଆଉ ଗୋଟେ ବି ଏ ପାଶ୍ । କୋଉଁମାନେ ତ ସେମିତି ଆଇ. ଏ , ବି.ଏ, ହବା ଦରକାର ? ଆଉ କଅଣ ବି ଏ. ଝିଅକୁ ମାଇନର କୋଉଁ କଣବ, ନାଁ ଝିଅ ଏଥିରେ ରାଜି ହେବ ?''

ଇନ୍ଦ୍ର କହିଲେ ''ସତ କଥା ମାଉସୀ, ବାହା କଲେ ବି ସେମାନଙ୍କ ଭିତରେ ମନ ଠିକ୍ ରହିବନି । କାରଣ ଆମ ଦେଶରେ ସେପରି ମନୋଭାବ ସୃଷ୍ଟି ହୋଇନି । ସ୍ୱାମୀ-ସ୍ତ୍ରୀ ମଧ୍ୟରେ ଶିକ୍ଷାଗତ ଯୋଗ୍ୟତାର ଭାରସାମ୍ୟ ରକ୍ଷା ନ କଲେ ସେମାନଙ୍କ ପାରିବାରିକ ଜୀବନ ବହୁ କ୍ଷେତ୍ରରେ ସୁଖମୟ ହେଉନି ।

ଆଚ୍ଛା ମାଉସୀ, ଝିଅମାନଙ୍କୁ ଘରେ କାହିଁକି ବସେଇଛ ? ସେମାନେ ଚାକିରି ବାକିରି କଲେତ ତାଙ୍କ ମନ ଭଲ ରହନ୍ତା । ତା' ଛଡ଼ା ସେମାନେ ରୋଜଗାରକ୍ଷମ ହେଲେ ତାଙ୍କ ସଂସାର ଗଢ଼ିବା ପାଇଁ ଚେଷ୍ଟା କରନ୍ତେ । ଶିକ୍ଷିତା ଝିଅଙ୍କୁ ଘରେ ରଖି ଲାଭ କଅଣ ?''

ବୁଢ଼ୀ କହିଲା, ''ବଡ଼ ଝିଅ ଚାକିରି ପାଇଁ ବହୁତ ଚେଷ୍ଟା କଲାଣି, କିନ୍ତୁ ଚାକିରି ମିଳୁଛି କେଉଁଠି ? ଚାକିରି କରିବ କରିବ ବୋଲି, ବି.ଏ. ପରେ ଟାଇପ ଶିଖିଲା, ସାନଟା ସିଟି ଟ୍ରେନିଂ ନେଲା । ବନ୍ଦେଇଁଯାକ ଚାକିରି ପାଇଁ ଇଣ୍ଟରଭିଉ ଦେଇ ଦେଇ ଥେଇଆ ହେଲେଣି । ସବୁବେଳେ ମୋତେ କହୁଛନ୍ତି, ବିନା ଦିବାନବାରେ ଚାକିରି କିଏ ଦବ ? ସେ ଝିଅ ହଉ ବା ପୁଅ ହଉ । ମୋ ପାଖରେ କେଉଁଠି ପଇସା ଅଛି ଯେ, ଏମାନଙ୍କ ଚାକିରି ଲାଗି ହଜାର ହଜାର ଟଙ୍କା ଲାଞ୍ଚ ଘୁଷ ଦେବ ? ପୁଅ ପାଇଁ ତ ଏତେ ଚେଷ୍ଟା କରି ହେଲାନି, ଆଉ ଏମାନଙ୍କ କଥା ପଚାରୁଛି କିଏ ! ଏମାନଙ୍କୁ ଆଙ୍କ ସାଙ୍ଗେ ତାଙ୍କ ସାଙ୍ଗେ ସହରକୁ ପଠାଇ ଇଣ୍ଟରଭିଉ ଦବାରେ ମଫସଲରେ ସେମାନଙ୍କ ବଦନାମ ହେଲା ସିନା ଲାଭ କିଛି ହେଲାନି ।''

ଇନ୍ଦ୍ର କହିଲେ; ''କାହିଁକି ସ୍ତ୍ରୀ ଲୋକମାନଙ୍କ ପାଇଁ ସରକାର ଚାକିରି କ୍ଷେତ୍ରରେ ଅଲଗା ସୁବିଧା କରିଛନ୍ତି, ନାରୀ ଶିକ୍ଷାର ଉନ୍ନତି କଲେ କେତେ ନୂଆ ଯୋଜନା ତିଆରି କରୁଛନ୍ତି, ତା ସତ୍ତ୍ୱେ ଏମାନେ ଏତେ ହଇରାଣ ?''

ବୁଢ଼ୀ କହିଲା, "ବାପାରେ ସେ ଯୋଜନାମାନ ଖାଲି ଯୋଜନାରେ ରହୁଛି, ନହେଲେ, ସହରରେ ଥିବା ଲୋକ ତା' ଫଳ ଭୋଗ କରୁଛନ୍ତି । ଆମ ଗରିବ ଗୁରୁବାଙ୍କ କଥା ପଚ୍ଚାରେ କିଏ ? ଦେଖୁଛ ତ ତମ ଆଖି ଆଗରେ, ଏ ଦି' ଝିଅ ଦି' ଡାନବର୍ଷ ହେଲା ଶ୍ରୀକର ପାଇଁ ଦଉଡ଼ି ଦଉଡ଼ି କେମିତି ହେଲେଣି ! ମୁଁ କାହିଁକି ତାଙ୍କୁ ପାଠ ପଢ଼େଇଲି ବୋଲି ମତେ ଏଇଲେ ଦୋଷ ଦେଉଛନ୍ତି !"

ବୁଢ଼ୀ କହୁଥିଲେ "ସରକାର ଏବେ ଯୌତୁକ ଆଇନକୁ କଡ଼ାକଡ଼ି ଭାବେ ଲାଗୁ କରିବାକୁ ଆଦେଶ ଦେଇଛନ୍ତି । ସେଦିନ କଟକରୁ ଫେରି ମୋ ପୁଅ ଖବର କାଗଜ ପଢ଼ି ମୋତେ ଶୁଣାଉଥିଲା । ଶୁଣିତ ଭାରି ଖୁସି ହେଲି । ଦେଶ ସ୍ୱାଧୀନ ହେଲା ଦିନଠାରୁ ଆମ ଦେଶରେ ତ ବହୁତ ଆଇନ ହେଲାଣି । ସବୁ ଆଇନ ଲୋକଙ୍କ ହିତ ଦୃଷ୍ଟିରୁ ହଉଛି । ହେଲେ, ଏ ନିଆଁ ଲଗା ଲୋକଗୁଡ଼ାକ ସେ ଆଇନକୁ ମାନିଲେ ସିନା ! ମୋ ଝିଅ କହୁଥିଲା, 'ଯୌତୁକ ଆଇନ'ରେ ଏବେ କୁଆଡ଼େ କୁହାଯାଇଛି, ଯେଉଁମାନେ ଯୌତୁକ ନେବେ ସେ ଜେଲ ଯିବେ ଆଉ ଯେ ଦବ ସେ ଜେଲଯିବ, ପୁଣି ଯେଉଁ ବନ୍ଧୁବାନ୍ଧବ ମାନେ ଝିଅ ଜୋଇଁଙ୍କୁ ଯାହାସବୁ ଉପହାର ଦେବେ ତାର ଗୋଟେ ଲିଷ୍ଟ କରାଯିବ । ଲିଷ୍ଟ ନକଲେ ମଧ୍ୟ ଜେଲ ଦଣ୍ଡ ହେବ ।

ଭାରି ଭଲ ହୋଇଛି । ଏ ଆଇନ ବହୁ ଆଗରୁ ହବାର ଥିଲା । କିନ୍ତୁ ବାପା, ମୋତେ କହିଲୁ, ଏ ଆଇନ କାର୍ଯ୍ୟକାରୀ ହୋଇପାରିବତ ? ଆଉ ଦିନେ ମୋ ପୁଅ କହୁଥିଲା ଆମ ଦେଶରେ କୁଆଡ଼େ 'କଳା' ଟଙ୍କା ଯେତିକି 'ଧଳା' ଟଙ୍କା ସେତିକି । କଳାଟଙ୍କା ଗୁଡ଼ାକ ଯଦି 'ଧଳା' ହୋଇ ଯାଆନ୍ତା ତାହେଲେ କୁଆଡ଼େ ଆମର 'ଅଭାବ' ରୁହନ୍ତାନି କି ଲୋକମାନେ ଏତେ ହଇରାଣ ହରକତ ହୁଅନ୍ତେନି । ଏ ଯୌତୁକ ଆଇନ ହେଲା, ପୁଣି ସେ 'କଳାଟଙ୍କା'ର କାରବାର ବଢ଼ିବନି ? ଉପରକୁ ସମସ୍ତେ ଭଲ । ଯୌତୁକ ନଦେଇ ବିବାହ କରୁଛନ୍ତି ବୋଲି କେଉଁ ବଡ଼ବଡ଼ଆଙ୍କୁ ଡାକି ଝିଅ ଜ୍ୱାଇଁଙ୍କୁ ଆଶୀର୍ବାଦ କରାଇବେ । ଭିତରେ ଭିତରେ କଳାଟଙ୍କା ଏପଟ ଘରୁ ଯାଇ ସେପଟ ଘରେ ପଶିବ । ମୁଁ ତ ମଫସଲି ବୁଢ଼ୀଲୋକ । ଏ ପିଲାମାନେ ଯାହା ତାଙ୍କ ଭିତରେ କଥାବାର୍ତ୍ତା ହୁଅନ୍ତି ତାଙ୍କରି ଠାରୁ ଶୁଣି କହୁଛି । ସେମାନେ କଥାବାର୍ତ୍ତା ହେଉଥିଲେ, ଏ ଆଇନରେ ଉପହାର ଜିନିଷ ପତ୍ର ଦେଲେ ସିନା ଲିଷ୍ଟ କରି ଦେଖାଇବେ, ଯଦି କଥାବାର୍ତ୍ତାରେ ବନ୍ଧୁବାନ୍ଧବ ମାନଙ୍କୁ ଇଙ୍ଗିତ ଦିଆଯିବ—ଯାହା ଦବ ଟଙ୍କା ଆକାରରେ ଏବଂ ଆଗତୁରା, ତାହେଲେ କେମିତି ଲିଷ୍ଟ ହେବ ? ଯେ ଶହେଟଙ୍କା ଉପହାର ପ୍ରକୃତରେ ଦେଲା, ତା' ନାମରେ ଯଦି କୋଡ଼ିଏ ଟଙ୍କା ଦେଖାଯାଏ, ତାକୁ ଧରିବାର ଉପାୟ

କଅଣ ? ବାକି ଯେଉଁ ଅଶୀ ଟଙ୍କା ରହିଲା, ସେତ ପୁଣି 'କଳା ଧନ' ଆଡ଼କୁ ଗଲା । ଏ ବଡ଼ବଡ଼ିଆଙ୍କୁ ଧରିବା ମହାକଷ୍ଟ । ସେଇମାନେ ଯେତେବେଳେ ଆଇନ କରୁଛନ୍ତି, ଏସବୁ କଅଣ ସେମାନେ ଜାଣିପାରୁନାହାନ୍ତି ? ଆଗେ ଥରେ ପଚିଶ ଜଣରୁ ଅଧିକା ବାହାବ୍ରତଘରେ ଖୋଇ ପାରିବେନି ବୋଲି ଆଇନ ହେଲା । କିଏମେ ଆଇନ୍ ମାନିଲା ? ଆଇନଟା ତ କିଛି ଖରାପ ନଥିଲା ! ଦେଶରେ ଯେଉଁଠି ହଜାର ହଜାର ଲୋକ ଦିନକୁ ପେଟପୂରା ଦିଓଳି ଖାଇବାକୁ ପାଉନାହାନ୍ତି, ସେଠି ଅଯଥା ବଡ଼ିମା ଦେଖାଇବା ପାଇଁ ଖାଇବାକୁ ପାଉଥିବା ଲୋକମାନଙ୍କୁ ଖୁଆଇବାରେ ଲାଭ କଅଣ ?

ସବୁ ଆଇନ୍ ଅବଶ୍ୟ ଲୋକମାନଙ୍କ ହିତପାଇଁ ହଉଛି । ସବୁଠାରୁ ବଡ଼ କଥା ହେଲା, ଯେଉଁ ଲୋକମାନେ ଏ ଆଇନ୍ କରୁଛନ୍ତି, ଆଉ ଯେଉଁମାନେ ଏ ଆଇନକୁ ଲାଗୁକରିବେ, ସେମାନେ ଆଇନ୍ ବୁଝିବା ଦରକାର । ଆମ ତୁମକୁ କହି-ଦେଲେ ଯଥେଷ୍ଟ ହେବନି । ଏ ଆଇନ୍ ହେଲେବି, ମୋ ଝିଅକୁ କିଏ ବାହା ହବାକୁ ଆସୁଛି, ସେଇ ଅପେକ୍ଷାରେ ଅଛି । ମୋ ପିଲାମାନେତ ଖୁବ ଖୁସି । ଦେଖିବାକୁ କିଏ ଅସୁନ୍ଦର ନୁହଁ କି ଅଶିକ୍ଷିତ ନୁହଁ । ଯୌତୁକ ଯେଉଁଠି ଉଠିଗଲାଣି, ମୋ ଝିଅମାନେତ ଆଗେ ସୁବିଧା ପାଇବେ ବୋଲି ମୁଁ ଭାବୁଛି ।''

ଇନ୍ଦ୍ର ବୁଢ଼ୀକଥା ଶୁଣି କହିଲେ, ''ଯାହା କହିଲ ମାଉସୀ ସତକଥା । କିନ୍ତୁ ଆଜକାଲିକା ଟୋକାମାନେ ସିନା ଗୁଣ ଚହିଁଲେ ହେବ ? ଏମାନେତ ଭେଜାଲ ଜିନିଷ ଖାଇ ଖାଇ ଏମାନଙ୍କ ମନ ଭେଜାଲିଆ ଧରିଗଲାଣି । ଗୁଣର ଜିନିଷ ଏମାନଙ୍କୁ ଅଗୁଣର ଦିଶିବ ଆଉ ଅଗୁଣର ବେକରେ ଏମାନେ ଫୁଲହାର ପକେଇବେ । ଦେଖିବା, ଏ ଆଇନତ ଏମାନଙ୍କ ପାଇଁ ଗୋଟେ ଔଷଧ । କେତେଦୂର ଏମାନଙ୍କର ଭେଜାଲ ମିଶା ମନକୁ ବାଟକୁ ଆଣୁଛି ।''

କଥାବାର୍ତ୍ତା ଭିତରେ ବୁଢ଼ୀ ଆଉଖଣ୍ଡେ ପାନ ଭାଙ୍ଗି ଇନ୍ଦ୍ରଙ୍କ ଆଡ଼କୁ ଖିଲିଟି ବଢ଼େଇଲେ । ଇନ୍ଦ୍ର ସେ ଖଣ୍ଡିକ ନେଇ ତାଙ୍କ ପାଟିରେ ପୂରାଇ ତାଙ୍କ ଘରୁ ଉଠିଲେ ।

( ୧୭ )

ବ୍ରାହ୍ମଣସାହି ପାରହୋଇ ଗାଁ ମୁଣ୍ଡରେ ପହଞ୍ଚିବା ପୂର୍ବରୁ ଇନ୍ଦ୍ର, ମହାଦେବ ମନ୍ଦିର ପାଖେ ଖୁବ୍ ଜୋରରେ ପାଟି ତୁଣ୍ଡ ହବାର ଶୁଣି ପାରିଲେ । ଘଟଣାଟା ବୁଝିବାକୁ ତାଙ୍କ ମନ ବଳିଲା, ତେଣୁ ସେ ମନ୍ଦିର ଆଡ଼କୁ ଚାଲି ଚାଲି ଗଲେ ।

ମନ୍ଦିର ପାଖେ ପହଞ୍ଚି ଦେଖିଲେ, ମନ୍ଦିର ବେଢ଼ା ଆଗରେ ଗୋଟେ ପଚିଶ, ଛବିଶ ବର୍ଷର ଯୁବକ ଅଚେତ୍ ଅବସ୍ଥାରେ ପଡ଼ିଛି । ବିଲରେ କାମ କରୁଥିବା ସମୟରେ ତାକୁ ଗୋଖର ସାପ ମାରିଛି । ସାପ ମାରିବା ସଙ୍ଗେ ସଙ୍ଗେ ଯୁବକ ଅଚେତ୍ ହୋଇ ପଡ଼ିଗଲା, ଆଉ ତା ପାଖ ବିଲରେ କାମ କରୁଥିବା ଗ୍ରାମବାସୀମାନେ ମନ୍ଦିର ପାଖକୁ ଟେକି ଆଣି ପକାଇଛନ୍ତି । ସେତେବେଳ ପର୍ଯ୍ୟନ୍ତ କୌଣସି ପ୍ରକାର ଚିକିତ୍ସା ଆରମ୍ଭ ହୋଇନଥାଏ ।

ଇନ୍ଦ୍ର ଲୋକ ଗହଳି ଠେଲି ସାପ କାମୁଡ଼ିଥିବା ଯୁବକକୁ ଦେଖିଲେ । ସେତେବେଳକୁ ତା ଦେହ ନେଳି ପଡ଼ି ଆସିଲାଣି । ପାଟିରୁ ଗରଳ ବାହାରୁ ଥାଏ । ସେ ଠିଆ ହୋଇଥିବା ଲୋକମାନଙ୍କୁ ପଚାରିଲେ, "ଡାକ୍ତରଖାନା ତ ଏଇ ବଜାର ଭିତରେ, ରୋଗୀକୁ ଡାକ୍ତରଖାନା ନନେଇ ଏଠି ପକେଇଛନ୍ତି କାହିଁକି ?"

ତାଙ୍କ କଥା ଶୁଣି ଜଣେ କହିଲେ "ନୀଳମଣି ବାବୁଙ୍କ ପାଖକୁ ଲୋକ ଯାଇଛନ୍ତି, ସେ ଆସିଲେ ଚିକିତ୍ସା ଆରମ୍ଭ ହେବ ।"

ଇନ୍ଦ୍ର କଥାଟା ବୁଝିପାରିଲେନି । ତେଣୁ ଏ ବିଷୟରେ ଅଧିକା ଜାଣିବାକୁ ସେଇ ଲୋକ ଜଣକୁ ପଚାରି ବୁଝିଲେ ଯେ ନୀଳମଣିବାବୁ ହେଉଛନ୍ତି ଏଠା ସରକାରି ହାଇସ୍କୁଲର ସହକାରି ପ୍ରଧାନ ଶିକ୍ଷକ; ଏ ଅଞ୍ଚଳର ବାସିନ୍ଦା ମଧ୍ୟ । ବିଗତ ୫ ବର୍ଷ ଧରି ଏ ଅଞ୍ଚଳରେ ଯେତେ ସାପ କାମୁଡ଼ା ଘଟଣାମାନ ଘଟିଛି, ରୋଗୀମାନେ ତାଙ୍କ ଚିକିତ୍ସା ଦ୍ୱାରା ଭଲ ହୋଇଛନ୍ତି । ପ୍ରାୟ ଦୁଇଶହରୁ ଅଧିକା ସାପକାମୁଡ଼ା ଲୋକଙ୍କୁ ସେ ଭଲକରି ସାରିଲେଣି ଏବଂ ସେ ଆସିଲେ ଯୁବକ ନିଶ୍ଚୟ ଭଲ ହେବେ ବୋଲି ଲୋକମାନଙ୍କ ଧାରଣା ।

ସେମାନଙ୍କ ମନୋବଳ ଦେଖି ଇନ୍ଦ୍ର ଆଶ୍ଚର୍ଯ୍ୟ ହେଲେ । ମର୍ତ୍ତ୍ୟରେ ଯେତେବେଳେ ବିଜ୍ଞାନ ଯୁଗ ଚାଲିଛି, ଲୋକମାନେ ପୁଣି ପୁରୁଣା ପଦ୍ଧତିକୁ ବିଶ୍ୱାସ କରୁଛନ୍ତି ! ଏମିତକି ଏପରି ଜୀବନ ମରଣର ଘଟଣାରେ ମଧ୍ୟ ନୀଳମଣି ବାବୁ ଲୋକଙ୍କୁ କେଉଁପରିଭାବେ ଚିକିତ୍ସା କରି ଭଲ କରିବେ, ସେଇ ଘଟଣା ଦେଖିବାକୁ ସେ ମଧ୍ୟ ଅନ୍ୟମାନଙ୍କ ପରି ଅପେକ୍ଷା କଲେ ।

ଏହି ସମୟରେ ନୀଳମଣି ବାବୁ ସାଇକେଲରେ ଆସି ଘଟଣା ସ୍ଥଳରେ ପହଞ୍ଚିଗଲେ । ସାପ କାମୁଡ଼ା ବ୍ୟକ୍ତିକୁ ଆଗ ଦେଖି ସଙ୍ଗେ ସଙ୍ଗେ ଚାରିଜଣ ଭେଣ୍ଡିଆ ଟୋକାଙ୍କୁ ତାଙ୍କ ଚିକିତ୍ସାରେ ସାହାଯ୍ୟ କରିବାପାଇଁ ବାହାରିବାକୁ କହିଲେ । ସେ ନିଜେ ତାଙ୍କର ପୋଷାକ ବଦଳାଇ ଗୋଟିଏ ଗାମୁଛା ପିନ୍ଧିଲେ । ମୁଣିରୁ କିଛି ଔଷଧ (ଚେରମୂଳି) ବାହାର କରି ତାକୁ ଜଣେ ପିଲାକୁ ଗୋଟିଏ ଶିଳାରେ

ବାଟିବାକୁ କହି ନିଜେ ରୋଗୀକୁ ଚିତ୍ କରି ଶୁଆଇ ମନ୍ତ୍ର ପାଠ କଲେ । ବଟା ଔଷଧକୁ ରୋଗୀର କ୍ଷତ ସ୍ଥାନରେ ଟିକିଏ ଲଗାଇଦେବା ପରେ, ତା' ପାଟିରେ ଔଷଧ ଦେଲେ । ରୋଗୀର ଔଷଧ ଖାଇବା ପରି ଶକ୍ତି ନଥିଲ, ମାତ୍ର ତା' ପାଟିରେ ଔଷଧ ପୂରାଇ ରଖିବାକୁ କହିଲେ ।

ସେଇ ଅନୁଯାୟୀ ତାଙ୍କ କଥା କାର୍ଯ୍ୟକାରୀ ହେଲା । ପ୍ରାୟ ଅଧଘଣ୍ଟାଏ ପର୍ଯ୍ୟନ୍ତ ଏ କାମ କଲାପରେ ଆଗରୁ ଯେଉଁ ଚାରିଜଣ ଯୁବକ ପ୍ରସ୍ତୁତ ହୋଇ ରହି-ଥିଲେ, ତାଙ୍କୁ ମହାଦେବ ପୁରୁଣା ପୋଖରୀ ମଧ୍ୟରୁ ପଙ୍କ ବାଲ୍‌ଟିଏ ଆଣିବାକୁ ଆଦେଶ ଦେଲେ । ସଙ୍ଗେ ସଙ୍ଗେ ପୋଖରୀ ମଧ୍ୟରୁ ପୁରୁଣା ପଙ୍କ ବୁହା ଆରମ୍ଭ ହେଲା । ନୀଳମଣି ବାବୁ ସେଇ ପଙ୍କକୁ ରୋଗୀର ଦେହରେ ଖୁବ୍ ଜୋରରେ ମାଲିସ କରିବା ଆରମ୍ଭ କଲେ । ପଙ୍କ ମାଲିସ୍ ପ୍ରାୟ ଦୁଇ ଘଣ୍ଟାରୁ ଅଧିକ ଚାଲିଲା ଏବଂ ସେଇ ସମସ୍ତ ମଧ୍ୟରେ ଦୁଇ ଶହ ବାଲ୍‌ଟି ପଙ୍କରୁ ଅଧିକା ରୋଗୀ ଦେହରେ ମାଲିସ୍ ହୋଇ ସାରିଥାଏ । ଗାଁର ପିଲାମାଇପେ ସମସ୍ତେ ଠିଆହୋଇ ଏ ଘଟଣା ଦେଖୁଥାନ୍ତି ।

କିଛି ସମୟପରେ ରୋଗୀ ହଲ୍‌ଚଲ୍ ହେବାକୁ ଲାଗିଲା । ନୀଳମଣି ବାବୁ ରୋଗୀ ଦେହରୁ ପଙ୍କ ପୋଛି ଅସ୍ତେ ଅସ୍ତେ ତାକୁ ବସାଇଲେ । କିଛି ସମୟ ପରେ ରୋଗୀ ପୂରା ସୁସ୍ଥ ହୋଇ ଉଠିଲା । ଗିଲାସେ ଗରମ ଦୁଧ ପିଇବା ପରେ ନୀଳମଣି ବାବୁ ରୋଗୀକୁ ଲୁଗା ବଦଳାଇ ଶୁଖିଲା ଲୁଗା ପିନ୍ଧି ଘରକୁ ଯିବାକୁ କହିଲେ ।

ଏ ଘଟଣା ଦେଖି ଇନ୍ଦ୍ର ପୂରା ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ଲୋକ ଫେରିଲା ପରେ ନୀଳମଣି ବାବୁଙ୍କୁ ଦେଖାକରି ଘଟଣା ବିଷୟରେ ଜାଣିବାକୁ ଚାହିଁଲେ । ସେ କେବଳ ତାଙ୍କଠାରୁ ଏତିକି ବୁଝିଲେ, ମନ୍ତ୍ର ଆଉ ନେଚରପାଥି ଦ୍ୱାରା ସାପ କାମୁଡ଼ା ଭଲ ହୋଇ ପାରିବ । ବର୍ତ୍ତମାନ ସୁଦ୍ଧା ସେ ପ୍ରାୟ ତିନିଶହରୁ ଅଧିକା ରୋଗୀଙ୍କୁ ଭଲ କରିସାରିଛନ୍ତି ଏବଂ ଏ ବିଷୟରେ ସେଇ ରୋଗୀମାନଙ୍କ ଠିକଣା ନେଇ ସେମାନଙ୍କ ପାଖରୁ ବୁଝିବାକୁ କହିଲେ ।

ଇନ୍ଦ୍ର ତାଙ୍କୁ ମନେ ମନେ ପ୍ରଶଂସା କରି ଭାବିଲେ, ବୈଜ୍ଞାନିକ ପଦ୍ଧତି ଚିକିତ୍ସାରେ ସାପ କାମୁଡ଼ାରୁ ମଣିଷକୁ ବଞ୍ଚାଇବା କଷ୍ଟକର ହେଉଥିବା ସମୟରେ ଏ ପୁରୁଣା ପଦ୍ଧତିରେ ଭଲ ହେବା ଆମର ପୁରୁଣା ଶାସ୍ତ୍ରର ଉପଯୁକ୍ତ ବ୍ୟବହାର ଛଡ଼ା କଅଣ ହୋଇପାରେ !

ବର୍ତ୍ତମାନ ନୀଳମଣି ବାବୁ ବଞ୍ଚିଛନ୍ତି । ତାଙ୍କ ଘର କଟକ ଜିଲ୍ଲା ନିଆଳୀ-ମାଧବ ରାସ୍ତା ପାଖ ଚୋଲଗ୍ରାମ । ଏ ବିଷୟରେ ତାଙ୍କ ଠାରୁ ବୁଝିବା ଉଚିତ୍

ଏବଂ ସେ ଯେତେବେଳେ ଜଣେ ଉଚ୍ଚଶିକ୍ଷିତ ବ୍ୟକ୍ତି, ଆମର ପୁରୁଣା ଶାସ୍ତ୍ରର ମହତ୍ତ୍ୱ ରକ୍ଷା କରିବାକୁ ଗବେଷକମାନଙ୍କୁ ସେ ନିଶ୍ଚୟ ସାହାଯ୍ୟ କରିବେ । କେବଳ ଆମ୍ଭେ ତାଙ୍କ ସାହାଯ୍ୟ ଲୋଡ଼ିଲେ ହେଲା । ନୀଳମଣି ବାବୁ ଅନର୍ଗଳ ଭାବରେ କହି-ଚାଲିଥାଆନ୍ତି :

"ପୂର୍ବକାଳରେ ରାଜା ରାଜୁଡ଼ାମାନେ ନୂଆ ନୂଆ 'ଗ୍ରାମ-ଶାସନ' ବସାଇ ପୁଣ୍ୟ ଅର୍ଜନ କରିବାର ଦୃଷ୍ଟାନ୍ତ ଅନେକ ଅଛି । ଏବେବି ସେମାନଙ୍କ ନାମ ଧାରଣ କରି ବହୁ ଗ୍ରାମ ଆମ ଦେଶରେ ପରିଚିତ । ଏ ସବୁ ପୁରୁଣା ଗାଁ ଗଣ୍ଡାରେ ନାନା ବ୍ୟବସାୟର (ପାଇକ) ଲୋକ ବସବାସ କରିବା ସାଥିସାଥି ପ୍ରତ୍ୟେକ ଗ୍ରାମରେ ଦେବାଦେବୀ ମନ୍ଦିରମାନ ଥିଲା । ସାଧାରଣତଃ ଗ୍ରାମରେ ପୂର୍ବମୁଣ୍ଡରେ ମହାଦେବ ମନ୍ଦିର ଏବଂ ପଶ୍ଚିମପଟେ ଠାକୁରାଣୀ ମନ୍ଦିର ନିର୍ମାଣ କରାଯାଇ କୋଠରେ ପୂଜାପଦ୍ଧତି ଝଞ୍ଜି ଦିଆଯାଉଥିଲା । ଏ ଦେବତାମାନଙ୍କୁ 'ଗ୍ରାମଦେବତା' ବୋଲି କୁହାଯାଉଥିଲା । ସେଇ ଗାଁର ଭଲମନ୍ଦ କାମ ପାଇଁ ଗ୍ରାମଦେବତାଙ୍କୁ ଆଗେ ଖୋଜାଲୋଡ଼ା ହୁଏ । ଉଦାହରଣ ସ୍ୱରୂପ ବାହାଘର ଆରମ୍ଭ ହେବା ପୂର୍ବରୁ 'ଦିଅଁମଙ୍ଗୁଳା' ହେଲା ପରେ ବିବାହ କାର୍ଯ୍ୟ ଆରମ୍ଭ ହେଉଥିଲା । ସେମିତି 'ବର' ଗାଁକୁ ଆସିଲାବେଳେ ଆଗ ଗ୍ରାମଦେବତାଙ୍କୁ ଦର୍ଶନ କରି ବାହାବେଦୀକୁ ଆସେ । ବ୍ରତଘର ପରେ ବ୍ରହ୍ମଗୃହୀ ଠାକୁରାଣୀ, ମହାଦେବ ମନ୍ଦିର ପର୍ଯ୍ୟନ୍ତ ଯାଇଥାଏ ।

ଗାଁ ଗଣ୍ଡାରେ ଯେତେବେଳେ ବିପଦ ଆପଦ ପଡୁଥିଲା, ସମସ୍ତେ ମିଳିମିଶି ଠାକୁରାଣୀ, ଠାକୁରଙ୍କ ପାଖେ ସଂକୀର୍ତ୍ତନ, ଜନ୍ତାଳ ମାଧ୍ୟମରେ ସେମାନଙ୍କୁ ବିପଦରୁ ଉଦ୍ଧାର କରିବାକୁ ପ୍ରାର୍ଥନା କରୁଥିଲେ । ବୁଢ଼ା ଗୋସେଇଁ କହିଲେ—'ବୁଝିଲେ, ଆପଣତ ଶୁଣିଥିବେ ଏଇ ବର୍ଷେ କି ଦିବର୍ଷ ତଳେ ମାଡ୍ରାଜ ଅଞ୍ଚଳରେ ଯେତେ-ବେଳେ ଅନାବୃଷ୍ଟି ହେଲା, ସେଠାକାର ମୁଖ୍ୟମନ୍ତ୍ରୀଙ୍କଠାରୁ ଆରମ୍ଭକରି ସରକାରୀ ଲୋକମାନେ ମଧ୍ୟ ଇନ୍ଦ୍ରପୂଜା ଆରମ୍ଭ କରିଥିଲେ । ଆମେମାନେ ଯେତେ ଶିକ୍ଷିତ ହେଲେ ମଧ୍ୟ ଆମର ଆଧ୍ୟାତ୍ମିକ ସ୍ତର ଯାହା ମୁନିଋଷିମାନେ ଶିକ୍ଷା ଦେଇ ଯାଇଥିଲେ, ବିଜ୍ଞାନ ସେପର୍ଯ୍ୟନ୍ତ ପହଞ୍ଚି ପାରିନି । କେବଳ ଆମେ ଗୋଟେ ଜିନିଷକୁ ଆଖି ଆଗରେ ଦେଖିପାରୁନେ କି ଦେଖେଇ ପାରୁନେ ବୋଲି ତାହା ବିଜ୍ଞାନ ସମ୍ମତ ହୋଇନଥିବା ହେତୁ, 'ଠିକନୁହେଁ' କହିବା ଭୁଲ । ମୁଁ ମୋର ପ୍ରପିତାମହଙ୍କୁ ଦେଖିନି ।ଆପଣ ଯଦି କହନ୍ତି ମୋର ପ୍ରପିତାମହ ନଥିଲେ ଏହା ଯେପରି ଅଯୌକ୍ତିକ କଥା, ଆମର ପ୍ରଚଳିତ ପୁରୁଣା ପଦ୍ଧତିକୁ ବିଜ୍ଞାନ ସମର୍ଥିତ ନୁହଁ ବୋଲି କହିବା ମଧ୍ୟ ସେଇପରି ଅଯୌକ୍ତିକ କଥା । ଏବେକାର ପିଲାମାନଙ୍କୁ ଏ ସବୁ ବୁଝାଇବା ମଧ୍ୟ କଷ୍ଟକର ହେଲାଣି ।

ସୁତରାଂ, ଆମ ଗ୍ରାମରେ ଏ ଯେଉଁ ଦେବାଦେବୀ ମନ୍ଦିର ଥିଲା, ସେହା ସମସ୍ତଙ୍କର ଦେବତା ଥିଲେ । ଗ୍ରାମର ଏକତା ରକ୍ଷା କରିବାରେ ଏବଂ ସମୃଦ୍ଧି ବିକାଶ ପାଇଁ ଏହି ମନ୍ଦିରର କୋଠଦେବତାମାନେ ହିଁ ଥିଲେ ତାର ପ୍ରତୀକ । ଏହି ମନ୍ଦିର ବେଢ଼ାରେ ଗାଁ ଅଦାଲତ ବସୁଥିଲା । ଛୋଟ ଛୋଟ ଘଟଣାମାନ ଏଇଠି ଗାଁ ପଞ୍ଚାୟତରେ ତୁଟୁଥିଲା । କିଏ ଟଙ୍କାଏ ଜୋରିମାନା ଦେଉଥିଲା ତ, କିଏ ପଞ୍ଚାୟତ ଆଗରେ ଭୁଲ୍ ସ୍ୱୀକାର କରି ଦେବତାଙ୍କୁ ମୁଣ୍ଡିଆ ମାରି ଦୋଷମୁକ୍ତ ହେଉଥିଲା । ଛୋଟ ଛୋଟ ଘଟଣା, ଚୋରି, ଭାଇ ଭାଇ ଭିତରେ କଳି, ମନୋମାଳିନ୍ୟ, ସବୁ-କିଛି ଏଇ ମନ୍ଦିର ବେଢ଼ାରେ ଠାକୁରଙ୍କ ଧଣ୍ଡା ଆଗରେ ତୁଟୁଥିଲା । ସେ ଅଦୃଶ୍ୟରେ ନ୍ୟାୟ ବିଚାରର ପ୍ରତୀକ ଥିଲେ ।

କିନ୍ତୁ ଏବେ ଏମାନେ କରେ କଅଣ ? ଗାଁ କଥା ନେଇ କୋର୍ଟ କଚେରୀରେ ପକେଇଲେ । ଭାଇ ଭାଇକୁ ଜେଲରେ ପୂରାଇ ଆନନ୍ଦ ପାଇଲା । ହେଲେ ସେଇ ଆନନ୍ଦ ଭିତରେ ପିତୃଅର୍ଜିତ ସମ୍ପତ୍ତି ନେଇ ଓକିଲ, ଟାଉଟଙ୍କୁ ଦେଲେ । ଘରକରଣା ଜିନିଷ ମହାଜନ ନେଲା । ଛୋଟ କଥା ଯାହାସବୁ ଛୋଟ ଛୁଞ୍ଚିରେ କଟି ଯାଉଥିଲା, ତା'ପାଇଁ କୁରାଢ଼ି ଦରକାର ହେଲା । ଏ ଶିକ୍ଷା, ଏ ସଭ୍ୟତାରେ ଆମର କଅଣ ମଙ୍ଗଳ ହେଲା କହିଲ ବାବୁ ?

ମୁଁ ତ ବୁଢ଼ା ହେଲିଣି, ଆଉ କିଛି ଦିନ ପରେ ସେ ପାରିକୁ ଯିବି, କିନ୍ତୁ ମୋ ବାପ ଅଜାଙ୍କ ବେଳ ଦେଖିଲି, ପୁଣି ପୁଅ ନାତିଙ୍କ ବେଳ ଦେଖିଲି । ମୁଁ ମାନୁଛି, ଏଇ ସମୟ ଭିତରେ ଆମର ଅର୍ଥନୈତିକ ମାନଦଣ୍ଡ ବେଶ୍ ବଢ଼ିଛି, କିନ୍ତୁ ଅର୍ଥନୈତିକ ଉନ୍ନତି ସାଥେ ସାଥେ ନୈତିକ ଉନ୍ନତି ନ ଘଟିଲେ, ତା'ର ଉଦ୍ଦେଶ୍ୟ ସଫଳ ହେବନି । ଲୋକମାନେ ଧନବଳରେ ବଳୀୟାନ ହୋଇ କୁପଥଗାମୀ ହେବେ ସିନା ସୁପଥଗାମୀ ହେବେନି ।”

ଇନ୍ଦ୍ର ମୁଣ୍ଡ ହଲେଇ ସମ୍ମତି ଜଣାଇ ତାଙ୍କ ଠାରୁ ବିଦାୟ ନେଲେ ।

( ୨୭ )

ଗାଁ ପାରିହୋଇ ବଜାର ପାଖେ ଇନ୍ଦ୍ର ପହଞ୍ଚିଲା ବେଳକୁ ସନ୍ଧ୍ୟା ହୋଇ-ଯାଇଥାଏ । ଇନ୍ଦ୍ର ଭାବୁଥିଲେ, ବସ୍‌ଧରି ଭୁବନେଶ୍ୱର ଫେରିଯିବେ । ବସ ଆସି ନଥିବା ଯୋଗୁ, ସେ ଯାଇ ପୁଣି ସେଇ ପଞ୍ଚୁସାହୁ ଦୋକାନ ସାମ୍ନା ବେଞ୍ଚ ଉପରେ ବସିଲେ ।

ସେତେବେଳକୁ ସନ୍ଧ୍ୟା ହୋଇଥିଲେ ମଧ୍ୟ ଲାଇଟ୍ ଆସି ନଥାଏ । ସମସ୍ତେ ଏବେ ଆସିବ, ଏବେ ଆସିବ ବୋଲି ବସିଥାନ୍ତି । କିଏ, କିମିତି ଦୋକାନ ଭିତରେ ଲଣ୍ଠନ, କ୍ୟାଣ୍ଡେଲ ଜାଳି ସନ୍ଧ୍ୟା ବଜାର ଆରମ୍ଭ କରିଥାଆନ୍ତି ।

ଲାଇଟ୍ ନ ଆସିବାର କାରଣ ପଚାରିବାରେ ଜଣେ ବାବୁ ତାଙ୍କୁ ବୁଝାଇ କହିଲେ ଯେ; ଯେତେବେଳେ ବିଜୁଳିବତୀ ତାଙ୍କ ଆଡ଼କୁ ଆସି ନଥିଲା, ସେତେ-ବେଳେ ସେମାନେ ଏକ ପ୍ରକାର ଭଲରେ ଥିଲେ । ସନ୍ଧ୍ୟା ହେଲେ ଲଣ୍ଠନ କିମ୍ବା ପେଟ୍ରୋମାକ୍ସ ଲଗେଇବାକୁ ପଡ଼ିବ, ତା' ସେମାନେ ଜାଣିଥିଲେ । ଗାଁ ଗଣ୍ଡାରେ ବଡ଼, ଡିଆସିଲି ତଳଖି କରି ରଖୁଥିଲେ । ଏବେ ସରକାର ବିଜୁଳି ଦେଲେ, କିଏ କିମିତି ଲାଇନ୍ ନେଲେ, ବଜାର ଘାଟ ଆଲୁଅ ହେଲା । ବିଜୁଳି ଲାଇନ୍ ଆସିବା ଯୋଗୁ ସେ ଅଞ୍ଚଳରେ ଧାନକଲ, ଚୂଡ଼ାକଲ, ତେଲକଲ ପୁଣି କୃଷି କାମ ପାଇଁ ଉଠା ଜଳସେଚନ ଯୋଜନାରେ ପମ୍ପସେଟ୍ ସବୁ ବ୍ୟାଙ୍କ ପ୍ରଭୃତିରୁ ଋଣ କରି ବସେଇଲେ । ଏବେ ଦେଖନ୍ତୁ, କି ଖରାଦିନ, କି ବର୍ଷାଦିନ ସବୁଦିନ ଲାଇନ ଯାଉଛି । ସେ ପୁଣି କେତେବେଳେ ଯିବ କେହି କହି ପାରିବେନି । କେଉଁଦିନ ସକାଳୁ ଗଲା ତ, କେଉଁ ଦିନ ଦି ପହରେ, କିନ୍ତୁ ସବୁଦିନ ପ୍ରାୟ ସନ୍ଧ୍ୟାବେଳେ ଯାଏ । ପିଲାମାନେ ପାଠ ପଢ଼ିବାକୁ ଅସୁବିଧା, ଆମର ଦୋକାନ ବଜାର ଚଳେଇ-ବାକୁ ଅସୁବିଧା, ତେଣେ ଦିନଯାକ ମଜୁରିଆମାନଙ୍କୁ ବସେଇ ବସେଇ ପମ୍ପସେଟ୍ ନ ଚାଲିବାରୁ ଚାଷୀମାନଙ୍କର ଅସୁବିଧା ।

ଏ ବିଷୟରେ ଆମେ ଓଭରସିୟର, ଇଞ୍ଜିନିୟରଙ୍କ ଦୃଷ୍ଟି ଆକର୍ଷଣ କଲୁ । ସେ କହିଲେ, ହୀରାକୁଦ ଜଳଭଣ୍ଡାରରେ ପାଣିପତନ କମି ଯାଇଛି, ତେଣୁ 'ବିଜୁଳିକାଟ' । ହେଲା, ଏସବୁ ଖରାଦିନେ ସମ୍ଭବ ମାତ୍ର ବର୍ଷାଦିନେ ପାଣି ତ ଅଛି! ପୁଣି କାହିଁକି ବିଜୁଳିକାଟ୍ ? ସେତେବେଳକୁ ତା'ର ଉତ୍ତର ନ ଦେଇ, ଏ ଲାଇନ୍ ଖରାପ ନଜର୍ ଦେଉଛନ୍ତି ।

ଅସଲ କଥା ହେଲା, ଏବେତ ନୂଆ ନିୟମ ଅନୁଯାୟୀ ଘର ପିଛା ମିଟର ଉଠିବା ନ ଦେଖି, ଲାଇଟ୍ ପଏଣ୍ଟ ଉପରେ ପଇସା ଛିଣ୍ଡେଇ ଦେଲେ । ମାସକୁମାସ ତାଙ୍କର ବିଜୁଳି ଆଲୁଅ ବାବଦକୁ ଖଜଣା ପାଇଗଲେ । ନ ହେଲେ ଲାଇନ୍ କାଟିଦିବାର ଧମକ ଦେବେ । ପଇସା ନେଲା ପରେ, ଲାଇନ୍‌ର ରକ୍ଷଣାବେକ୍ଷଣ ପାଇଁ ଯାହା ସବୁ ହେବା ଦରକାର, ମଫସଲ ଅଞ୍ଚଳ ବୋଲି ସେଥିପ୍ରତି ଭ୍ରୂକ୍ଷେପ ନାହିଁ । ଆଗ କଟକ, ଭୁବନେଶ୍ୱରକୁ ରକ୍ଷା କଲେ ଚାକିରି ରହିବ, ନହେଲେ ସେଠି ମନ୍ତ୍ରୀ, ଏମ୍. ଏଲ ଏ., ସବୁଠାରୁ ଭୟଙ୍କର ସାମ୍ବାଦିକମାନେ ଅଛନ୍ତି ।

ଝିଙ୍କିଏ କେଉଁଠି ଏମିତି ଯେମିତି ହେଲେ ଫେଂଟେଇ ଫଶାଇ ଗୋଟେ ବିଗାଡ଼ି ଖବର କରି ଗୁପିଦେବେ । ତେଣୁ ସମସ୍ତେ ସେଇଠି । ଏଇଆଡ଼େ ଲୋକମାନେ କୃଷିପାଇଁ, କ୍ଷୁଦ୍ର ବ୍ୟବସାୟ ପାଇଁ, ହଜାର ହଜାର ଟଙ୍କା ଲୋନ୍ ନେଇ ମଲେ । ଯେଉଁମାନେ ଉଠା ଜଳସେଚନ ପାଇଁ ଋଣ ଆଣି, ପମ୍ପ୍‌ସେଟ୍ ବସାଇଥିଲେ, ସେମାନଙ୍କର ସେଟ୍ ଅଚଳ ଆଜି 'ତାର' ଚୋରି ବି ହୋଇ ଗଲାଣି ।

ଲୋକଟି କହିଲେ, ଲାଇନ୍ ନେଇ ଆମେ ଘରେ କରୋସିନ ରଖୁନୁ କି ଦରକାରବେଳେ ବଜାରରେ କରୋସିନ ମିଳୁନି । ଏଣେ ଲାଇଟ୍ ବି ଠିକ୍ ସମୟରେ ଆସୁନି । ମଝି ମଝିଆ ହୋଇ ବୁଡ଼ି ମରିବା ସାରହେଲା ।

ତାଙ୍କ ପଛରେ ଆଉ ଜଣେ ବାବୁ ଠିଆ ହୋଇ ଏ କଥା ଶୁଣୁଥିଲେ । ସେ କହିଲେ, "ନାଇଁ ନାଇଁ ଆଜି ଆଉ ଲାଇନ୍ ଆସିବନି । ଆଗରେ ପ୍ରାୟ ଦୁଇ କିଲୋମିଟର ଲମ୍ବାର ଲାଇନ୍ ତାର ଚୋରି ହୋଇ ଯାଇଛି । ଏ ତାର ଲଗାଉ ଲଗାଉ ସପ୍ତାହେ ଯାଉଛି କି ପନ୍ଦରଦିନ ଯାଉଛି ଦେଖ । ଇନ୍ଦ୍ର ତାର ଚୋରି କଥା ଶୁଣି କହିଲେ, "ଏତେ ଲମ୍ବାର ତାର ଚୋରି ହେଲା, ଲାଇନ ତ ସବୁ ଗାଁ ପାଖ ଦେଇ ଯାଇଛି, କେହି କିମିତି ଜାଣି ପାରିଲେନି ?"

ବିଜୁଳିତାର ଚୋରି କଥାରୁ ଲୋକଟି କହିଲା, ଏବେ ଛୋଟ ଛୋଟ ଚୋରି ମଫସଲ ଅଞ୍ଚଳରେ ପ୍ରତ୍ୟେକ ଦିନ ଘଟୁଛି । ବହୁ କ୍ଷେତ୍ରରେ ଏ ବିଷୟରେ ପୁଲିସଙ୍କୁ ଖବର ଦିଆ ଯାଉନାହିଁ । ଖବର ଦେଲେ ମଧ୍ୟ ପୁଲିସ ବା ଆସି କଅଣ କରିବେ ? ଅବଶ୍ୟ ଆମେ ଏ ସମସ୍ତ ଘଟଣାକୁ ଛୋଟ ଛୋଟ ଚୋରି ବୋଲି କହୁଛୁ, କିନ୍ତୁ ଗୋଟିଏ ଗରିବ ଲୋକର ପିତ୍ତଳ ଥାଳି ଗୋଟେ ଚୋରି ଗଲେ ତାକୁ ଯେତେ ବାଧିବ, ଜଣେ ଧନୀ ଲୋକର ଗାଡ଼ିଟେ ଚୋରି ଗଲେ ତାକୁ ସେତେ ବାଧିବ ନାହିଁ । ଆମ ସମାଜ ସେମାନଙ୍କ ପାଇଁ ତତ୍ପର, ଅଥଚ ଗରିବଙ୍କ ପାଇଁ କିଏ ଆଗେଇ ଆସୁଛି ? ଆଗେ ମଫସଲ ଅଞ୍ଚଳରେ ଏପରି ଚୋରିଚୋରି ହେଉ ନଥିଲା, ତା' ମୂଳରେ ଥିଲା ସେତେବେଳର 'ଚଉକିଦାରି ପ୍ରଥା' । ଏବେ ଆମେ ତାକୁ 'ରୁରାଲ ପୋଲିସିଙ୍ଗ୍' ବୋଲି ଆଖ୍ୟା ଦେଉଛେ । ଚଉକିଦାରି ପ୍ରଥା ଭାଙ୍ଗିଲେ, ରୁରାଲ୍ ପୋଲିସିଙ୍ଗ୍ ସିଷ୍ଟମ ଭାଙ୍ଗିଗଲା । ଚଉକିଦାରମାନେ ଗାଁ ଗଣ୍ଡାରେ ସରକାରୀ ଲୋକ ଧରା ଯାଉଥିଲେ । ବଂଶଗତ ଅନୁସାରେ ସେମାନଙ୍କୁ ଏ କାମ ଦିଆଯାଉଥିଲା । ତଦ୍ଦ୍ୱାରା ସେମାନେ ସେମାନଙ୍କ କାମ ପାଇଁ ଗର୍ବ ଅନୁଭବ କରୁଥିଲେ ଏବଂ ଗାଁ ଗଣ୍ଡାରେ ସରକାରୀ ଜିନଷକୁ ସେମାନଙ୍କର ନିଜର ଜିନଷ ପରି ରକ୍ଷଣା ବେକ୍ଷଣ କରୁଥିଲେ । ସରକାରୀ ଆଇନ ଭାଙ୍ଗୁଥିବା ଲୋକ ପାଇଁ ସେମାନେ ଥିଲେ ଶତ୍ରୁ । ତା'ଛଡ଼ା ଗାଁ ଗଣ୍ଡାରେ

ଶାନ୍ତିଶୃଙ୍ଖଳା ଉପରେ ରକ୍ଷା ହେବ, ଗାଁକୁ ବାହାର ଲୋକ କିଏ ଆସି ବସବାସ କରୁଛି, ତା ଉପରେ ନଜର ରଖିବା, ଜନ୍ମ ମୃତ୍ୟୁର ଖବର ଦବା ଇତ୍ୟାଦି ସମସ୍ତ ଖବର ସେ ଥାନା ମାଧ୍ୟମରେ ସରକାରଙ୍କୁ ଦେଉଥିଲେ । ଗ୍ରାମବାସୀମାନେ ଚୋରୀ-ଚୋରୀରେ ଚଉକିଦାରକୁ ପଚାରୁଥିଲେ । କେଉଁ ଗାଁରେ ଚୋରୀ ବଢ଼ିଲେ, ତାକୁ ଦାୟୀ କରୁଥିଲେ । ଗାଁରେ ରହୁଥିବା ହେତୁ, ଚଉକିଦାର ଏ ସମସ୍ତ ବିଷୟରେ ଠିକନକ ଖବର ସଂଗ୍ରହ କରିପାରୁଥିଲା ଏବଂ ତା ଭୟରେ ଛୋଟ ଛୋଟ ଚୋରୀ ହେଉ ନଥିଲା ।

ଏବେ ଚଉକିଦାରୀ ପ୍ରଥା ଉଠାଇ ଦେଇ 'ଗ୍ରାମରକ୍ଷୀ' ପ୍ରଥା ପ୍ରଚଳନ କଲେ । ଆଇନ ଅନୁଯାୟୀ ତାହାକୁ ଗ୍ରାମ ରକ୍ଷୀ ଭାବେ ନିଯୁକ୍ତ କରିହେବ । ଖାଲି ଥାନା ବାବୁ ସୁପାରିସ୍ କରି ଦେଲେ ହେଲା । ତା'ଛଡ଼ା ଗୋଟିଏ ଗ୍ରାମ ରକ୍ଷୀ ମାସକୁ ୧୦୦ ଟଙ୍କା ଦରମା ନେଇ ତାର ଏ ସବୁ କାମପ୍ରତି କିପ୍ରକାର ମନୋବୃତ୍ତି ରଖିବ ? ସେଥିରେ ପୁଣି ସପ୍ତାହକୁ ଥରେ ଥାନାକୁ ଯିବାରେ ଦୁଇ ଦିନର ସମୟ ଯାଉଛି । ଜଣେ ଲୋକ ମଫସଲରେ କାମ କଲେ ଦିନକୁ ବର୍ତ୍ତମାନ ୧୦ ଟଙ୍କା ରୋଜଗାର କରିବ । ଥାନାକୁ ଯିବାରେ ଯଦି ସେ ମାସକୁ ୧୦ ଦିନ ନଷ୍ଟ କଲା, ତାହେଲେ ତାର ପରିବାର ଭରଣ ପୋଷଣ ପାଇଁ କଅଣ ପାଇଲା ?

କିନ୍ତୁ 'ଚଉକିଦାରୀ' ପ୍ରଥାରେ ସେମାନଙ୍କୁ ଗାଁର କୋଠରୁ ଜମି ଦିଆ-ଯାଉଥିଲା । ଧାନ ଅମଳବେଳେ ଖଳାରେ ପହିଲି ଦେବାପାଇଁ ଚାଷୀମାନଙ୍କ ସକ୍ଷମ ଅନୁଯାୟୀ ଗୋଟିଏ ଦି'ଟା ଧାନହାଲା ତାଙ୍କୁ ଦେଉଥିଲେ । ଗାଁରେ ଭଲ ମନ୍ଦରେ ଚଉକିଦାର ଜଣେ ଭାଗିଦାର ଥିଲା । ବଂଶାନୁଯାୟୀ ବୃତ୍ତିଥିବା ହେତୁ ସରକାରୀ ଲୋକ ହିସାବରେ ଗାଁ ଗଣ୍ଡାରେ ତାର ଗର୍ବ ଏବଂ ସାମାଜିକ ସମ୍ମାନ ପାଖେ ଆଜି କାଲିର ୧୦୦ ଟଙ୍କା କିଛି ନୁହେଁ ।

ଏବେ ବିଜୁଳି ତାର ଚୋରୀ କଥା ଦେଖିଲେ । ରାସ୍ତା କଡ଼ରେ ଯେତେ ସରକାରୀ ଗଛ ମାନ ଅଛି ତାକୁ ଦେଖୁଛନ୍ତି । କେଉଁ ଗଛରେ ଖଣ୍ଡେ ଡାଳ ନାହିଁ । ପ୍ରଥମେ ଡାଳ ହାଣିବେ, ପରେ ପରେ ଗଛ ମୂଳରୁ ଛେଲି ହାଣି ଗଛକୁ ମାରିବେ । ମଲାପରେ ମୂଳରୁ ତାଡ଼ି ନେବେ । ହଜାର ହଜାର ଗଛର ଅବସ୍ଥା ଏଇଆ ହେଲା । ଗାଁବାଲା ସମସ୍ତେ ଏ ସବୁ ଦେଖୁଛନ୍ତି କିନ୍ତୁ କିଏ ହେଲେ ପଦେ କହୁଛି ? 'ସରକାର ମାଲ, ଦରିଆମେ ଡାଲ' । ସରକାରୀ ଗଛ ଜଣେ ହାଣି ନଉଛି, ଆଉ ଜଣଙ୍କର କଅଣ ଗଲା ? ସରକାରୀ ବିଜୁଳି ତାର ଜଣେ କାଟି ନଉଛି, ଆଉ ଜଣେ କାହିଁକି ତାକୁ ପଚାରିବ ସେ କିଏ, କେଉଁଥି ପାଇଁ ତାର କାଟୁଛି ? ବର୍ତ୍ତମାନ ସୁଦ୍ଧା ଆମ

ଦେଶରେ ସର୍ବସାଧାରଣ ସମ୍ପତ୍ତିକୁ ରକ୍ଷା କରିବାର ମନୋଭାବ ସୃଷ୍ଟି ହୋଇନାହିଁ । ନହେଲେ କଅଣ ଶିକ୍ଷିତ କଲେଜପିଲମାନେ ସରକାରୀ ଗାଡ଼ିରେ ନିଆଁ ଲଗାନ୍ତେ ? ଗାଁ 'ଚଉକିଦାରୀ' ପ୍ରଥା ଥିଲେ, ସେ ଗାଁଗଣ୍ଡାର ଏ ସବୁ କଥାକୁ ଜଗିଥାନ୍ତା । 'ସରକାରୀ ସମ୍ପତ୍ତି'କୁ ରକ୍ଷା କରିବା ଦାୟିତ୍ୱ ତାର ବୋଲି ସେ ତା ବାପା ଅଜାଙ୍କ ଠାରୁ ଶିକ୍ଷା କରି ଆସିଛି ଏବଂ ସେଇଟା ତାର ଜନ୍ମଗତ ଅଧିକାର ବୋଲି ସେ ଧରି ନେଇଥିଲା । ଏବେ ସେ ପ୍ରଥା ଗଲା, ଗାଁ ଗଣ୍ଡାରେ ଚୋରି ନାରୀ ବଢ଼ିଲା, ସରକାର କେତେ ପୁଲିସ ପଠେଇ ଏକୁ ସମ୍ଭାଳିବେ ?"

ବାବୁ ଜଣକ ଚଉକିଦାରୀ ପ୍ରଥା ଉପରେ କହୁଥିଲେ । ଇନ୍ଦ୍ର ବେଞ୍ଚ ଉପରେ ବସି ଏ ସବୁ କଥା ଶୁଣୁଥିଲେ ଏବଂ ମନେମନେ ଚିନ୍ତା କରୁଥିଲେ— ଚଉକିଦାରୀ ପ୍ରଥାକୁ ସରକାର ଉଠାଇଦେବା ଦ୍ୱାରା ମଫସଲ ଅଞ୍ଚଳରେ ପୁଲିସିଙ୍ଗ୍ ଗୁରୁତର ଭାବେ ବାଧାପ୍ରାପ୍ତ ହୋଇଛି । ଚଉକିଦାରୀ ପରିବର୍ତ୍ତେ ଏବେ ଗ୍ରାମରକ୍ଷୀ ଆଇନ ଲାଗୁ ହେଲା । ମାତ୍ର ଏ ଆଇନ ମଧ୍ୟରେ ଯାହାସବୁ କୁହାଯାଇଛି ତାର ଆଶୁ ପରିବର୍ତ୍ତନ ଲୋଡ଼ା । କେତେକାଂଶରେ ପରିବର୍ତ୍ତନ ହେଲାଣି, ଆହୁରି ଦରକାର । ତା ନହେଲେ ରୁରାଲ୍ ପୋଲିସିଙ୍ଗ୍ ଷ୍ଟ୍ରେପ ଆଡ଼କୁ ନିଶ୍ଚିତ ଭାବେ ଗତି କରିବ ।

ବାବୁଙ୍କ କଥା ସରୁ ନସରୁଣୁ, ଆଉ ଜଣେ ଠିଆ ହୋଇଥିବା ଶ୍ରୋତା ବନ୍ଧୁ କହିଲେ, "ଖାଲି କାହିଁକି ଗ୍ରାମରକ୍ଷୀ ଆଇନ, ସରକାରଙ୍କ ବହୁ ଆଇନ ଏବଂ ଯୋଜନା ଠିକ୍ ବାଟ ଦେଇ ଯାଇପାରୁନ । ଆମ ଦେଶରେ (ଓଡ଼ିଶା) ତିନି ଲକ୍ଷ ଅଠାବନ ହଜାର କୃଷୀ ପରିବାର ଅଛନ୍ତି । ପଞ୍ଚାନ୍ତରିଶ ଭାଗରୁ କମ୍ କୃଷୀ ପରି-ବାରର ଦୁଇ ଏକର ଜମି ନାହିଁ । ଧନୀ କୃଷକଙ୍କ ସଂଖ୍ୟା ଅତି ନଗଣ୍ୟ । ସରକାର ଏ ଗରିବ କୃଷୀମାନଙ୍କ ଉନ୍ନତି କଲେ ବିଭିନ୍ନ ପ୍ରକାର ସୁବିଧା କଲେ । ଉନ୍ନତ ଧରଣର ବିହନ ଯୋଗାଇ ଫସଲର ଅମଳ ବଢ଼ାଇବା ପାଇଁ ବ୍ଲକ ଜରିଆରେ ଧାନ, ମୁଗ, ବିରି, ଗହମ ଇତ୍ୟାଦି ଫସଲ ପାଇଁ ବିହନ ଅନ୍ୟ ରାଜ୍ୟରୁ ଆଣି-ଦେଲେ । ସେହିପରି ମାଛ ଚାଷ, ଫଳ ଚାଷ, ପନିପରିବା ଚାଷପାଇଁ ବ୍ଲକ ମାଧ୍ୟମରେ ଉନ୍ନତ ଧରଣର ମଞ୍ଜି, ସାର ଇତ୍ୟାଦି ଯୋଗାଇ ଦେବାର ବନ୍ଦୋବସ୍ତ କଲେ । ଏ ସମସ୍ତ ମୂଳରେ ମହତ୍ ଉଦ୍ଦେଶ୍ୟ ଥିଲେ ମଧ୍ୟ 'ନାଲିଫିତା'ର କାରସାଦି ଯୋଗୁ ଏହାର ଫଳ ଗରିବଲୋକମାନେ ପାଇପାରୁ ନାହାନ୍ତି । ନାଲିଫିତାର କାରସାଦି ଯେତେଦିନ ପର୍ଯ୍ୟନ୍ତ ରାଜତ୍ୱ କରୁଥିବ, ସେତେଦିନ ପର୍ଯ୍ୟନ୍ତ ଗରିବ, ଗରିବ ହୋଇ ରହିଥିବ । ପୃଥିବୀ ପ୍ରସିଦ୍ଧ ଜଣେ ଅର୍ଥନୀତିଜ୍ଞ କହିଥିଲେ, ଭାରତବର୍ଷରେ ଯେତିକି ଟଙ୍କା ଯୋଜନା ମାଧ୍ୟମରେ ଲୋକମାନଙ୍କ ଉନ୍ନତି କଲେ ଖର୍ଚ୍ଚ କରାଗଲାଣି,

ସେତକ ଟଙ୍କାର ଉପକାର ଯଦି ଲୋକମାନେ ପାଇ ପାରିଥାନ୍ତେ, ତାହେଲେ ସେମାନଙ୍କର ଆର୍ଥିକ ଅବସ୍ଥା ଆଜି ଯାହା ଦେଖୁଛୁ ସେପରି ନଥାନ୍ତା । ଏ ସମସ୍ତ ଅର୍ଥର ବିନିଯୋଗ ଠିକ୍ ବାଟରେ ହୋଇ ପାରୁନି । ମଝିରେ କେତେକ ଠାବୁଆ ପେଞ୍ଚ କରି ବସି ମାରି ଖାଉଛନ୍ତି ।"

ସେ ଗୋଟାଏ ଉଦାହରଣ ଦେଇ କହିଲେ, ଦେଖନ୍ତୁ "ମାଛଚାଷ କଥା— ମାଛଚାଷ ସାଧାରଣତଃ ମଫସଲ ଅଞ୍ଚଳରେ କରାଯାଏ । ଚାଷୀମାନେ ଏ ସବୁରେ ଉପକୃତ ହୁଅନ୍ତି । ସେମାନଙ୍କୁ ସରକାରୀ ସାହାଯ୍ୟ ଦେଇ ମାଛଚାଷ ଏ ଅଞ୍ଚଳରେ ପ୍ରସାର କରି ମତ୍ସ୍ୟ ଉତ୍ପାଦନ ବଢ଼ାଇବା ସଙ୍ଗେ ସଙ୍ଗେ ଲୋକମାନଙ୍କର ଆର୍ଥିକ ଉନ୍ନତି ଘଟାଇବା ଏହି ପ୍ରକଳ୍ପର ମୁଖ୍ୟ ଉଦ୍ଦେଶ୍ୟ । ଏଥି ପାଇଁ ବିଭିନ୍ନ ପ୍ରକାର ଚାଷୀମାନଙ୍କୁ ସେମାନଙ୍କର ଆର୍ଥିକ ଅବସ୍ଥା ଦେଖି ବିଭିନ୍ନ ବ୍ୟାଙ୍କରୁ ଋଣ ଦେବାର ବନ୍ଦୋବସ୍ତ କରାଗଲା । ଏ ଋଣରେ ମଧ୍ୟ ସବ୍‌ସିଡ଼ି ଦେବାର ବନ୍ଦୋବସ୍ତ ରହିଲା ।

କିନ୍ତୁ ଏସବୁ ସତ୍ତ୍ୱେ ଏବେ ହଉଛି କଅଣ ! ନାଲିଫିତାର କାରସାଦି ଭିତରେ ଚାଷୀମାନେ ପେଶି ହୋଇଯାଉଛନ୍ତି । ଧରନ୍ତୁ ଯେଉଁ ଚାଷୀ ମାଛଚାଷ କରିବ, ପ୍ରଥମେ ସେ ବ୍ଲକ ଅଫିସକୁ ଯାଇ ମତ୍ସ୍ୟସମ୍ପ୍ରସାରଣ ଅଧିକାରୀଙ୍କୁ ଦେଖା-କରି ତାଙ୍କଠାରୁ ଗୋଟିଏ ଦରଖାସ୍ତ ଫର୍ମ ଆଣି ପୂରଣ କରି ସେଇ ଅଫିସରେ ଦବାକୁ ହେବ । ତାପରେ ମତ୍ସ୍ୟ ସମ୍ପ୍ରସାରଣ ଅଧିକାରୀ ସରଜମିନ ତଦନ୍ତରେ ଯିବେ । ସେ ତଦନ୍ତ କଲାପରେ ତାଙ୍କ ରିପୋର୍ଟ ପ୍ରସ୍ତୁତ କରି ବ୍ଲକ ଅଫିସରଙ୍କୁ ଦେବେ । ବ୍ଲକ ଅଫିସର, ଅନୁବିଭାଗ ଅଧିକାରୀ ତାଙ୍କର ମତାମତ ଦେଇ ଜିଲ୍ଲାର ମତ୍ସ୍ୟ ବିଶେଷଜ୍ଞ ଅଫିସକୁ ପଠାଇବେ । ମତ୍ସ୍ୟ ବିଶେଷଜ୍ଞ ଅଫିସ ଏ ସମସ୍ତ ଅଫିସର-ମାନଙ୍କର ସୁପାରିଶ ଇତ୍ୟାଦି ଦେଖି ସାରିଲା ପରେ ସେ ତାଙ୍କର ସୁପାରିଶ ଇତ୍ୟାଦି ଦେଇ ଅର୍ଥ ସହାୟତା (ସବ୍‌ସିଡ଼ି) ଅନୁମୋଦନ ପାଇଁ ଜିଲ୍ଲା କଲେକ୍ଟରଙ୍କ ପାଖକୁ ଦେବେ । ଜିଲ୍ଲା କଲେକ୍ଟର ଦେଖିସାରି ତାଙ୍କ ଅନୁମୋଦନ ବ୍ଲକ ଅଫିସ ଜରିଆରେ ଦରଖାସ୍ତକାରୀଙ୍କ ଗ୍ରାମପାଖେ ଥିବା ବ୍ୟାଙ୍କକୁ ଋଣ ଦେବାପାଇଁ ଆଦେଶ ଦେବେ । ବ୍ୟାଙ୍କ ମ୍ୟାନେଜର ଚାଷୀଙ୍କ ଦରଖାସ୍ତ ଉପରେ ତାଙ୍କର ତଦନ୍ତ କରି, ଆବଶ୍ୟକ-ସ୍ଥଳେ ସିକ୍ୟୁରିଟି ଇତ୍ୟାଦି ନେଇ ଋଣଦେବେ । ଏ ସମସ୍ତ କାମ କରିବାପାଇଁ ଚାଷୀ ହିଁକେ ଯଦି ଉପରୋକ୍ତ ଅଫିସମାନଙ୍କୁ ନଯାଇ ଖବର ନରଖେ ଏବଂ ଅଫିସରେ ଧରାଧରି ନକରେ ତାହେଲେ ସେ ଋଣ ପାଇବା ଅସମ୍ଭବ । ତାଛଡ଼ା ସବୁ ଅଫିସରୁ କାମହୋଇ ଆସିଲା ବେଳକୁ ମାଛ ଯାଆଁଳ ମିଳିବାର ସମୟ ଗଡ଼ି ଯାଇଥିବ ।

ଗୃହୀ ଅଫିସରୁ ଅଫିସକୁ ଦଉଡ଼ ଦଉଡ଼ ଯାହା ଖର୍ଚ୍ଚାନ୍ତ ହେଲ, ସେ ଯୋଉଁ ସବ୍‌ସିଡ଼ି ଋଣ ନେଲ, ଖର୍ଚ୍ଚ ତୁଳନାରେ ସେ କିଛିନୁହେଁ ।

ଏ ଅବସ୍ଥାରେ ଏ ପ୍ରକଳ୍ପ କିପରି ଲୋକପ୍ରିୟ ହେବ ଏବଂ ଗରିବ ଗୃହୀ-ମାନେ କିପରି ଲାଭବାନ ହେବେ ? ଏ ସମସ୍ତ ଯୋଜନାର ଏ ଗୋଟିଏ ଉଦା-ହରଣ । ଘିଅ ହାଣ୍ଡିରୁ ଗୋଟିଏ ଚାଟିଲେ ଯାହା ସମସ୍ତଙ୍କ ଅବସ୍ଥା ସେଇଆ ।"

( ୨୮ )

ବେଳବୁଡ଼ ରାତି ସାଢ଼େଏ । ଭୁବନେଶ୍ୱର ବସ୍‌ ଦେଖାନାହିଁ । ଯାନ୍ତ୍ରିକ ତ୍ରୁଟି ଯୋଗୁ ବସ ଆଉ ରାତିରେ ଆସିବ ନାହିଁ ବୋଲି ଖବର ପହଞ୍ଚିଲା । ବିଜୁଳି ବତି ନଥିବାହେତୁ, ବଜାର ଆସ୍ତେ ଆସ୍ତେ ପତଳା ହୋଇ ଆସୁଥାଏ । ଇନ୍ଦ୍ର ବଡ଼ ଅଡୁଆରେ ପଡ଼ିଲେ । ରାତିଟା କେଉଁଠି କଟାଇଲେ ସିନା ସକାଳୁ ଯାହା ବ୍ୟବସ୍ଥା କରିବେ ! କାହାକୁ ପଚାରିବେ ଭାବି, ପଞ୍ଚୁ ସାହୁ ଦୋକାନ ପିଣ୍ଡାକୁ ଉଠି, ସାହୁଙ୍କୁ ପଚାରିଲେ ।

ସାହୁ କହିଲେ, ସେଇ ରାସ୍ତାରେ କିଛି ବାଟ ଆଗକୁ ଗଲାପରେ, ରାସ୍ତାର ଡାହାଣ ପଟେ ଗୋଟେ ବଙ୍ଗଳା ପଡ଼ିବ । ସେ ବଙ୍ଗଳାଟି ଜଳସେଚନ ବିଭାଗର । ସେଇଠି ଗୋଟିଏ ରାତି କଟାଇ ଦେଇ ହେବ ।

ଇନ୍ଦ୍ର ଭାବିଲେ, ତାଙ୍କ ଚେହେରା ଦେଖିତ କିଏ ହେଲେ ଘର ଖୋଲି-ଦେବେନ, ତଥାପି ବଙ୍ଗଳା ପିଣ୍ଡାରେ ରାତିଟା କଟାଇ ଦେଇ ପାରିବେ ତ !

ଆଗପଛ ନଭାବି ଜଳସେଚନ ବଙ୍ଗଳା ପାଖେ ପହଞ୍ଚିଲାବେଳକୁ ବଙ୍ଗଳାରେ ଗୋଟିଏ ଯାତ୍ରା ଚାଲି ଥିବାର ମନେ ହେଲା । ବଙ୍ଗଳା ବାରଣ୍ଡାରେ ଖୁବ୍ ଭିଡ଼ । ପେଟ୍ରୋମାକସ୍ ଲାଇଟ୍ ଜଳୁଛି । ଗାଡ଼ି,ମଟର ଲାଗିଛି । ବଙ୍ଗଳା ଗେଟ୍ ଡେଇଁ ଭିତରେ ପଶିବାକୁ ତାଙ୍କର ସାହସ କୁଲାଉ ନଥାଏ । କିଛି ସମୟ ଗେଟ୍ ପାଖେ ଠିଆ ହେଲା ପରେ ବଙ୍ଗଳାର ଚଉକିଦାର ହାବୁଡ଼େ ପଡ଼ିଲେ ।

ପ୍ରଥମେ ଚଉକିଦାର ଧରି ନେଇଥିଲେ ଯେ ଇନ୍ଦ୍ର କେଉଁ ବାବୁଙ୍କର ଡ୍ରାଇଭର କି ପିଅନ ହୋଇଥିବ । ସେଇଆ ଭାବି ତାଙ୍କୁ ଭିତରକୁ ଡାକିନେଇ ପଛପଟ ବାରଣ୍ଡା ଉପରେ ବସିବାକୁ କହିଲେ । କିଛି ସମୟ ପର୍ଯ୍ୟନ୍ତ ବାବୁମାନଙ୍କ ବରାଦ ହେଉଥିବା କାମ କରିସାରିଲା ପରେ, ଚଉକିଦାର ଇନ୍ଦ୍ରଙ୍କ ପାଖେ ପହଞ୍ଚିଲେ । ତାଙ୍କୁ ଦେଖି ଇନ୍ଦ୍ର ତାଙ୍କର ଅସୁବିଧା କଥାଟି କହିଲେ ।

ଚଉକିଦାର ହେଲେ କଅଣ ହେଲା, ଲୋକଟି ଜନ୍ମ ଦୟାଳୁ । ସେ ଇନ୍ଦ୍ରଙ୍କୁ କହିଲା, "ଦେଖନ୍ତୁ ଗୋସାଇଁ ଆଜ ଜଳସେଚନ ବିଭାଗର ଏକ୍‌ଜିକ୍ୟୁଟିଭ ଇଞ୍ଜିନିୟର ଆସିଛନ୍ତି । ନଈବନ୍ଧ ମରାମତି, କେନାଲବନ୍ଧ ଭଙ୍ଗା ଇତ୍ୟାଦି ଯେଉଁ କଣ୍ଟ୍ରାକ୍ଟରମାନେ କାମ କରିଥିଲେ, ସେମାନଙ୍କୁ ଡକାଇଛନ୍ତି । ତାଙ୍କ କାମ ଏକ ଡାକବଙ୍ଗଳାରେ ବସି ତଦାରଖ କରି ବିଲ୍ ପାସ କରିବେ । ଆଗକୁ ଦଶହରା ଆସୁଛି, ତେଣୁ କଣ୍ଟ୍ରାକ୍ଟର ମାନଙ୍କ ବିଲ୍ ପାସ କରିବାକୁ ହେବ । କ୍ୟାମ୍ପ୍ ପକେଇଥିବା ହେତୁ, କେଉଁ କଣ୍ଟ୍ରାକ୍ଟର ମାଛ, କିଏ ଖାସି, କିଏ କୁକୁଡ଼ା ବନ୍ଦୋବସ୍ତ କରିଛନ୍ତି । ଭୋଷେଇ ବାସ ଚାଲିଛି । ଗୋଟିଏ ରୁମରେ ସାହେବଙ୍କୁ ଖୁସିମିଜାଜରେ ରଖିବା ପାଇଁ ସବୁ ଆୟୋଜନ କରାଯାଇଛି । ସେ ରୁମକୁ କାହାରିକୁ ଯିବାକୁ ମନା । ସେ ସବୁ ବ୍ୟବସ୍ଥା ସେମାନଙ୍କ ଖାସ୍ ଲୋକ ଦେଖୁଛନ୍ତି । ମୋତେ କେବଳ ମଝିରେ ମଝିରେ 'କାଚଗ୍ଲାସ୍ ଆଣେ କି ଆଳୁଚପ୍ସ ଆଣେ ବରାଦଛଡ଼ା ଆଉ କିଛି କରିବାକୁ ଦଉନାହାନ୍ତି । ଖିଆପିଆ ସରୁ ସରୁ ରାତି କେତେ ହେବ କହିପାରିବନି, ତଥାପି ବାରଟା ଏପଟୁ ନୁହେଁ । ଆପଣ ଏଇଠି ସତରଞ୍ଜିଟେ ପକାଇ ଗଡ଼ୁଥାଆନ୍ତୁ । ଭୋଷେଇ ହେଲାପରେ ମୁଁ ଡ଼ାକିବି, ଖାଇବା । ଯାହା ହୋଇଛି ଶହେ ଲୋକରୁ କମ୍ ଖାଇବେନି ।"

ଇନ୍ଦ୍ର ପଚାରିଲେ, "ଇଞ୍ଜିନିୟର ସାହେବ ବନ୍ଧ କାମ କି କେନାଲ ମରାମତି କାମ ଓ ସରଜମିନ ତଦନ୍ତ କରି ତାଙ୍କ ବିଲ୍ ପାଶ୍ କରିବା କଥା, ଆଉ ବଙ୍ଗଳା ଭିତରେ ବସି କଅଣ ତଦନ୍ତ କରିବେ ?"

ତାଙ୍କ କଥା ଶୁଣି ଚଉକିଦାର କହିଲେ, "ଆପଣ କଅଣ ଗୋସେଇଁ ସ୍ୱର୍ଗ-ପୁରରୁ ଆସିଛନ୍ତି କି ? କେଉଁ କଣ୍ଟ୍ରାକ୍ଟରର କାମ ତଦନ୍ତ ହୁଏ ? ଯେଉଁମାନେ ଠିକ୍ ଭାବେ ସାହେବମାନଙ୍କ କଥା ନବୁଝନ୍ତି ବା ବଡ଼ ସାହେବଙ୍କଠାରୁ ଶ୍ରେଷ୍ଠ ସାହେବ ପର୍ଯ୍ୟନ୍ତ ସମସ୍ତଙ୍କ ପାଇଁ ଯାହାଗୋଟିଏ ଧରାବନ୍ଧା ବ୍ୟବସ୍ଥା ବହୁ କାଳରୁ ଗଡ଼ି ଆସୁଛି, ଯେଉଁ ମାନେ ଏ ଧରାବନ୍ଧା ବ୍ୟବସ୍ଥା ଏପଟ ସେପଟ କରନ୍ତି, ସେଇ-ମାନଙ୍କ କାମ ତଦନ୍ତ ହୁଏ । ଆଜ ଯେଉଁ କଣ୍ଟ୍ରାକ୍ଟର ବାବୁମାନଙ୍କୁ ଦେଖୁଛନ୍ତି ଏସବୁ ପୁରୁଣା ଲୋକ । ଆପଣ ଏଇ ପିଣ୍ଡାରେ ଆଖି ବୁଜି ଶୋଇ ସବୁ ଶୁଣନ୍ତୁ, କାଲିସକାଳୁ ଆପଣ ଗୋଟିଏ, ଦୁଇଟା କାମ ସରଜମିନ୍ ତଦନ୍ତ କରି ଦେବେ । ଆଜ ଯାହା ଶୁଣିବେ, କାଲି ଯାହା ଦେଖିବେ, ତା ଭିତରେ ତଫାତ୍ କେତେ ବୁଝିବେ ।"

ରାତି ବଢ଼ୁଥାଏ । ବଙ୍ଗଳାର ଚାରିପଟ ନିସ୍ତବ୍ଧ ହୋଇ ଆସିଲା ବେଳକୁ ବଙ୍ଗଳା ଭିତର ବେଶ୍ ମୁଖରିତ ହୋଇ ଉଠୁଥିଲା । ବାବୁମାନଙ୍କର ମନଖୋଲା ହସ

ସାଙ୍ଗକୁ ଗ୍ଲପା ଗଳାରେ କଥାବାର୍ତ୍ତା, ପ୍ଲେଟ, କଣ୍ଟାର ଝୁନ୍‌ଝାନ୍ ଶବ୍ଦ, ଗ୍ଲଡଅଧିଆ ବଙ୍ଗଳାର ପରିବେଶକୁ ମଧୁମୟ କରିଥାଏ । ଇନ୍ଦ୍ର, ବଙ୍ଗଳା ଭିତର ବାରନ୍ଦାର ଗୋଟେ କଣକୁ ସତରଞ୍ଜି ଝଣ୍ଡେ ବଛେଇ ଗଡୁଥାନ୍ତି । ଆଖିରେ ନିଦ ନାହିଁ କି ପେଟରେ ଦାନା ନାହିଁ ।

ଏଇ ସମୟରେ ଜଣେ ବାବୁଙ୍କ କଥା ତାଙ୍କ କାନରେ ବାଜିଲା । ବାବୁ ଜଣଙ୍କ ବୋଧେ ଜଣେ ପୁରୁଣା କଣ୍ଟ୍ରାକ୍ଟର ହେବେ । ସେ କହୁଥାନ୍ତି, "ସାର୍, ଆପଣ ସିନା ଏଠାକୁ ଆସିଲେ ବୋଲି ଆମ୍ଭମାନଙ୍କ ମହତ ରହିଲା, ନ ହେଲେ ସେ 'ଦାସବାବୁ'ଟା ଆସିଥିଲେ, ଆମ୍ଭମାନଙ୍କର ସତ୍ତା ନଥାନ୍ତା ।"

ତାଙ୍କ କଥାଟା ଶୁଣି ଅନ୍ୟମାନେ ତାଙ୍କୁ ସମର୍ଥନ କରିବା ଭଙ୍ଗୀରେ 'ଦାସ ବାବୁଙ୍କ' ବଡ଼ଦ ପୁରୁଷ ଉଦ୍ଧାର, ବର୍ତ୍ତମାନ ଇଞ୍ଜିନିୟର ସାହେବଙ୍କ ପରି ଇଞ୍ଜିନିୟର ଗଲା ଦଶବର୍ଷ ମଧ୍ୟରେ ସେମାନେ ଦେଖି ନଥିଲେ କି ଆସନ୍ତା ଦଶବର୍ଷ ଭିତରେ ଆସିବେ ବୋଲି ସେମାନେ ଭାବିପାରୁ ନାହାନ୍ତି ବୋଲି କହୁଥାନ୍ତି । ସେମାନଙ୍କ କଥା ଗୁଡ଼ିକ ଇଞ୍ଜିନିୟର ବାବୁଙ୍କୁ ଭଲ ଲାଗୁଥାଏ । ତାଙ୍କ କଥା ଭିତରେ ଇଞ୍ଜିନିୟର ବାବୁ କହିଲେ, "ବୁଝିଲେ, ଏ ସବୁ ଆପଣମାନଙ୍କ ଦୟାରୁ, ନହେଲେ ମୁଁ କିଏ, ଏ ଗ୍ଲଡ଼ ଲକ୍ଷ ଟଙ୍କା କିଏ ? 'ଚାର' ଦେଇ ନଥିଲେ କଅଣ ମୋର ଏଠି ପୋଷ୍ଟିଂ ହୋଇଥାନ୍ତା ? ଆଗ ଟଙ୍କା ଧଇଲେ ପରେ ପୋଷ୍ଟିଂ ।"

ତାଙ୍କ କଥା ପାଟିରୁ ସରୁ ନସରୁଣୁ, ଆଉ ଜଣେ ବାବୁ କହିଲେ, "ଆଜ୍ଞା ଗ୍ଲଡ଼ କଅଣ, ଦଶ ପଡ଼ିଥିଲେବି ଦିଆନାଇଥାନ୍ତା । ଆପଣ କଅଣ ଭାବୁଥିଲେ, ଏ ସବୁ ବ୍ୟବସ୍ଥା ନକରି ଆମେ ଦାସ ବାବୁଙ୍କୁ ଏଠି ସ୍ୱାଗତ କରିଥାନ୍ତୁ ? ଅସମ୍ଭବ ।"

ସେତେବେଳକୁ ଇଞ୍ଜିନିୟର ସାହେବଙ୍କ ନିଶ୍ୱାସ ଦାର୍ଶନିକତା ଆଡ଼କୁ ଗଡ଼ିଲା ପରି ଜଣାପଡ଼ୁଥାଏ । ମଣିଷ ବେଳେ ବେଳେ ନିଜର ବାହ୍ୟ ଖୋଲ ଛାଡ଼ିଦେଇ ନିଜତ୍ୱ ପ୍ରକାଶ କରିଥାଏ । ସନ୍ଧ୍ୟାବେଳରୁ ଯେଉଁ ପ୍ରକାର ବନ୍ଦୋବସ୍ତ ହୋଇଥିଲା, ତାର ପ୍ରଭାବରେ ସାହେବଙ୍କ ନିଜତ୍ୱ ପରିପ୍ରକାଶ ତାଙ୍କ କଥାବାର୍ତ୍ତାରେ ବେଶ୍ ପରିସ୍ଫୁଟ ହେଉଥାଏ । ସେ କହୁଥିଲେ ଆପଣମାନେ ଦାସ ବାବୁଙ୍କୁ ଯୋଧୁଛନ୍ତି, କିନ୍ତୁ ମୁଁ ତାଙ୍କୁ କଲେଜ ଦିନରୁ ଜାଣେ । କଲେଜରୁ ସାଙ୍ଗ ହୋଇ ପାଶ୍ କଲାପରେ, ଇଞ୍ଜିନିୟରିଂ କଲେଜରୁ ମଧ୍ୟ ସାଙ୍ଗହୋଇ ପାଶ୍ କରି ଗ୍ଲକିରି କଲୁ । ଦାସବାବୁ ଗରିବ ଘରର ପିଲା, ପାଠ ପଢ଼ିଲା ବେଳେ କଷ୍ଟରେ ପଢ଼ୁଥିଲେ । ଜୀବନଯାକ ଅଭାବ ଅନଟନର ସମ୍ମୁଖୀନ ହୋଇ ମଧ୍ୟ ସେ କେବେହେଲେ ତାଙ୍କ ଲକ୍ଷ୍ୟପଥରୁ ଖସି ଯାଇନାହାଁନ୍ତି । ଇଞ୍ଜିନିୟରମାନଙ୍କ ମଧ୍ୟରେ ଦାସବାବୁଙ୍କ ପରି

ସଚ୍ଚୋଟ, କର୍ମଦକ୍ଷ, ଗୁଣୀ ଇଞ୍ଜିନିୟରର ବହୁତ କମ୍ । ତାଙ୍କର କାମକୁ କେହି ଖୁଣି ପାରିବେନି । ଆପଣମାନେ କହିପାରନ୍ତି, ସେ କାହାଠୁ ପଇସା ନିଅନ୍ତିନି କି କାହାକୁ ଦିଅନ୍ତିନି । ଦିଦି ଆମେ ସମସ୍ତେ ଦବାନବା କଥାକୁ ଭଲ ଭାବେ ଚିନ୍ତା କରିବା, କୁହନ୍ତୁ ତ, ଆମେ କାହାକୁ ଠକୁଛେ ? ମୋତେ ବାଧ କରାଯାଉଛି ପୋଷ୍ଟିଂ ପାଇଁ ଗୃରିଲକ୍ଷ ଦବାକୁ । ମୁଁ ସେ ଗୃରିଲକ୍ଷ ଆପଣମାନଙ୍କ ଠାରୁ ଆଦାୟ କରି ଦେଉଛି । ଆପଣମାନେ ଲକ୍ଷେ ଟଙ୍କାର କାମ କରି ତିନିଲକ୍ଷ ଟଙ୍କାର ବିଲ୍ ଦଉଛନ୍ତି, ମୁଁ ତାକୁ ପାଶ୍ କରୁଛି । ଆମେ ଏଇ କେତେ ଜଣ ମିଶି ଆମ ଦେଶର ହଜାର ହଜାର ଗରିବ ଲୋକଙ୍କୁ ଠକିଲେ କି ନାହିଁ ? ଭଗବାନଙ୍କ ଦୟାରୁ ମୁଁ ଇଞ୍ଜିନିୟର । ଦେଖିବାକୁ ଗଲେ ମୋ ଦେଶରେ, ମୋ ତଳକୁ ଶହେ ଲୋକରୁ ପଞ୍ଚାନବେ ଜଣ ଅଛନ୍ତି । ମୁଁ ସେମାନଙ୍କ ଉପରେ ଥାଇ ମଧ, ଏଇ କାମ କରୁଛି । ଯେଉଁ ଦେଶ-ବାସୀଙ୍କ ଟଙ୍କାରେ ଇଞ୍ଜିନିୟରିଂ ପାଶ୍ କଲି, ସେଇ ମାନଙ୍କୁ ଠକୁଛି । କୁହନ୍ତୁ, ମୁଁ ଭଲ ହେଲି ନା ଦାସବାବୁ ?"

ସେମାନଙ୍କ ମଧ୍ୟରୁ ଜଣେ କହିଲେ, "ସାର୍, ରାତି ବେଶି ହେଲାଣି । ଖାଇବା ବନ୍ଦୋବସ୍ତ କରୁଛି ।" କହି ଡାଇନିଂ ହଲରେ ପଶି, ଡିନର ଲଗେଇବାକୁ କହିଲେ । ଅନ୍ୟମାନେ ଇଞ୍ଜିନିୟର ସାହେବଙ୍କ କଥା ଶୁଣି, କଥାବାର୍ତ୍ତାରେ ଆଉ ଆଗେଇବାକୁ ଇଚ୍ଛା କରୁନାହାନ୍ତି ।

ସେମାନଙ୍କୁ ଚୁପ୍‌ଚାପ୍ ଦେଖି ସାହେବ କହିଲେ, "ମଣିଷ ନିଜର ସତ୍ତାକୁ ଭୁଲି ଜାକ୍‌ଜମକିଆ ପୋଷାକ ପିନ୍ଧି, ସେ ଯାହାନୁହେଁ ତାକୁଇ ସମସ୍ତଙ୍କ ଆଗରେ ପରିସ୍ଥିତିରେ ପଡ଼ି ପରିପ୍ରକାଶ କରିଥାଏ । କିନ୍ତୁ ଯେତେବେଳେ ସେ ପୋଷାକ ଖୋଲେ, ତାର ପ୍ରକୃତ ରୂପ ସେ ନିଜେ ଦେଖେ । ଦାସବାବୁ ଆଉ ମୋ ଭିତରେ ତଫାତ୍ ସେଇଆ । ମୁଁ ଆଧୁନିକ ମଣିଷର ଖୋଳ ପିନ୍ଧି ବୁଲୁଛି, ମାତ୍ର ଦାସ ବାବୁ ମଣିଷ ପରି ବୁଲୁଛନ୍ତି । ସେ ମଣିଷ ପରି କାମ କରୁଥିବା ହେତୁ ଆପଣମାନେ ତାଙ୍କୁ ତିରସ୍କାର କରୁଛନ୍ତି ।"

ସେତେବେଳକୁ ଆଗ ବାବୁଜଣଙ୍କ ଡିନର ଲଗିଲାଣି ବୋଲି କହି ସମସ୍ତଙ୍କୁ ଡାକିନେଲେ ।

ବାବୁମାନେ ଡିନର ଖାଇଲା ପରେ ଶୋଇଗଲେ । ବାକି ଯେଉଁମାନେ ବାହାରୁ ଆସିଥିଲେ, ସେମାନେ ଗାଡ଼ି ଧରି ଚାଲିଗଲେ ।

ସେମାନଙ୍କ ଖିଆପିଆ ସରିଲା ପରେ ଚଉକିଦାର ଇନ୍ଦ୍ରଙ୍କୁ ଉଠାଇ ଖାଇବାକୁ ଡାକିଲେ । ରାତିଅଧିଆ ଭୋକିଲାରୁ କିଛି ଖାଇ, ଇନ୍ଦ୍ର ତାଙ୍କ ଶୋଇବା ଯାଗାକୁ

ଆସି ଗଡ଼ପଡ ହେଉଥାନ୍ତି, ଏଇ ସମୟରେ ଚଉକିଦାର ତା କାମସାରି ଆସି ପହଞ୍ଚିଲେ । ଅବେଳାରେ ଖିଆ ହୋଇଥିବା ହେତୁ ଇନ୍ଦ୍ରଙ୍କ ନିଦ ଆସୁନଥାଏ । ଚଉକିଦାରକୁ ଶୋଇବା ଦେଖି ଇନ୍ଦ୍ର କହିଲେ, "ମୁଁ ଯାହା ଏମାନଙ୍କ କଥା-ବାର୍ତ୍ତାରୁ ଶୁଣିଲି, ଏ ଇଞ୍ଜିନିୟର ସାହେବ ତ ଜଣେ ଭଲ ଲୋକ । ଏସବୁ ଅମଣିଷ ସଙ୍ଗେ ମିଶିଲେ କିମିତି" ?

ତାଙ୍କ କଥାଶୁଣି ଚଉକିଦାର କହିଲା, "ବୁଝିଲେ ଗୋସେଇଁ, ଏଇଠି ମୋର ପନ୍ଦର ବର୍ଷ ଚାକିରି ହେଲାଣି । ସବୁ ଦେଖୁଛୁ, ସବୁ ଶୁଣୁଛୁ, ଏ କାନରେ ପୂରାଇ ସେ କାନରେ ବାହାର କରିଦିଏ । ଆମକୁ କଅଣ ମିଳିବ ଏ ବଡ଼ବଡ଼ଆ-ମାନଙ୍କ କଥାରୁ ? ·ଏମାନେ ସବୁ ଭାବନ୍ତି ଆମେମାନେ ଶ୍ରେଷ୍ଠ ଚାକିରି କରିଛୁ, ଚଉକିଦାର ଅଛୁ, ଆମେମାନେ ସମସ୍ତେ ବୋକା, କିଛି ବୁଝୁନି । ହେଲେ ସେମାନଙ୍କ ଧାରଣା ଭୁଲ୍ । ଶ୍ରେଷ୍ଠ ଚାକିରି କଲେ ବି ଆମେ ମଣିଷ, ଆମେ ସବୁ ବୁଝୁ, ସବୁ ଜାଣୁ, ମାତ୍ର ବୁଝିକରି କାହାର ଗୋଟେ କଅଣ କରିଦେବୁ, ସେପରି ଶକ୍ତି ଆମର ନାହିଁ ।

ବାବୁ ଚାରିଲକ୍ଷ ଟଙ୍କା ଦେଇ ଏ ଯାଗାକୁ ଆସିଲେ । ସେ ଟଙ୍କାତକ କିଏ ନେଲା ଆଉ କିଏ ଦେଲା ଆପଣ ବୁଝୁଥିବେ । ତାହେଲେ ଆମ ଦେଶରେ କାମ କଅଣ ହେବ ? ଗରିବଗୁରୁବା କି ଉପକାର ପାଇବେ ? ଏଇ କେତେଜଣ ଯେଉଁ-ମାନେ ଗରିବଗୁରୁବାଙ୍କ ଧନମାରି ସେମାନଙ୍କ ଟ୍ରେଜେରୀରେ ଭର୍ତ୍ତି କରୁଛନ୍ତି, ସେଇମାନେ ବଡ଼ଲୋକ ହେଲେ । ଆମ ଗରିବଙ୍କ ଅବସ୍ଥା ଯାହା ସେଇଆ । ଏଇ ଇଞ୍ଜିନିୟର ସାହେବକୁ ବର୍ଷକ ଭିତରେ ତିନଠା ଏପଟ ସେପଟ କଲେ । ବଦଲେଇ ହୁଆ ଅନେଇଲା ପରି ସେ ତାଙ୍କ ପିଲାଙ୍କୁ ଧରି କେତେ କଲବଲ ହୋଇ ପନ୍ଦରଦିନ ଏଠିତ, ମାସେ ସେଠି । ସରକାରଙ୍କର କୁଆଡ଼େ ଅ.ଇନ୍ ଅଛି ତିନବର୍ଷ ନହେଲେ କାହାକୁ ବଦଳି କରିବନି । କିନ୍ତୁ ସେ ଆଇନ୍ ଭିତରେ ଏ ଆଇନ ବି ଅଛି, ବର୍ଷକ ଭିତରେ ତିନଥର ବଦଳି ହୋଇ ପାରିବ । ଯଦି ସରକାରୀ ଚାକିରିଆ କାମକା ଲୋକ ନୁହଁନ୍ତି, ତାଙ୍କୁ ଗୋଟେ ଯାଗାରୁ ଅନ୍ୟ ଦଇଟା ଯାଗାକୁ ଦମାସ ଭିତରେ ବଦଳି କରିଦେଲେ କଅଣ ତାଙ୍କର କର୍ମଦକ୍ଷତା ବଢ଼ିଯିବ ? ନାଁ, ଏ ସବୁ ମନରେ ଅନ୍ୟ କିଛି ନଥାଇ, କଥା ନାହିଁ । ବାବୁ ଯେତେବେଳେ ଦେଖିଲେ, ସେ ଏପଟ ସେପଟ ହୋଇ ହଇରାଣ ହେଉଛନ୍ତି, ଏଇ ଅମଣିଷଗୁଡ଼ାକ ଯାଇ ତାଙ୍କ ପାଖେ ପହଞ୍ଚି ଫସୁଲାଇଲେ । କାମ ହେଲା, ଏବେ ବାବୁ ବୁଢ଼ୀଆଣି ଜାଲ ଭିତରେ । ବିଲ୍ ପାସ୍ କରିବେନି ତ କୁଆଡ଼େ ଯିବେ ?"

ତାଙ୍କ କଥା ଶୁଣି ଇନ୍ଦ୍ର କହିଲେ "ତାଙ୍କ କାମକୁ କଅଣ ଅନ୍ୟମାନେ ଦେଖୁନାହାନ୍ତି ?"

ହଁ, କେତେ କାମ ଦେଖି ହୁଏ, କେତେ କାମ ଦେଖି ହୁଏନା । ଧରନ୍ତୁ, କେନାଲ ଭିତର ଖୋଳାହେବ, ସେ କାମକୁ ଠିକ୍ ବର୍ଷାଦିନ ପର୍ଯ୍ୟନ୍ତ ଗଡେଇ ଗଡେଇ ରଖିଥିବେ । ବର୍ଷା ଆସିବାର ପନ୍ଦର ଦିନ ପୂର୍ବରୁ କାମ ଆରମ୍ଭ ହେବ । ପ୍ରଥମ ବର୍ଷା ଆସିଲା ପରେ କେନାଲରେ ପାଣି ପୂର୍ଣ୍ଣ । ପାଣି ହେଲେ, ସେଠି ମାପ କଅଣ ହେବ ? ହଜାରେ ଟଙ୍କାର କାମ ହୋଇ ନଥିବ, ଦଶ ହଜାର ଟଙ୍କାର ବିଲ୍ । ସେମିତି କଣ୍ଟ୍ରାକ୍ଟରମାନେ ମାଟି କାମରେ ମୂଲିଆଙ୍କୁ ମାଟି ହଜାର ଅଶୀ, ଶହେ ଟଙ୍କା ଦେବେ, ବିଲ୍ ନେଲାବେଳକୁ ଅଢ଼େଇଶହ, ତିନିଶହ । ସବୁ ଚାଲିଛି । ଉପରେ ଯଦି ସବୁ ଚାଲିପାରିବ, ତଳେ କାହିଁକି ଚାଲିବନି ? ଏ କାମରେ ଉପରକୁ ନେଇ ତଳ କି ତଳକୁ ନେଇ ଉପର ବୁଝିବା କାଠିକର ପାଠ ।

ହଉ, ଗୋସେଇଁ ରାତି ବେଶି ହେଲାଣି ଶୋଇପଡ଼ । ଇଚ୍ଛା ଯଦି ହଉଛି, କାଲି ସକାଳୁ ଏଇ ପାଖରେ କେତେଟା ବନ୍ଧ କାମ ଦେଖ, ଯେଉଁମାନେ କାମ କରୁଛନ୍ତି ତାଙ୍କୁ ପଚାର, ଯେଉଁମାନେ ଉପକାର ପାଇବେ ସେମାନଙ୍କୁ ବି ପଚାର କଥାଟା ବୁଝ—ଦେଖିବ ସବୁ ଘଟଣା ଜଣାପଡ଼ିବ ।"

ସକାଳୁ, ଇନ୍ଦ୍ର ଡାକବଙ୍ଗଳା ଚଉକିଦାରକୁ ଗଭୀର କୃତଜ୍ଞତା ଜଣାଇ ବିଦାୟ ନେଲେ । ଗରିବ, ଚତୁର୍ଥ ଶ୍ରେଣୀ କର୍ମଚାରୀ ହେଲେ କଅଣ ହେବ, ତା' ପାଖେ ମଣିଷପଣ ଥିବାର ଇନ୍ଦ୍ର ଉପଲବ୍ଧି କଲେ ।

ଡାକବଙ୍ଗଳାଠାରୁ ତାଙ୍କୁ ବେଶିଦୂର ଯିବାକୁ ପଡ଼ିନଥିଲା । ପ୍ରାୟ ବାଟ ଗୋଟେ କିଲୋମିଟର ଗଲାପରେ, ବଢିରେ ଭାଙ୍ଗିଯାଇଥିବା କେନାଲ ବନ୍ଧର ମରାମତି କାମ ତାଙ୍କ ଆଖିରେ ପଡ଼ିଲା । କାମ ବି ଚାଲିଥାଏ । ଶ୍ରମିକମାନେ ଯେତେ-ବେଳକୁ ଗୋଟିଏ ଗୋଟିଏ କାମ ଉପରକୁ ଗଡ଼ୁଥାନ୍ତି, କିଏ ବନ୍ଧମୂଳେ କୋଡ଼ି କୋଦାଳ ଥୋଇ ମହା ଆନନ୍ଦରେ ପାନ ମଳୁଥାଏ ତ କିଏ ଗଛମୂଳେ କୋଦାଳ ବେଣ୍ଟ ସଜାଡୁଥାଏ । ପେଟି କଣ୍ଟ୍ରାକ୍ଟର ବାବୁ, ସାଇକେଲକୁ ଖଜୁରୀ ଗଛରେ ଡେ଼ରି, ପକେଟରୁ ଖଣ୍ଡେ ସିଗାରେଟ୍ ବାହାର କରି ପିଉ ପିଉ କାମକୁ କିଏ ଆସିଲା, କିଏ ନ ଆସିଲା ତା'ର ହିସାବ ନେଉଥାନ୍ତି । ଏଇ ସମୟରେ ଇନ୍ଦ୍ର-ଜାଗା ଉପରେ ପହଞ୍ଚିଲେ । ହଠାତ୍ କଥାଟା ସିଧା ସଳଖ ପଚାରିଦେଲେ ପେଟି କଣ୍ଟ୍ରାକ୍ଟର ବାବୁ କିଛି ନକହି ପାରନ୍ତି ଭାବି, ସେ ତାଙ୍କ ସହିତ ଅନ୍ୟ କଥା ପ୍ରସଙ୍ଗ-କ୍ରମେ, ଗତ ରାତିରେ ବଙ୍ଗଳାରେ ଘଟିଥିବା ଘଟଣା ଇତ୍ୟାଦି କହୁଥିଲେ ।

ପେଟି କଣ୍ଟ୍ରାକ୍ଟର ବାବୁ ତାଙ୍କ କଥାରେ ବେଶ୍ ଖୁସି ହୋଇଗଲେ । ତା'ଛଡ଼ା ଇନ୍ଦ୍ର ମଧ୍ୟ ତାଙ୍କ ମାଟି କାମ ଭଲ ହୋଇଛି ବୋଲି କଥା ଭିତରେ କହି ସାରିଥାନ୍ତି ।

ଯୁବକ ଗ୍ରାମୀଣ କଣ୍ଟ୍ରାକ୍ଟର ବାବୁ କହିଲେ, "ସରକାରଙ୍କ ଯେତିକ ଟଙ୍କା ଏ ବନ୍ଧ ମରାମତି, କି ଯେଉଁ ବନ୍ଧ ତିଆରି ପାଇଁ ଆସୁଛି, ସେ ସମସ୍ତ ଯଦି ସେଇ କାମରେ ଲାଗନ୍ତା, ତା'ହେଲେ ଏ ବନ୍ଧ କାମ ଆପଣ ଯାହା ଦେଖୁଛନ୍ତି, ତାହା ଆହୁରି ଶକ୍ତ, ଆହୁରି ମଜବୁତ୍ ହୁଅନ୍ତା । ଗଲବର୍ଷ ବନ୍ୟା ପରେ ଏଇ ବନ୍ଧ କାମ ହୋଇଥିଲା । ସେତେବେଳେ ୨୫୦୦୦ ଟଙ୍କାର କାମ ଏଇଠି ହୋଇଥିଲା । ଏ ବର୍ଷ ବନ୍ୟାରେ ସେ ବନ୍ଧ ଅଧାଅଧି ଖସିଗଲା । ପୁଣି ୨୦୦୦୦ ଟଙ୍କା ମିଳିଛି କାମ ଲାଗି । କଣ୍ଟ୍ରାକ୍ଟର ଓ ବାବୁ କାମ ଧରିଲେ । ଆମେ ତାଙ୍କଠାରୁ ଲିଜ୍ ଆଣିଲୁ । ସେ ନେଲେ "କୋଡ଼ିଏ"ରେ, ଆମେ ଆଣିଲୁ ସେଇ କାମକୁ "ବାର"ରେ । ଏଇ 'ବାର' ଭିତରୁ ଆମ ଲାଭରଖି କାମ କରିବୁ । ଏଇଥିରୁ ବୁଝୁଥିବ ବନ୍ଧକାମ କେତେ-ଦୂର ମଜବୁତ୍ ହେବ । ଖାଲି ବନ୍ଧକାମ କାହିଁକି, ବର୍ଷକ ତଳେ ମୁଁ ତ ବ୍ରିଜ କାମପାଇଁ ପେଟି କଣ୍ଟ୍ରାକ୍ଟର ଥିଲି । ସେଠି ବି ସେଇ ଘଟଣା । ଶହେ ଟଙ୍କାରୁ ଚାଳିଶ, ପଇଁଚାଳିଶ ଟଙ୍କାର କାମ ହୁଏନା । ବାକିରେ ଯାହା ହେଉଥିବ । ସିମେଣ୍ଟ ଯେଉଁ ଯାଗାରେ ଦଶଟା ଲାଗିବ, ସେଠି ଯଦି ଛଅଟା ଦିଆଯିବ, ତା'ହେଲେ ସେ ବ୍ରିଜର ଉମର ଦଶବର୍ଷ ଯାଗାରେ ଛ ବର୍ଷ ହେବ ।"

ପେଟି କଣ୍ଟ୍ରାକ୍ଟର ବାବୁ କଥାବାର୍ତ୍ତା ପରେ ସାଇକେଲ ମାରି ଆଗକୁ ଗଲେ । ଆଗରେ ମଧ୍ୟ ତାଙ୍କର ଆଉ ଗୋଟେ ଯାଗାରେ କାମ ଚାଲିଛି । ତାଙ୍କ ଯିବାପରେ ଇନ୍ଦ୍ର କାମକାମାନଙ୍କୁ କାମ ସମ୍ପର୍କରେ ପଚାରିଲେ ।

ତାଙ୍କ ଭିତରୁ ଜଣେ କହିଲା, ଶୀତଦିନେ ଧାନ କଟାକଟି ସରିଲେ ଆଉ ବର୍ଷାଦିନେ ବିଲବାଡ଼ି ରୁଆରୁଇ ସରିଲା ପରେ ମଫସଲ ଅଞ୍ଚଳରେ ମୂଲିଆମାନଙ୍କ ପାଇଁ କାମ କଅଣ ଅଛି ? ସେଇ ସମୟରେ ଏମାନେ ମାଟି କାମପାଇଁ ଆସନ୍ତି । ମାଟି କାମକରି ସେମାନେ ଦିନକୁ ଆଠ ଦଶଟଙ୍କା ରୋଜଗାର କରୁଛନ୍ତି । କଣ୍ଟ୍ରା-କ୍ଟର କେତେ ନେଲା, କେତେଦେଲା ସେଥିରୁ ତାଙ୍କୁ କଅଣ ମିଳିବ ।

ତାଙ୍କ କଥାଶୁଣି ଇନ୍ଦ୍ର କହିଲେ—'ହଇଓ ବାବୁ । ଏ କଣ୍ଟ୍ରାକ୍ଟରମାନେ ମାଟି ହଜାର ପାଇଁ ସରକାରଙ୍କ ଠାରୁ ତିନିଶହ ଟଙ୍କା ଆଣୁଛନ୍ତି ଆଉ ତୁମମାନଙ୍କୁ ଦେଢ଼ଶହ ଟଙ୍କା ଦେଉଛନ୍ତି । ଯାଗାଯାଗାରେ ତା'ଠାରୁ ବି କମ୍ । କାହିଁକି ତୁମେ-ମାନେ ଅଧିକା ପାଇଁ କହୁନ ?'

ତାଙ୍କ କଥାଶୁଣି ଶ୍ରମିକ ଜଣକ କହିଲା—"ବାବୁ ଯାହା ମିଳୁଛି, ଆମେ ଅବେଳାରେ ଚଳିଯାଉଛୁ । ଏ କଣ୍ଟ୍ରାକ୍ଟର ସଙ୍ଗେ ଗଣ୍ଡଗୋଳ କଲେ ସେ ବ୍ରହ୍ମପୁର କି ଆଉ କୁଆଡୁ ଲୋକ ଆଣି କାମ କରିବ ! ଆମ ଛୁଆମାନେ ହଇରାଣ ହେବେ ।

ତେଣୁ ସେ ସରକାରଙ୍କଠାରୁ ଯାହା ନଉଛି ନଉ, ଆମେ ତ କାମ ପାଉଛୁ, ଆଉ କାହିଁକି ପ୍ରତିବାଦ କରିବୁ ?"

ଇନ୍ଦ୍ର ଆଉ ମୂଲିଆଙ୍କ ସଙ୍ଗେ ଅଧିକା କଥାବାର୍ତ୍ତା ନହୋଇ ବାଟ ଧରି ଆଗକୁ ଚାଲିଲେ । କିଛିବାଟ ଗଲାପରେ, ସଡ଼କ ଉପରେ ଗ୍ରାମବାସୀ କେତେଜଣ ଠିଆହୋଇ କଥାବାର୍ତ୍ତା ହେବାର ଦେଖି, ତାଙ୍କ ସଙ୍ଗେ କଥାବାର୍ତ୍ତା ଆରମ୍ଭ କଲେ । ପ୍ରସଙ୍ଗ କ୍ରମେ, ମାଟିକାମ, ବନ୍ଧ ମରାମତି କଥା ପଚାରିଲେ । ତାଙ୍କ କଥା ଶୁଣି ଗ୍ରାମବାସୀମାନେ କହିଲେ, 'ଆମକୁ ସେ କଥା କାହିଁକି ପଚାରୁଛ ଭାଇ ? ସରକାର କେତେ ଦଉଛି ମୂଲିଆମାନେ କେତେ ନଉଛନ୍ତି, କଣ୍ଟ୍ରାକ୍ଟର କେତେ ମାରୁଛି ଆମକୁ ସେଥିରୁ କଅଣ ମିଳିବ ? ବନ୍ଧ ଭାଙ୍ଗିଲେ ଆମେମାନେ 'ମନ୍ତ୍ରୀ, ଏମ୍.ଏଲ୍‌ଙ୍କୁ ଘେରାଉ କରୁ, ଅନଶନ କରୁ, ଦରକାର ବେଳେ ଲାଠି ଧରି ସରକାରୀ ଗାଡ଼ିର କାଚ ଭାଙ୍ଗୁ । ତା'ପରେ ତ କାମ ହୁଏ । କାମ ହେଲେ ହେଲା । ଆମର ଦାବୀ ହାସଲ ହେଲା ।"

ତାଙ୍କ କଥା ଶୁଣି ଇନ୍ଦ୍ର ମନେ ମନେ ଭାବିଲେ—ଭଲ ଲୋକତ ଏମାନେ ? ଏଇମାନଙ୍କ ଟଙ୍କାରେ କାମ ହେଉଛି । କାମ କିମିତି ହଉଛି, କେତେଟଙ୍କା ଖର୍ଚ୍ଚ ହେଉଛି, ଏକଥା ଏମାନେ ବୁଝିବେନି । ମାତ୍ର ସବୁ କଥାରେ ଦାବୀ—ସରକାରଙ୍କ ପାଖେ ଦାବୀ, ସେ ଯେଉଁ ସରକାର ହୁଅନ୍ତୁ ।

ଏଇ କେତେଦିନ ଗସ୍ତକଲା ପରେ, ମଫସଲ ଅଞ୍ଚଳରେ ଘଟୁଥିବା କେତେ-ଗୁଡ଼ିଏ ଘଟଣା ଇନ୍ଦ୍ର ନିଜ ଆଖିରେ ଦେଖିଲେ । ଆଉ ଅଧିକା ଦିନ ଗସ୍ତକରିବାକୁ ତାଙ୍କ ମନ ବଳେଇଲାନି । ଭାବିଲେ, ଏ ଯେଉଁ ଘଟଣା ଗୁଡ଼ିକ ମଫସଲ ଅଞ୍ଚଳରେ ଦେଖିଲେ, ତା'ର ମୂଳ ଅଫିସଗୁଡ଼ିକ ତ 'ରାଜଧାନୀ'ରେ । ସେଠାକୁ ଯାଇ ସେଇ ଅଫିସ ମାନଙ୍କରେ ଏ ବିଷୟରେ ପଚାରି ବୁଝିଲେ, ଘଟଣା ଉପରେ ସଠିକ ଖବର ମିଳିବ ।

ରାଜଧାନୀ ବସ୍ ଧରିବାକୁ ଗାଁ ମୁଣ୍ଡ ଛକ ପାଖେ ଯାଇ ଅପେକ୍ଷା କଲେ । ସେତେବେଳକୁ ଛକପାଖେ, ପାଖ କଲେଜରୁ ଆଠ ଦଶଜଣ ଛାତ୍ର ବସପାଇଁ ଅପେକ୍ଷା କଲାପରି ଠିଆ ହୋଇଛନ୍ତି । ଇନ୍ଦ୍ର ଭାବିଲେ ଏମାନେ ସମସ୍ତେ ବୋଧେ ରାଜଧାନୀ ଆଡ଼େ ଯିବେ । ସେଇଆ ଭାବି ସେ ସେମାନଙ୍କ ଭିତରେ ମିଶି ଠିଆହେଲେ ।

କିଛି ସମୟ ପରେ, ଜଣେ ଛାତ୍ର ପଚାରିଲେ, "କଅଣ, ଗୋସେଇଁ ଅମ ସଙ୍ଗେ ଧାରଣା ଦେବେ ? ଧାରଣା ଦେବେ ଯଦି ଆମ ସଙ୍ଗେ ମିଶନ୍ତୁ, ନହେଲେ ଅଲଗା ଠିଆ ହୁଅନ୍ତୁ ।"

ପିଲାଙ୍କ କଥା ସେ କିଛି ବୁଝି ନପାରି କହିଲେ—"ସେ ରାଜଧାନୀ ଯିବାପାଇଁ ବସ ଧରିବାକୁ ଅପେକ୍ଷା କରିଛନ୍ତି ।"

ତାଙ୍କ କଥା ଶୁଣି ଆଉ ଜଣେ ଛାତ୍ର କହିଲେ—"ବସ୍ ଏ ଛକରୁ ଆଗକୁ ନଯିବା ପାଇଁ ଆମେମାନେ ଏଠାରେ ଧାରଣା ଦେବୁ ବୋଲି ଠିଆ ହୋଇଛୁ । ଆପଣ ଜାଣନ୍ତିନି କି ସରକାର ବସଭଡ଼ା ଦେଢ଼ଗୁଣ କରିଦେଲେ ! ବସଭଡ଼ା ବୃଦ୍ଧି ବିରୁଦ୍ଧରେ ଆମର ଏ ଗଣଧାରଣା । ଭଡ଼ା କମାଅ ନହେଲେ ଚକା ଆଗକୁ ଗଡ଼ିବାକୁ ଦିଆଯିବନି ।"

ଛାତ୍ରମାନଙ୍କୁ ଦେଖି ସେ ଗାଁ ପାଖର ଆଉ କେତେକ ଲୋକ ଜମା ହୋଇ-ଗଲେ । ଲଙ୍ଗଳା ପିଲା କୋଡ଼ିଏଟା ମଧ୍ୟ ମଜାଦେଖିବାକୁ ରାସ୍ତା କଡ଼ରେ ଠିଆ ହୋଇଥାନ୍ତି । ଏମାନଙ୍କୁ ଦେଖି ଛାତ୍ରନେତା ଜଣଙ୍କ ରାଜନୈତିକ ନେତାଙ୍କ ଭଳି ଭାଷଣ ଆରମ୍ଭ କରି ସମ୍ମିଳିତ ଲଙ୍ଗଳା, ଅଧଲଙ୍ଗଳା ଜନତାକୁ ଉଦ୍‌ବୋଧନ ଦେବାକୁ ଲାଗିଲେ । ତାଙ୍କ ଭାଷଣ ଭିତରେ ବସଭଡ଼ା ବୃଦ୍ଧି ଦ୍ୱାରା ସରକାର 'ଷଣ୍ଢ କି କଳାବ୍ରାହ୍ମଣ ମାରିବା' ପରି ମହାପାତକ କରିଛନ୍ତି ବୋଲି, କିଛି ନବୁଝିଥିବା ଜନତାକୁ ଉଚ୍ଚସ୍ୱରରେ ଭାଷଣ ଦେଇ ବୁଝାଉଥାନ୍ତି । ବେଳେବେଳେ ସେଇ ଛାତ୍ର-ମାନଙ୍କ ଭିତରୁ ଜଣେ ଅଧେ ଉଦ୍‌ବୋଧନ ଦେଉଥିବା ଛାତ୍ର ଜଣଙ୍କୁ ଉତ୍ସାହିତ କରିବାପାଇଁ କରତାଳି ଦ୍ୱାରା ସମର୍ଥନ ଜଣାଉଥାନ୍ତି । ସେମାନଙ୍କ କରତାଳି ଦବା ଦେଖି, ସମ୍ମିଳିତ ଜନତା ମଧ୍ୟ କରତାଳି ପିଟୁଥାନ୍ତି । ବରଗଛ ମୂଳ ଛକଟି ବେଶ୍ ସରଗରମ ହୋଇ ଉଠୁଥାଏ । ଗାଁ ଝିଅବୋହୂ, ପୋଖରୀକୁ ଗାଧୋଇ ଆସି ଟିକେ ଦୂରରୁ ପୋଖରୀ ହୁଡ଼ା ଉପରେ ରହି, ମାଠିଆ ଥୋଇ ଏ ନବୀନ ଦୃଶ୍ୟ ଉପଭୋଗ କରୁଥାନ୍ତି ।

କିଛି ସମୟ ପରେ ଇନ୍ଦ୍ର ଜଣେ ଛାତ୍ର ନେତାଙ୍କୁ ଗଛମୂଳକୁ ଡାକି ନେଇ ପଚାରିଲେ, ଆପଣମାନେ ତ ସବୁ ଶିକ୍ଷିତ ଲୋକ । ଜାଣିଥିବେ, ଆମ ଦେଶରେ ଚାହିଦା ଅନୁଯାୟୀ ପେଟ୍ରୋଲ ଉତ୍ପନ୍ନ ହେଉନଥିବା ହେତୁ ବାହାର ଦେଶମାନଙ୍କରୁ ପେଟ୍ରୋଲ ଏବଂ ପେଟ୍ରୋଲଜାତୀୟ ପଦାର୍ଥ ଆଣୁଛୁ । ଏବେ ସେଇ ଦେଶମାନେ ପେଟ୍ରୋଲ ଦର ବଢ଼ାଇଲେ, ତେଣୁ ଆମ ଦେଶ ଭିତରେ ପେଟ୍ରୋଲ, ଡ଼ିଜେଲ ଦାମ୍ ବଢ଼ିଲା । ସ୍ୱାମଧରେ ମୋଟର ଗାଡ଼ିମାନଙ୍କର ଚକା ଦାମ୍, ସ୍ପେୟାର ପାର୍ଟ୍‌ସ ଦାମ୍ ମଧ୍ୟ ଦେଢ଼ଗୁଣ ବଢି ଗଲଣି । ଏ ସମସ୍ତ ଜିନିଷର ଦରଦାମ୍ ବଢିଲେ, ଗାଡ଼ିଭଡ଼ା ନ ବଢିଲେ ଗାଡ଼ି ଚାଲିବ କିମିତି ? ଆପଣମାନେ ତ ପ୍ରାଇଭେଟ୍ ଗାଡ଼ି, ମେଟାଡ଼ୋରମାନଙ୍କରେ ଅଧିକା ପଇସା ଦେଇ ଯାଉଛନ୍ତି, ଆଉ

ସରକାର ଯେତେବେଳେ ନ୍ୟାଯ୍ୟ ଦୃଷ୍ଟିରୁ ଗାଡ଼ିଭଡ଼ା ବଢ଼ାଇଲେ, ଆପଣମାନେ ଗଣଧାରଣା ଦେବାକୁ ଆଗେଇ ଆସୁଛନ୍ତି ? ସରକାରୀ କର୍ମଚାରୀମାନଙ୍କ ଦରମା ବଢ଼ିଲା, ବଜାରରେ ଧାନ, ଚାଉଳ, ପନିପରିବା ଦାମ୍ ବଢ଼ିଲା, ଅଉ ଏ ବସଭଡ଼ା କମିତ କମି କମି ଯିବ ?

ତାଙ୍କ କଥା ଶୁଣି ଛାତ୍ରନେତା ଜଣକ କହିଲେ —ବୁଝିଲେ ଗୋସେଇଁ, ତୁମେ ଆଉ ବେଶି ପଣ୍ଡିତଗିରି ବାହାର କରନା । ଏ ସବୁ କଅଣ ଆମେ ବୁଝୁନୁ ? ଆମ ଦେଶର 'ସମ୍ବିଧାନ' ବିଷୟରେ ଜାଣ ? 'ସମ୍ବିଧାନ' ଅନୁଯାୟୀ ଦେଶରେ ଗଣତନ୍ତ୍ର ଶାସନ ଚାଲିଛି । ଗଣତନ୍ତ୍ରରେ ବିରୁଦ୍ଧାଚରଣ ନ ରହିଲେ ଗଣତନ୍ତ୍ର "ଏକଛତ୍ର-ବାଦ"ରେ ପରିଣତ ହୋଇଯିବ । ତା'ଛଡ଼ା ବିରୋଧିଦଳମାନଙ୍କ ପାଇଁ ସୁଯୋଗ କଅଣ ସବୁବେଳେ ଆସେ ? ବସ୍‌ଭଡ଼ା ବଢ଼ିଛି, ଗୋଟେ ସୁଯୋଗ ଆସିଛି । ତାର ପ୍ରତିବାଦ କରିବାକୁହିଁ ହେବ । ତେଣୁ ଗଣଧାରଣା, ଷ୍ଟ୍ରାଇକ୍, ସଭା ସମିତି ମାଧ୍ୟମରେ ଏହାର ପ୍ରତିବାଦ ଚାଲିଛି, ଚାଲିବ । ଆପଣ ଭାବୁଛନ୍ତି, ଅମେ ଯେତେଜଣ ଏଠି ଅଛୁ ସମସ୍ତେ କଅଣ ଛାତ୍ର ? ନା ଜଣେ ବି ନୁହଁ—କେବେ ଥିଲୁ, ଏବେ ନାହୁଁ । କିନ୍ତୁ ସମସ୍ତଙ୍କୁ କହୁଛୁ ଆମେ "ଛାତ୍ର ସମାଜ", କାରଣ ଛାତ୍ରମାନଙ୍କୁ ସରକାରଙ୍କର ଡ଼ର ।

ଇନ୍ଦ୍ର ତାଙ୍କ କଥା ଶୁଣି କହିଲେ; "ସରକାର ଯାହା କରିବେ, ଆପଣ କଅଣ ଭୁଲ ହଉ ଠିକ୍ ହଉ ତାର ପ୍ରତିବାଦ କରିବେ ?"

ଛାତ୍ର ବୋଲାଉଥିବା ଯୁବକ ଜଣକ କହିଲେ "ନିଶ୍ଚୟ" ।

ଇନ୍ଦ୍ର କହିଲେ ସରକାର ଯଦି ଷଣ୍ଢଟେ ଆପଣଙ୍କ ଆଗରେ ଠିଆ କରିବେ ?

ଛାତ୍ର ଯୁବକ ଜଣକ କହିଲେ—"ଅମେ କହିବୁ ସେଇଟା ଷଣ୍ଢ ନୁହଁ—ଗୋଟେ ଗାଈ" ।

ଇନ୍ଦ୍ର କହିଲେ, ଯାହା ହେଉ ଆପଣମାନେ ପ୍ରକୃତ ଗଣତନ୍ତ୍ରର ଉପଯୁକ୍ତ ଦାୟାଦ । କିନ୍ତୁ ଗଣଧାରଣା ଦିଅ ପଛେ, ଗାଡ଼ି ପୋଡ଼ାପୋଡ଼ି କରନା କି ନଷ୍ଟ କରନା ।

ଯେଉଁମାନେ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଁ ଶ୍ରୀ ମନ୍ଦିରକୁ ଯାଉଥିବେ, ସେମାନେ ନିଶ୍ଚୟ ମନ୍ଦିର ପରିସରରେ ପାଣ୍ଡମାଙ୍କଡ଼ମାନଙ୍କ ଦର୍ଶନ ପାଇଥିବେ । ଯୁଗଯୁଗ ଧରି ଏମାନେ ଜଗନ୍ନାଥ ମନ୍ଦିର ପରିବେଶର ସଂସ୍କୃତି ସଙ୍ଗେ ଜଡ଼ିତ । ଯାତ୍ରୀମାନଙ୍କ ଭୋଗ ଟୋପେଇକୁ କିମ୍ବା ବ୍ୟାଗ ବସ୍ତାନିକୁ ଦଳବାନ୍ଧି ଛଡ଼େଇ ନେଇ ମନ୍ଦିର ଉପରକୁ ଯାଇ ଚିରି ଫିଙ୍ଗିଦେଲେ ମଧ୍ୟ, କେହି କିଛି କୁହନ୍ତିନି ।

କାରଣ ଏମାନେ (ମାନେ, ଏଇ ମାଙ୍କଡ଼ ଦଳ) ଆମ ସଂସ୍କୃତିର ଏକ ଅଙ୍ଗ । ଭଗବାନ ରାମଚନ୍ଦ୍ରଙ୍କୁ ଏମାନେ ବିପଦବେଳେ ଜୀବନ ଦେଇ ସାହାଯ୍ୟ କରିଥିଲେ । ତା'ଛଡ଼ା ଏମାନେ ତ ଆମର ପୂର୍ବ ପୁରୁଷ । ଆଧୁନିକ ଯୁଗରେ ଏହି ମର୍କଟରୂପି ତଥା କଥିତ 'ଛାତ୍ର ସମାଜ' (ପ୍ରକୃତରେ ସେମାନେ ଛାତ୍ର କି ନୁହଁ, କେହି ଜାଣନ୍ତିନି । ମାତ୍ର ୧୬ ବର୍ଷରୁ ୨୨ କିମ୍ବା ୨୩ ବର୍ଷ ହୋଇଥିଲେ ସେମାନଙ୍କୁ କୌଣସି କଲେଜର ଛାତ୍ର ବୋଲି ଧରି ନିଆଯାଏ ଏବଂ ଏଇ ବୟସର ଯୁବାମାନେ ମଧ୍ୟ ସେଇଆ କହି ପରିଚୟ ଦିଅନ୍ତି) ଯେଉଁମାନେ ଗାଁ ମୁଣ୍ଡ ବରଗଛ ମୂଳେ ବସ ଭଡ଼ା ବୃଦ୍ଧି ବିରୁଦ୍ଧରେ ଧାରଣା ଦେଇଥିଲେ, ସେମାନେ ଆଗରୁ ଲାଇନ ବସ୍ ଆସୁଥିବା ଦେଖି, କିଏ ନାଲିରାସ୍ତା ଉପରେ ଶୋଇଗଲା ତ କିଏ ଅଣ୍ଟାରେ ଅମର-ଡ଼ାଳ ଖୋସି ଠିଆହେଲା ।

ଏମାନଙ୍କ ହାବଭାବ ଦେଖି, ଇନ୍ଦ୍ର ଯେତେବେଳକୁ ଦୂରେଇ ଯାଇଥାନ୍ତି । କିଏ ଜାଣେ କେତେବେଳେ ଗୋପାଳ ଦିଓଟି ତାଙ୍କ ପିଠିରେ ବସିବ, କିଏ କହିପାରିବ !

ଲାଇନ ବସ୍ ଭରପୂର । ଦଶହରା ଛୁଟି ସରିଗଲା ପରେ, ଅଫିସ ଫେରନ୍ତା ମାନଙ୍କର ଭିଡ଼ରେ ବସ ଭିତରେ ଶୋରିଷ ପକେଇବାକୁ ଜାଗା ନଥାଏ । ମାତ୍ର କ'ଣ କରାଯିବ ? ଏମିତି ଗୋଟେ ବେଠିକଣିଆ ଜାଗାରେ ଏମାନେ ଧାରଣା ଦେବେ ବୋଲି କାହାର ବିଶ୍ୱାସ ନଥିଲା ।

ବସ୍ ଠିଆହେବା ମାତ୍ରକେ କେତେଜଣ ଯୁବକ, ବସ୍ ଛାତ ଉପରକୁ ଚଢ଼ିଯାଇ ବସିଲେ । ମଫସଲିଆ ଚାକିରିଆ ଭାଇମାନେ, ଯେ ସିମିତି ଚଢ଼ା ଗୁଡ଼ିଲା ବସ୍ ଉପରେ ନଜର ନଉଥିଲେ, ସେମାନଙ୍କ ଅଣ୍ଟା ଖୋଲି ଦେଇଥିରୁ ଦିଓଟି ପାଟିରେ ପକେଇଲେ । ଆଉ ଜଣେ ଦଳଣେ ଡ୍ରାଇଭର ବାବୁଙ୍କୁ ତଳକୁ ଓହ୍ଲାଇ ବେକରେ ଗୋଟେ କନିଅର ଫୁଲମାଳ ପକେଇ, ତାଙ୍କୁ ଧାରଣାରେ ଯୋଗ ଦେବାକୁ ଅନୁରୋଧ କରୁଥାନ୍ତି । ଆଠଦଶଜଣ ଯୁବକ, ପ୍ରାୟ ଷାଠିଏରୁ ବେଶୀ ଯାଉଥିବା ଲୋକଙ୍କୁ ଅଟକେଇ ଦେଲେ । କାହା ପାଟିରୁ କଥା ବାହାରୁ ନଥାଏ । ସମସ୍ତେ ଖାଲି ଅଫିସ ଡେରି ହୋଇଯିବ ବୋଲି ବ୍ୟସ୍ତତା ମୁହଁର ହାବ ଭାବରେ ପ୍ରକାଶ କରୁଥାନ୍ତି, ମାତ୍ର ଧାରଣାଧାରୀମାନଙ୍କୁ ଦେଖିଲା ମାତ୍ରେ ମୁହଁର ଭଙ୍ଗି ଅଲଗା କରି ଚୁପ୍ ଚାପ ବସ୍ ଭିତରେ ମାଳି ଜପିବା ଢ଼ଙ୍ଗରେ ନିଶ୍ଚଳ ଆଉ ନିର୍ଜୀବ ପରି ବସ ଛାତକୁ ଚାହିଁ ରହିଥାନ୍ତି । ସତେ ଯେପରି ଦଇଟା ପଞ୍ଜାବୀ ଟେରରିଷ୍ଟ ଟୋକା ଗୋଟେ ଇଣ୍ଡିଆନ ଏୟାର ଲାଇନ ଜେଟ ବିମାନକୁ ଆକାଶମାର୍ଗରୁ ଅପହରଣ କରି ନେଇଛନ୍ତି ।

ପ୍ରାୟ ଘଣ୍ଟାକ ପରେ ଦୁ'ଜଣ ବୁଢ଼ାଳିଆ ଲୋକ (ଗାଉଁଲି) ବସରୁ ଓହ୍ଲାଇ ଯୁବକମାନଙ୍କ ସାମ୍ନାକୁ ଆସିଲେ । ସେମାନେ ପ୍ରାୟ ମହଣେ ଲେଖେଁ ଦୁଧଛେନା ଗାଡ଼ିରେ ଲୋଡ଼ କରିଥାନ୍ତି, ରାଜଧାନୀକୁ ନେବେ ବୋଲି । ରାତି ଗୃହରୁଟାରୁ ଗାଁ ଗାଁ ବୁଲି, ଦୁଧ ସଂଗ୍ରହ କରି, ତାକୁ ଛେନା କରି ବ୍ୟବସାୟ ପାଇଁ ରାଜଧାନୀ ନେଉଛନ୍ତି । ସେଠି ଟିକିଏ ପଇସା ଅଧିକ ମିଳିବ । କିନ୍ତୁ ସମୟ ଡେରି ହୋଇଗଲେ ଛେନା ଖରାପ ହେବା ସଙ୍ଗେ ସଙ୍ଗେ ଗରାଖ ମିଳି ନ ପାରନ୍ତି । ଦୁଇଜଣ ଛେନାବେପାରୀ ସେମାନଙ୍କ ଦୁଃଖ ବିନୀତ ଭାବେ ଯୁବଗୋଷ୍ଠୀକୁ କହି ବସ ଛାଡ଼ିବାକୁ ଅନୁରୋଧ କଲେ । ବସଯାତ୍ରୀମାନେ ସମସ୍ତେ ବୃଦ୍ଧି ହାରରେ ଭଡ଼ାଦେଇ ଯାଉଥାନ୍ତି । ଯୁବ-ଗୋଷ୍ଠୀ କିନ୍ତୁ ତାଙ୍କ ଧାରଣା ଯାଗାରୁ ହଟିବାର ଦେଖାଯାଉ ନଥାଏ ।

ବହୁ ଅନୁରୋଧ ପରେ ବେପାରୀ ଦୁଇଜଣ କହିଲେ, 'ହେଲିବାବୁ, ଆମ ଛେନା ପଇସା ଦେଇଦିଅ, ଆମେ ଏଠୁ ପଳେଇବୁ । ଆପଣ ଧାରଣା ଦେଇ ବସ ବନ୍ଦ କରନ୍ତୁ, ଦିନେ କାହିଁକି, ପାଞ୍ଚଦିନ କରନ୍ତୁ ଆମର ଚିନ୍ତା ନାହିଁ, ମାତ୍ର ଆମ ଛେନା ନଷ୍ଟହେଲେ ଆମ ବ୍ୟବସାୟ ବୁଡ଼ିଯିବ ।

ତାଙ୍କ କଥାକୁ କାନ ନ ଦେଇ, ଯୁବକମାନେ ତାଙ୍କୁ ତେରମେରି ଦେଖେଇଲେ । ଛେନା ବେପାରୀ ଦୁଇଜଣ ଭାବିଲେ ଅନ୍ୟ ବାବୁମାନେ ତାଙ୍କୁ ମଦତ୍ ଦେବେ ମାତ୍ର ସମସ୍ତଙ୍କୁ ଚୁପ୍ ଚାପ ଦେଖି ତାଙ୍କ ଭିତରୁ ଜଣେ କହିଲା 'ଆରେ ହରିଆ, ଆଣିଲୁ ମୋ ବାହୁଙ୍ଗିଟା, ଏ ରାଣ୍ଡିପୁଅ ଅନନ୍ତା ଦଳେ ଆମର ପାଞ୍ଚଶହ ଟଙ୍କାର ଜିନିଷକୁ ନଷ୍ଟ କରିବେ ? ଭଲରେ କହିଲେ ଏମାନେ ତେରମେରି ଦେଖେଇ କଥା ହେଉଛନ୍ତି । ଆଣିଲୁ ବାହୁଙ୍ଗିଟା' । ତା'କଥା ସରିଲା ବେଳକୁ ଆର ବେପାରୀ ଜଣକ ଦୁଇଟା ସେକଦିଆ ତଡ଼ା (ବାହୁଙ୍ଗି) ଧରି ହାଜର । ଦୁଜଣଯାକ କାନ୍ଧରେ ବାହୁଙ୍ଗି ପକେଇ ଧାରଣାବାଲାଙ୍କ ସାମ୍ନାକୁ ଯାଇ ଦଶମିନିଟ ଭିତରେ ରାସ୍ତାରୁ ନ ଉଠିଲେ ସେ ତାଙ୍କ କାମ କରିବେ ବୋଲି ଅଣ୍ଟା ଭିଡ଼ି ଠିଆହେଲେ ।

ଧାରଣାଦେଲାବାଲା ଭାବିଲେ, ପ୍ରକୃତରେ ଯଦି ସେମାନେ ରାସ୍ତା ନଛାଡୁଛନ୍ତି, ତାହେଲେ ଏ ଦୁଇଟା ତାଙ୍କ ଦେଖିଲା କାମ କରିଦେବେ । ଗାଲୁଆଙ୍କ ବାରବାଟୀ ଗୃହ ପରି, ତାଙ୍କ ଭିତରୁ ଜଣେ କହିଲା 'ହଉ ଚାଲ, ଆଜି ଛାଡ଼ିଦେଲୁ, କାଲିକି ଦେଖିବା'' କହି ସେମାନେ ରାସ୍ତା ଉପରୁ ହଟିବା ଦେଖି ବସ ଭିତରେ ବସିଥିବା ବାବୁମାନେ ଆସ୍ୱସ୍ତିରେ ନିଶ୍ୱାସ ମାରିଲେ । କିଏ ବେପାରୀ ଦୁଇଜଣଙ୍କୁ ବାହା ବାହା ଦେଖାଉଥାନ୍ତି ତ କିଏ କହୁଥାଏ ଏ ମାଙ୍କଡ଼ ଦଳକୁ ଡରି ଆମର ଏତେ ସମୟ ଗଲାଣି ।

ବସ ଯିବା ଦେଖି ଇନ୍ଦ୍ର ଗଛମୂଳରୁ ଦଉଡ଼ି ବସ ଭିତରେ ବସିଲେ । ମନେ-ମନେ ଭାବିଲେ 'ଏ ଦୁଇଜଣ ବେପାରୀ ଗାଉଁଲୀ ଅଶିକ୍ଷିତ ଲୋକ ହେଲେ କଅଣ ହେଲା, ଏ ଶିକ୍ଷିତ ଲୋକମାନଙ୍କୁ ଉପଯୁକ୍ତ ଶିକ୍ଷା ଦେଲେ । ଯେଉଁ କଥାକୁ ଜନତା ସମର୍ଥନ କରେନା ସେମିତି କଥାକୁ ନେଇ ଅନର୍ଥ ସୃଷ୍ଟି କଲେ, ଏଇ ଅବସ୍ଥା ଭୋଗିବେ ।

( ୨୯ )

ଛେନା ବେପାରୀଙ୍କ ବାହାଦୁରି ଦେଖି, ବସଭଡ଼ା ବିରୋଧି ଧାରଣାଧାରୀ ଯୁବଗୋଷ୍ଠୀ ଧାରଣା ଦେଇଥିବା ରାସ୍ତା ଉପରୁ ଉଠିଗଲା ପରେ ବସ ରାଜଧାନୀ ଅଭିମୁଖେ ବାହାରିଥିଲା । ଇନ୍ଦ୍ର କୌଣସିମତେ ଗହଳି ଭିତରେ ପେଲାଠେଲା କରି ବସ୍ ଭିତରେ ପଶିଲେ । ପରେ ବସିବାକୁ ସ୍ଥାନ ନଥିବା ଯୋଗୁ ଠିଆହୋଇ ଗଲେ ।

ସେଦିନ ରାଜଧାନୀରେ ଗାଡ଼ି ଧଡ଼଼ଅ ପହଞ୍ଚୁ ଦିନ ବାରଟା ଉପରେ । ଯାତ୍ରୀମାନେ ନିଜ ନିଜ ଅଫିସ ଛକମାନଙ୍କରେ ଗାଡିରୁ ଓହ୍ଲାଇ, ଛେନା-ବେପାରୀ ନୃହିଁଙ୍କୁ ଅଜସ୍ର ଧନ୍ୟବାଦ ଦେଇ ଯାଉଥାନ୍ତି । ଇନ୍ଦ୍ର ମଧ୍ୟ ମେନ୍ ଯାଗା ଉପରେ ଓହ୍ଲେଇ ପଡ଼ିଲେ । ଭାବିଲେ, ଆଉ ଅଫିସ ଯାଇ କିଛି ଲାଭ ହେବନି । ଦଶହରା ଛୁଟି ପରେ ଅଫିସ ଖୋଲିବା ଦିନ ଏକପ୍ରକାର ଛୁଟିଦିନ କହିଲେ ଚଳେ । ବଜାରକୁ ଯାଇ, କଲେ, ଦୁଇକିଲୋ ଆଳୁ, ବାଇଗଣ କିଣିଲା ପରେ କଣାଲୀ ଯେପରି ବୋଝ ଭିତରେ ହାତ ପୂରାଇ ଗୋଟେ ଦିଇଟା ନିଜ ବ୍ୟାଗ୍‌ରେ ପକାଏ, ସେମିତି ବର୍ଷକେ ଏଇ ଛୁଟି ପରଦିନଟା "ହାତପୂରା" ଛୁଟିରେ ଯାଏ । ଅଫିସରେ ମଧ୍ୟ କେହି ବିଶେଷ ଗୁରୁତ୍ୱ ଦିଅନ୍ତିନି । ତେଣୁ ଏଦିନ ସକାଳ ଦଶଟାଠାରୁ ଦିନ ଗୋଟାଏ ଭିତରେ ଅଫିସର ଉପସ୍ଥାନ ବହିରେ ଦସ୍ତଖତଟେ ମାଇଲେ ହେଲା ।

କିଛି ବାଟ ଚାଲିଚାଲି ଗଲାପରେ ସେ ଦେଖିଲେ, ଛକ ମୁଣ୍ଡରେ ଯୁବ-ଗୋଷ୍ଠୀର ଭିଡ଼ । ମାଇକ୍ ବଜାଇ ଓଡ଼ିଆ, ହିନ୍ଦୀ ସିନେମାର ହିଟ୍ ଗୀତମାନ ପରି-ବେଷଣ କରାଯାଉଥାଏ । 'ମାଇକ୍' ଶବ୍ଦରେ ସେ ଖଣ୍ଡମଣ୍ଡଳ କମ୍ପୁଥାଏ ।

ଇନ୍ଦ୍ର ୯ ନମ୍ବର ଇଉନିଟ୍ ଛକ ପାଖେ ପହଞ୍ଚି କଅଣ ପାଇଁ ଏତେ ସାଜସଜ୍ଜା ଚାଲିଛି ବୁଝିବାରେ ତାଙ୍କୁ ଜଣେ ଯୁବକ କହିଲେ ଯେ "କୁମାର ଉତ୍ସବ" ଲାଗି ଏସବୁ ବନ୍ଦୋବସ୍ତ । ଲକ୍ଷ୍ମୀଙ୍କ ମୂର୍ତ୍ତି ଆସିଗଲେଣି । ଏବର୍ଷ ଅନ୍ୟାନ୍ୟ ୟୁନିଟ୍ ମେଢ଼ଠାରୁ ତାଙ୍କ "ଲକ୍ଷ୍ମୀ ମେଢ଼" ସରସ ହେବାପାଇଁ ସମସ୍ତେ ପ୍ରାଣପଣେ ଲାଗିଛନ୍ତି । ତାଛଡ଼ା, ରାତିରେ ପ୍ରସିଦ୍ଧ ଓଡ଼ିଆ ସିନେମାର ପ୍ରଚ୍ଛଦପଟ ଗାୟକ ଗାୟିକାମାନେ ଆସି ସଙ୍ଗୀତ ପରିବେଷଣ କରିବେ ।

ଇନ୍ଦ୍ର ପଚାରିଲେ, ସେମାନେ ତ ସବୁ ରାତିକୁ ଆସିବେ ଆଉ ଏଇ ଅଫିସ ସମୟରେ ମାଇକ୍ ଲଗାଇ ଏତେ ଜୋରରେ ସଙ୍ଗୀତ ବଜାଇବା ଦ୍ୱାରା ପାଖାପାଖି ଅଫିସ ଆଉ ଘରେଇ ବାସିନ୍ଦାମାନଙ୍କର ଅସୁବିଧା ହେଉଥିବ ? ମାଇକ୍ ଶବ୍ଦ କମ୍ କରି ବଜେଇଲେ ହୁଅନ୍ତାନି ?

ତାଙ୍କ କଥା ଶୁଣି ଜଣେ ଯୁବକ କହିଲେ, "ଏ ସଙ୍ଗୀତ ଶୁଣିଲେ ଅଫିସବାଲା ଉନ୍ମାଦ ହୋଇ ବେଶି ଜୋରରେ କାମ କରିବେ, ଆଉ ଇଉନିଟ୍‌ରେ ରହୁଥିବା ସ୍ତ୍ରୀ ଲୋକମାନେ ଘରଛାଡ଼ି ବାହାରକୁ ଚାଲି ଆସିବେ । କିଛି ଅସୁବିଧା ହେବନି ।"

ଇନ୍ଦ୍ର କହିଲେ "ଓଡ଼ିଆ ଲାଉଡ଼ସ୍ପିକର ଅକ୍ଟ" ଅନୁଯାୟୀ ଏସବୁ ବେନିୟମ କାର୍ଯ୍ୟ । ଆପଣମାନେ ଶିକ୍ଷିତ ଯୁବକ ହୋଇ ଆଇନ ଅମାନ୍ୟ କରୁଛନ୍ତି ।"

ତାଙ୍କ କଥାକୁ ହସରେ ଉଡ଼ାଇ ଦେଇ ଆଉ ଜଣେ ଯୁବକ ପେଣ୍ଡାଲ ଉପରୁ କହିଲେ, "ଏ ସହରରେ ଆଇନ ଫାଇନ କିଛି ନାହିଁ । ଆମେତ ସବୁବେଳେ ବଜାଉଛୁ, କିଏତ ଆମକୁ କିଛି କହୁ ନାହାନ୍ତି ? ତା'ଛଡା ଗଣେଶପୂଜା, ସରସ୍ୱତୀ ପୂଜା, ଦଶହରା, କୁମାର ପୂର୍ଣ୍ଣିମାରେ ଏ ସବୁ ଚାଲୁଛି । ଏ ସମୟରେ ଆଇନ୍, କାନୁନ କାମ କରେନି । ହଉ ଯାଅ, ସନ୍ଧ୍ୟା ସାତଟା ବେଳକୁ ଆସି ସଙ୍ଗୀତ ଶୁଣିବ ।"

ଇନ୍ଦ୍ର ଏପଟ ସେପଟ ବୁଲିବୁଲି କରି ଠିକ୍ ସନ୍ଧ୍ୟା ସାତଟା ବେଳକୁ ଯାଗା ଉପରେ ପହଞ୍ଚି ଗଲେ । ଲୋକ ଭିଡ଼ ହୋଇଗଲେଣି । କଳାକାରଗଣ ବିଭିନ୍ନ ବାଦ୍ୟ ଧାରଣ କରି ପେଣ୍ଡାଲ ଉପରେ ବସିଗଲେଣି । କେବଳ ମୁଖ୍ୟ କଳାକାର ଆସି ନଥିବା ହେତୁ କାର୍ଯ୍ୟକ୍ରମ ଆରମ୍ଭ ହୋଇପାରୁ ନଥାଏ ।

କିଛି ସମୟପରେ ମୁଖ୍ୟ କଳାକାର ପେଣ୍ଡାଲ ଉପରକୁ ଆସିଲେ । ସଙ୍ଗରେ ଜଣେ ତରୁଣୀ କଳାକାର । ହାତ ତାଳିରେ ସଭାସ୍ଥଳ ପ୍ରକମ୍ପିତ ହୋଇଗଲା । ସାଙ୍ଗେ ସାଙ୍ଗେ ବିଭିନ୍ନ ସଙ୍ଗୀତର ବରାଦ ଆସିଗଲା । ମୁଖ୍ୟ ପ୍ରଚ୍ଛଦପଟ ଗାୟକ ଆରମ୍ଭ କଲେ—

'ମୋ ସ୍ୱାମୀ ନାହାନ୍ତି ଘରେ
ଆସିବେ ଘଣ୍ଟାକ ପରେ
ଆସ ହବା ନାରେ ନାରେ"

ଏ ସଙ୍ଗୀତଟି ସରୁ ସରୁ, ପୁଣି ପାର୍ଟି ହେଲା—"ତୋ ଯଉବନ ଦୁଅଟିକୁ ଦେବି ମୁଁ ହୁଗାଲୀ" ଗାଅ । ଆଉ କିଏ କହିଲା, ନାହିଁ ନାହିଁ "କହ ଗୋଷ୍ଠ ତୋ ବେଲୁନ୍ ଭିତରେ ପାଣି, ନା ପବନ" ସେଇଟା ଗାଅ । ବହୁ ପ୍ରକାର ସଙ୍ଗୀତର ବରାଦ । ଏସବୁ ଆଜିକାଲି ଓଡ଼ିଆ ସିନେମାର ସଦ୍ୟ ସଙ୍ଗୀତ ।

ଇନ୍ଦ୍ର ଏସବୁ ଶୁଣି ମନେ ମନେ ଭାବିଲେ, ଓଡ଼ିଆ ଲୋକଙ୍କର ଏ କି ଦୁର୍ଦ୍ଦଶା ! ଆଗେ କଅଣ କବି ନଥିଲେ ? ଏ ଦେଶରେ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ଏବଂ ଅନ୍ୟମାନେ ମଧ୍ୟ କାବ୍ୟ କବିତା ଲେଖି ଓଡ଼ିଆ ଭାଷା, ସାହିତ୍ୟ, ସଙ୍ଗୀତକୁ ଋଦ୍ଧିମନ୍ତ କରିଛନ୍ତି । ଏ ଯୁଗରେ ମାନସିଂହ, ଗଡ଼ନାଏକ ଏମାନେ ମଧ୍ୟ କବିତା ଲେଖି ଘରେ ଘରେ ପରିଚିତ । ଆଜି କାଲିକା କବିମାନେ ଏ କି କବିତା, ଗୀତ ଲେଖୁଛନ୍ତି ଆଉ ଲୋକମାନେ ମଧ୍ୟ ଏସବୁକୁ କିପରି ପସନ୍ଦ କରି ସାଧାରଣରେ ବୋଲିବା ପାଇଁ ବିବାଦ କରୁଛନ୍ତି !

ଇନ୍ଦ୍ରଙ୍କ ନାକ ଟେକାରୁ, ତାଙ୍କ ପାଖେ ଠିଆ ହୋଇଥିବା ଲୋକ ଜଣକ କହିଲେ—"ଆପଣଙ୍କୁ ବୋଧେ ଏ ଗୀତ ଭଲ ଲାଗୁନି ? କିନ୍ତୁ କଅଣ କରାଯିବ ? ପସନ୍ଦ ନ ଲାଗିଲେ ମଧ୍ୟ ଶୁଣିବାକୁ ତ ଭଲ ଲାଗୁଛି, କିଛି ତ ବୁଝୁଁଛୁ ! ଆପଣ ଯାଆନ୍ତୁ, ଶୀତ ତାପ ନିୟନ୍ତ୍ରିତ ସୂଚନା ଭବନରେ କବିତା ଚର୍ଚ୍ଚା ପାଇଁ ପ୍ରସିଦ୍ଧ କବି ରଥ, ମହାପାତ୍ର, ଦାସେ, ମିଶ୍ରେ, ପଟ୍ଟନାଏକ, ସବୁ ଅଛନ୍ତି । ଯାଆନ୍ତୁ, ତାଙ୍କ କବିତା ଟିକିଏ ଶୁଣନ୍ତୁ ।"

ଇନ୍ଦ୍ର ଭାବିଲେ ସତକଥା । ସେଠିକି ଯିବା, ଦେଖିବା, ସେମାନେ କିମିତି ପରମ୍ପରା ରକ୍ଷା କରିଛନ୍ତି ।

ଏକ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବାତାବରଣ ଭିତରେ ସେଦିନ ସନ୍ଧ୍ୟାର କବି ସମ୍ମିଳନୀ ସୂଚନା ଭବନରେ ଶୀତ-ତାପ ନିୟନ୍ତ୍ରିତ ଗୃହ ମଧ୍ୟରେ ଆରମ୍ଭ ହୋଇଥାଏ । ସମ୍ମିଳନୀ ଉଦ୍ଦେଶ୍ୟରେ, ଓଡ଼ିଶାର ବହୁ ମାନ୍ୟଗଣ୍ୟ କବି, ସାହିତ୍ୟିକ, ଲେଖକ ନିମନ୍ତ୍ରିତ ହୋଇ ଆସିଥାନ୍ତି । ଇନ୍ଦ୍ର ଗୃହ ମଧ୍ୟକୁ ପ୍ରବେଶ କଲାବେଳକୁ, ସଭାପତି ତାଙ୍କର ଭାଷଣ ଶେଷକରି, ସମ୍ମିଳିତ କବିମାନଙ୍କ ମଧ୍ୟରୁ ବରେଣ୍ୟ କବି ଶ୍ରୀଯୁକ୍ତ ଦାସ ମହାପାତ୍ରଙ୍କୁ ତାଙ୍କର ସ୍ୱରଚିତ ଆଧୁନିକ କବିତା ଆବୃତ୍ତି କରିବା ପାଇଁ ଷ୍ଟେଜ ଉପରକୁ ଯିବାକୁ ଅନୁରୋଧ କରୁଥାନ୍ତି ।

କବି, ଦାସ ମହାପାତ୍ରେ ଷ୍ଟେଜ ଉପରକୁ ଗଲାପରେ, ମାଇକ୍‌ବାଲା ମାଇକ୍ ଷ୍ଟାଣ୍ଡ ତାଙ୍କ ଆଗରେ ରଖି ଠିକ୍ କରିଦେଲେ । ସଙ୍ଗେ ସଙ୍ଗେ ସେ ତାଙ୍କର ଆଧୁନିକ କବିତାଟି ଆବୃତ୍ତି କରିବା ଆରମ୍ଭ କଲେ । ତାଙ୍କର ସେଇ ନାତିଦୀର୍ଘ କବିତାଟି ଶେଷ ହେବାପାଇଁ ବେଶ୍ ସମୟ ନେଲା । ପରେ ପରେ ବିମୁଗ୍ଧ ଦର୍ଶକ-ମାନେ କରତାଳିରେ ହଲ କମ୍ପେଇ ଦେଲେ । କେତେକ ଯୁବ କବି, କଂଗ୍ରାଚୁ-ଲେସନ, କଂଗ୍ରାଚୁଲେସନ କହି ଆଗରୁ ପଛରୁ କବିଙ୍କୁ ବଧେଇ ଦେଲେ । ଆଗ ଲାଇନରେ ଜମିଥିବା କେତେକ ବର୍ଷିଆନ୍ କବି ବିଗଳିତ ହୃଦୟରେ କବିଙ୍କୁ "ଆଶୀର୍ବାଦ" ଦବାରେ ଲାଗି ପଡ଼ିଲେ ।

କିଛି ସମୟ ପରେ ଷ୍ଟେଜ୍ ଉପରୁ ସଭାପତି ଆଉ ଜଣେ ଯୁବ କବିଙ୍କ ନାମ ଧରି କବିତା ଆବୃତ୍ତି କରିବାପାଇଁ ଅନୁରୋଧ କଲେ । ଯୁବକ ଜଣକ ବେଶ୍ ଆଧୁନିକ କବି ପରି ଜଣା ପଡ଼ୁଥିଲେ । ଅସଜ୍ଜିତ କେଶରାଜି, ମୁହଁରେ ଦାଢ଼ୀ, ଢିଗୁଲା ପାଇଜାମା ସାଙ୍ଗକୁ ଲମ୍ବା ପଞ୍ଜାବୀ ଆଉ କାନ୍ଧରେ ଶାନ୍ତି ନିକେତନ ବ୍ୟାଗ୍ । ଷ୍ଟେଜ ଉପରକୁ ଗଲାବେଳେ କରତାଳିରେ ଦର୍ଶକମାନେ ତାଙ୍କୁ ଉଦ୍‌ବୋଧନ ଦେଲେ । ସେ ମଧ୍ୟ ତାଙ୍କ କବିତା ଶେଷ କରି ଫେରିଲେ । ପରେ ପରେ ଅନ୍ୟ କବି ଜଣେ ଦୁଇଜଣ ମଧ୍ୟ କବିତା ଆବୃତ୍ତି କଲେ ।

କବିତାଗୁଡ଼ିକ ଶୁଣିଲାପରେ, ଇନ୍ଦ୍ର, ତାଙ୍କ ପାଖେ ବିଗଳିତ ହୃଦୟରେ ବସିଥିବା ଜଣେ ଅଧାବୁଢ଼ିଆ କବିଙ୍କୁ ପଚାରିଲେ, "ଯେଉଁ କବିମାନେ କବିତା ଆବୃତ୍ତି କଲେ, ଏ କବିତାଗୁଡ଼ିକରେ ତ ଛନ୍ଦ ନାହିଁ, ରସ ନାହିଁ, ଲାଳିତ୍ୟ କି ସ୍ୱର ନାହିଁ, କି ପ୍ରକାର କବିତା ଏ ? କବି କଲ୍ପଦ୍ରୁମ—ରେ କବି ଶ୍ରୀ ଯଦୁମଣି ରାଉତରାଏ କବିତା କଅଣ ବୁଝାଇବାକୁ ଯାଇ କହିଛନ୍ତି ଯେ, 'ରସବନ୍ତ ଗୁଣଯୁତ ଅଳଙ୍କାରଯୁତ ।

ଦୋଷରେ ରହିତ କାବ୍ୟ
ଯେ ସେ କାବ୍ୟମତ ଯେ
କାବ୍ୟ ରସବନ୍ତ ହୋଇ
ବ୍ୟଞ୍ଜକ ସମ୍ବନ୍ଧେ
ଯଦ୍ୟପି ଆତ୍ମା ସେ ରସ
କଥା ଜାଣ ବୁଧେ ଯେ ।

କିନ୍ତୁ, ଏ ସବୁ କବିତାରେ କାବ୍ୟ ଲକ୍ଷଣମାନ ମୁଁ କିଛି ଦେଖି ପାରିଲି ନାହିଁ ?

ତାଙ୍କ କଥା ଶୁଣି ପାଖ ଲୋକଟି କହିଲେ, ଆପଣ ବୁଝି ପାରିବେନି ଆଜ୍ଞା । ଏସବୁ ଆଧୁନିକ କବିତା । ଯା ମଧ୍ୟରେ 'ଦର୍ଶନ' ଭରପୁର । ସ୍ୱର ଲାଳିତ୍ୟରୁ କଅଣ ମିଳିବ ?

ତାଙ୍କ କଥାରେ ଇନ୍ଦ୍ର ସନ୍ତୁଷ୍ଟ ନ ହୋଇ, ଆଉ ଜଣକୁ ପଚାରିଲେ । ବୟସ୍କ ଲୋକ, କୌଣସି କଲେଜରେ ଓଡ଼ିଆ ପ୍ରଫେସର ହେବେ । ଇନ୍ଦ୍ରଙ୍କ କଥା ଶୁଣି ସେ କହିଲେ—'ଏମାନଙ୍କ କବିତାରେ ନୈରାଶ୍ୟବାଦ୍ ଟିକିଏ ବେଶି ଭାବେ ପ୍ରକାଶ ପାଉଛି ।

ଇନ୍ଦ୍ର କହିଲେ, 'ମୋତେ ଆଉଜଣେ ବାବୁ କବିତାର ଅର୍ଥ ଅନ୍ୟ ପ୍ରକାର ବୁଝେଇଲେ—ଆଉ ଆପଣତ ଅଲଗା କଥା କହିଲେଣି ।'

ପ୍ରଫେସର ଜଣକ କହିଲେ, ଆଧୁନିକ କବିତାରେ ସବୁ ସମ୍ଭବ । ଆପଣ ଯାହା ବୁଝିଛନ୍ତି, ଠିକ୍ ବୁଝିଛନ୍ତି ।

ଇନ୍ଦ୍ର କହିଲେ 'ଅଜ୍ଞା' ମୁଁ ତ କିଛି ବୁଝି ପାରୁନି !

ପ୍ରଫେସର ଜଣକ କହିଲେ—'ତାହାବି ଠିକ୍ । କିଛି ବୁଝିବା ଦରକାର ନାହିଁ, ଖାଲି ଶୁଣ ।

ଏ ସମୟରେ ଜଣେ ବର୍ଷୀୟାନ କବି ହଲ ବାହାରକୁ ଗଲେ । ଇନ୍ଦ୍ର ତାଙ୍କ ପଛେ ପଛେ ଯାଇ ବାହାରେ ତାଙ୍କୁ ଭେଟି ତାଙ୍କ ମନ କଥା ପଚାରିଲେ । ବୃଦ୍ଧ କବି ଜଣଙ୍କ ଇନ୍ଦ୍ରଙ୍କ ମୁହଁକୁ କିଛି ସମୟ ଚାହିଁ କହିଲେ—"ବୁଝିଲ ବାବୁ, ହଲରେ ବସିସିନା ତାଳି ମାରୁଥିଲି, ଆଶୀର୍ବାଦ ଦେଉଥିଲି, କିନ୍ତୁ ଏମାନଙ୍କ କବିତାରୁ ମୁଁ କିଛି ବୁଝିନି । ଆଉ କାହାକୁ କହିବି ?" କହି ସେ ପରସ୍ରାଗାର ଆଡ଼େ ଚାଲିଲେ ।

ଇନ୍ଦ୍ର ମନେ ମନେ ଭାବିଲେ, ଓଡ଼ିଆ କାବ୍ୟ କବିତା ବର୍ତ୍ତମାନ ଏଇ ଅବସ୍ଥାରେ ପହଞ୍ଚିଛି । ଆଧୁନିକ କବିମାନଙ୍କର କବିତା ଭିତରେ ବହୁ ମାଲ, ମସଲା ଥାଇପାରେ, କିନ୍ତୁ ସେ ମାଲ, ମସଲାକୁ ଯଦି କେହି ନବୁଝି ପାରିବେ, ସେ କବିତା ସୃଷ୍ଟି କରି ଲାଭ କଅଣ ? କେତେଜଣ ତାକୁ ପଢ଼ିବେ, ବୁଝିବେ ? ସେଇଥିଲାଗି, ଓଡ଼ିଶା ଗୋଟାକଯାକ ଛାଡ଼ି ଫୁଟିଲି ଭଲ କବି ବାହାରି···

'ମୋ ସ୍ୱାମୀ ନାହାନ୍ତି ଘରେ,
କି
ତୋ ଯଉବନ କୁଆଁରକୁ ଦେବି ମୁଁ ହୁଗାଳି"
ଲେଖିବେନି ତ ଆଉ କଅଣ ଲେଖିବେ ?

( ୩୦ )

କବି ସମ୍ମିଳନୀ ସଉଳବେଳକୁ ଗଡି ଦଶ । ସେଦିନ ଓଡ଼ିଶାର ବହୁ ପ୍ରଖ୍ୟାତ କବି, ଦାସ ମହାପାତ୍ର, ମହାରଥୀ, ଶ୍ରେଷ୍ଠରାୟ, ମିଶ୍ର, ପଣ୍ଡା, ସେଠୀ, ସେମାନଙ୍କର କବିତା ଆବୃତ କରିଥିଲେ । ଯଦିଓ ସମ୍ମିଳନୀ ରାତି ନ'ଟା ପୂର୍ବରୁ ସରିବାର ଥିଲା, ମାତ୍ର କବିମାନେ ସେମାନଙ୍କ ·ଦାବୀ ଛାଡ଼ିବାକୁ ପ୍ରସ୍ତୁତ ନଥିଲେ । ନିମନ୍ତ୍ରିତ ହୋଇ ଆସିଛନ୍ତି ଯେତେବେଳେ, ସମସ୍ତେ ଗୋଟେ ଗୋଟେ କବିତା ଆବୃତ ନ କରିବା ପର୍ଯ୍ୟନ୍ତ ସଭାପତିଙ୍କୁ ସଭା ସାଙ୍ଗ କରିବାକୁ ଅନୁମତି ଦିଆଯାଇ ନଥିଲା । ସେତେବେଳକୁ ଦର୍ଶକଙ୍କ ସଂଖ୍ୟା ଡାକଶହରୁ କମି କମି ପଚାଶ ପାଖାପାଖି ପହଞ୍ଚିଥିଲା ।

ସୂଚନାଭବନର ଗେଟ୍ ବାହାରକୁ ବାହାରିଲାବେଳକୁ ପହିଲି କାର୍ତ୍ତିକର ଶୀତ ପଡ଼ି ସାରିଥାଏ । ସାମ୍ନା ରାସ୍ତା ନିର୍ଜ୍ଜନ ପ୍ରାୟ । ପେଟକୁ ଗଣ୍ଡେ ନ ଖାଇଲେ ଶୋଇ ହେବନି ଭାବି ସେ ହୋଟେଲ ଖୋଜି ଖୋଜି କିଛିଦୂର ଗଲାପରେ ତାଙ୍କ ଆଖି ପଡ଼ିଲା "ପ୍ରସିଦ୍ଧ ହିନ୍ଦୁ ହୋଟେଲ"ର ସାଇନ୍‌ବୋର୍ଡ଼ ଉପରେ ।

କିଛି ନ ଭାବି ସେ ହୋଟେଲ ଭିତରକୁ ପଶିଗଲେ । ସେତେବେଳକୁ ଜଣେ ଦି'ଜଣ ଗରାଖ ଗୋଟିଏ କଣରେ ବସି ଖାଉଥାନ୍ତି । ସେମାନେ ବୋଧେ କୌଣସି ଦୂରଗାମୀ ବସର ଡ୍ରାଇଭର କ୍ଲିନର ହେବେ । ବସ୍‌କୁ ଗ୍ୟାରେଜ୍ ଭିତରେ ରଖି, ବାଟରୁ ସାଙ୍ଗରେ ଆଣିଥିବା "ଜିନିଷ"କୁ ଧରି ହୋଟେଲର ଗୋଟିଏ କଣରେ, ଗରାଖମାନଙ୍କ ଦୃଷ୍ଟିର ବାହାରେ ତାର ସଦ୍‌ବ୍ୟବହାର କରୁଥାନ୍ତି । ଆଉ ଗୋଟେ କଣରେ, ଦଇଟା ବାର ତେର ବର୍ଷର ପିଲା ଙ୍ଗୁଙ୍ଗୁଳା ଦେହରେ, ରାସ୍ତା ବଡ଼ କଲଭର୍ଟ ତଳେ କୁକୁରୁଚୁଆ ଶୀତଦିନେ ଯାକାଯୁକି ହୋଇ ଶୋଇ କୁଁ କୁଁ ହେଲାପରି ଶୋଇ ପଡ଼ିଥାନ୍ତି । ମଝିରେ ମଝିରେ ମାଲିକ ଡାକରେ ପାଟିରୁ ହଁ, ନାଁ ଶବ୍ଦ ବାହାରୁଥାଏ ।

ଇନ୍ଦ୍ର ହୋଟେଲ ଭିତରକୁ ପଶିବା ଦେଖି, ଆଉ ଗୋଟେ ପନ୍ଦର ବର୍ଷର ଟୋକା "ଆଜ୍ଞା, କଅଣ ଖାଇବେ ? କୁକୁଡ଼ା, ଅଣ୍ଡା, ମାଂସ ନା ସାଧା ?" ଏକା ଥରକେ କଥାତକ କହିସାରି, କଣରେ ଶୋଇଥିବା ପିଲା ଦଇଟାଙ୍କୁ ଗୋଟେ ଗୋଇଠାମାରି, ଟେବୁଲ ସଫା କରିବାକୁ କହି ଭିତରକୁ ପଶିଲା ।

ଗୋଇଠା ମାଡ଼ରେ ଗୋଟେ ପିଲା ବାଉଳେଇଲା ପରି ଉଠି, ଖଣ୍ଡେ କୋଚଟ୍ ମଇଳା କନାକୁ ଧରି ଟେବୁଲ ଘଷୁ ଘଷୁ, ସେ ଆର ଟୋକାକୁ ଡାକି ପାଣି ଯୋଇବାକୁ କହୁଥାଏ । ଦି'ଥର ଡାକିଲା ପରେ ଶୋଇଥିବା ସାଥି ପିଲାଟି ନ ଶୁଣିବାରୁ, ସେ ମଧ୍ଯ ତା'ପାଖକୁ ଯାଇ ଗୋଟେ ଗୋଇଠା ମାରିଲା । ତା' ଗୋଇଠା ମାଡ଼ରେ ଆର ପିଲାଟି ଉଠି ମେସିନ୍ ପରି ଭିତରକୁ ଯାଇ ପାଣି ଗିଲାସଟେ ଧରି ଇନ୍ଦ୍ରଙ୍କ ସାମ୍ନାରେ ରଖିଲା ।

ଇନ୍ଦ୍ର ଦେଖିଲେ ବିଜୁଳି ସୁଇଚ୍ ଟିପିଲେ ଯେପରି ଘର ଚଟକିନା ଆଲୁଅ ହୋଇଯାଏ, ଏଠି ଗୋଟିଏ ଗୋଟିଏ ଗୋଇଠା ମାଡ଼ରେ ସବୁକାମ ମେସିନ ପରି ହୋଇ ଯାଉଛି । ମାଲିକ ପୂଜାରୀକୁ ମାଡ଼ ଦେବା, ପୂଜାରୀ ଚାକର ପିଲାକୁ ମାଡ଼ ମାରିବା, ବଡ଼ ଚାକରପିଲା ସାନପିଲାଙ୍କୁ ଗୋଇଠା ମାରିବା, ଏମାନଙ୍କ କାମ କରିବାର ଗୋଟେ ପଦ୍ଧତି । ତା'ଛଡ଼ା ଜଣେ ଜଣକୁ ମାଡ଼ଦେଇ ତା'ଉପରେ ହୋଇଥିବା ମାଡ଼ ଗାଳିର ଆନନ୍ଦ ପାଉଛି ।

କିଛି ସମୟ ବସିଲା ପରେ, ହୋଟେଲର ମାଲିକ, ସେ କଅଣ ଖାଇବେ ବୋଲି ବୁଝିବାକୁ ଠିଆହେଲେ । ମାଲିକଙ୍କ ବୟସ ପ୍ରାୟ ପଚାଶ ଉପରେ । ଇନ୍ଦ୍ର ତାଙ୍କୁ ଦେଖି, ହୋଟେଲ କାମ କରୁଥିବା ପିଲମାନଙ୍କ କଥା ପଚାରିଲେ । ଏତେ ଅଳ୍ପ ବୟସର ପିଲମାନଙ୍କୁ ସକାଳୁ, ରାତି ଦଶଟା ପର୍ଯ୍ୟନ୍ତ କାହିଁକି ଖଟାଉଛନ୍ତି ସେ କଥା ପଚାରିଲେ ଏବଂ ଏହା ଏକ ଗୁରୁତର ଅପରାଧ ବୋଲି ମଧ୍ୟ କହିଲେ ।

ଇନ୍ଦ୍ର କଥା ଶୁଣି ହୋଟେଲ ମାଲିକ କହିଲେ, "ହଁ ଆଜ୍ଞା, ଆପଣ ଯାହା କହିଲେ ସତ । 'ଚାଇଲଡ୍ ଲେବର୍' ଏକ ଅପରାଧ । ଆମ ସମ୍ବିଧାନରେ ମଧ୍ୟ ଏ ଶୋଷଣ ବିରୁଦ୍ଧରେ ଲେଖାଯାଇଛି । ମୁଁ ଏ ବିଷୟରେ ଭଲଭାବରେ ଜାଣେ । କିନ୍ତୁ କଅଣ କରାଯିବ ଆପଣ କୁହନ୍ତୁ ? ଏ ଯେଉଁ ତିନିଜଣ ପିଲଙ୍କୁ ଆପଣ ଦେଖୁଛନ୍ତି, ଏମାନଙ୍କର ବାପ-ମା କିଏ, ଜଣାନାହିଁ । ରେଲଷ୍ଟେସନ କଡ଼ରେ ଏମାନଙ୍କ ବାଲ୍ୟଅବସ୍ଥା କଟିଛି । ଯାତ୍ରୀମାନଙ୍କ ଅଇଁଠା ମାଗି ଖାଇ ଏମାନେ ବଢ଼ିଛନ୍ତି ।

ଦିନେ ଷ୍ଟେସନ ଉପରେ ଏମାନଙ୍କ ଅବସ୍ଥା ଦେଖି, ମୁଁ ହୋଟେଲକୁ ନେଇ ଆସିଲି । କାମ କରୁଛନ୍ତି, ଗଣ୍ଡେ ଭଲରେ ଖାଉଛନ୍ତି । ପିଲାଦିନୁ କାମ କରିବା ଶିଖିଲେ—ଚୋରି କରିବା ନୁହେଁ । ଯଦି ସେମାନଙ୍କୁ ରେଲଷ୍ଟେସନରେ ବଢ଼ିବାକୁ ଦିଆଯାଇଥାନ୍ତା, ତାହେଲେ ଆଉ କିଛିଦିନ ପରେ ଏମାନେ ଚୋର, ଦାଗୀ ହୋଇଥାନ୍ତେ । କୁହନ୍ତୁ ତ ମୁଁ ଭୁଲକାମ କରିଛି ନା ଠିକ୍ କାମ କରିଛି ? ମୋର ଯେତିକି ସମ୍ବଳ ତାରି ଭିତରେ ଏ ବାପ ଛେଉଣ୍ଡ ପିଲମାନଙ୍କୁ ମଣିଷ କରିବାକୁ ଚେଷ୍ଟା କରୁଛି । ଆଉ ଆପଣମାନେ, ସମାଜର ନେତା, ବଡ଼ଲୋକ, ଗାଡ଼ି ମଟର, ଘର ଆପଣମାନଙ୍କର ।

ଆପଣଙ୍କ ଆଲସିସିଆନ କୁକୁରଙ୍କ ପାଇଁ 'ଷ୍ଟିଲ ବାସନ', ହେଲେ, ଏଇ ବାପଛେଉଣ୍ଡ ପିଲମାନେ ଅଇଁଠା ପତ୍ରରୁ ନେଇ ଖାଇଲାବେଳେ ଆପଣମାନେ ଦେଖି ବେଶ୍ ଖୁସି ହୁଅନ୍ତି । ନୁହଁ ?" ତାଙ୍କ କଥାଶୁଣି ଇନ୍ଦ୍ର କହିଲେ—"ଥାଉ, ଆଉ କୁହନ୍ତୁନି । ମୋ ଭୁଲ ମୁଁ ବୁଝିଲି ।"

ରାତିଟି କୌଣସିମତେ 'ପ୍ରସିଦ୍ଧ ହିନ୍ଦୁ ହୋଟେଲ'ର ମାଲିକଙ୍କ ଦୟାରୁ, ତାଙ୍କ ପାଖେ କଟାଇ ଦେଲେ । ମାଲିକଟି ବଡ଼ ଦୟାଳୁ ଲୋକ । ଗରିବ, ନିରାହି ଲୋକମାନଙ୍କ ପ୍ରତି ତାଙ୍କର ହୃଦୟ ଅଛି । ଇନ୍ଦ୍ରଙ୍କ ଦୟନୀୟ ଅବସ୍ଥା ଦେଖି, ତାଙ୍କୁ ରାତିଟି ତାଙ୍କ ପାଖେ କଟାଇବାକୁ ଅନୁରୋଧ କରି ରଖିଥିଲେ ।

ସକାଳୁ ସକାଳୁ ଇନ୍ଦ୍ର ପାଇଖାନା ଯିବାପାଇଁ ଯାଗା ଖୋଜୁଥାନ୍ତି । ତାଙ୍କ

ମନକଥା ବୁଝିପାରି ହୋଟେଲ ମାଲିକ କହିଲେ, "ଆଜ୍ଞା ଆମ ହୋଟେଲରେ ତ ପାଇଖାନାର ବ୍ୟବସ୍ଥା ନାହିଁ । ତେଣୁ ଆମ ହୋଟେଲରେ ପିଲମାନେ ଅତି ପ୍ରତ୍ୟୁଷରୁ ଉଠି ରାସ୍ତାକଡ଼, କିମ୍ବା ସାମ୍ନା ପଡ଼ିଆରେ ପାଇଖାନା କାମସାରି ଚାଲି ଆସିଥାନ୍ତି । ଏବେ ଟିକିଏ ସକାଳ ହୋଇ ଆସିଲଣି, ଆପଣ ଜଲଦି ଯାଇ କାମ-ସାରି ଦିଅନ୍ତୁ ।" କହି ଆଗ ପଡ଼ିଆକୁ ହାତ ଦେଖେଇ ଦେଲେ ।

ଇନ୍ଦ୍ର କହିଲେ, "ଏ ପଡ଼ିଆଟି ପ୍ୟାରେଡ଼ ଗ୍ରାଉଣ୍ଡ । ହଜାର ହଜାର ଲୋକ ରାତି ପାହିଲେ ଏଇବାଟେ ଦେଇ ଅଫିସକୁ ଯାଉଛନ୍ତି । ପଡ଼ିଆ ମଝିରେ ପାଇଖାନା ଯିବା ବଡ଼ ଅଭଦ୍ରାମି ଏବଂ ଅସ୍ୱାସ୍ଥ୍ୟକର ମଧ୍ୟ ।"

ତାଙ୍କ କଥାଶୁଣି ହୋଟେଲ ମାଲିକ କହିଲେ, "ଏ ସହରରେ 'ଭଦ୍ରାମି' ଖୋଜିଲେ ଆପଣ ପାଇଖାନା ଯାଇପାରିବେନି କି ଗାଧୋଇ ପାରିବେନି । ଦେଖନ୍ତୁ, ଆପଣଙ୍କ ଆଖି ଆଗରେ କିପରି ଲୋକ ଧାଡ଼ିବାନ୍ଧି ପାଇଖାନା କାମ ସାରୁଛନ୍ତି । ଏପାଖେ, ରାସ୍ତାକଡ଼ରେ ପାଣିପାଇପ୍ ଯାଇଥିବା ଜଙ୍କସନ୍ ମେନ୍‌ହୋଲ ଖୋଲି ଲୋକମାନେ କିପରି ତାଙ୍କ ଗାଧୁଆ କାମ ସାରୁଛନ୍ତି ଦେଖନ୍ତୁ ।"

ଇନ୍ଦ୍ର ଆଖି ବୁଲେଇ ଦେଖିଲେ ଲୋକେ ଧାଡ଼ିଦେଇ ପିଁ ଏଚ ଡ଼ି.ର ମେନ ହୋଲ ଖୋଲି ତା'ଭିତରେ ପଶି ଗାଧୋଇଛନ୍ତି । କିଏ ବାଲ୍‌ଟି ଲଗାଇ ପାଣି ବୋହୁଛି, ଇତ୍ୟାଦି । ଇନ୍ଦ୍ର କହିଲେ, "ଏପରି କରିବା ଦ୍ୱାରା ଏମାନେ ସହରର ଜଳଯୋଗାଣକୁ ଦୂଷିତ କରୁଛନ୍ତି । ଏଇ ପାଇପ ଜଙ୍କସନ ଦେଇ ପାଣି ବିଭିନ୍ନ ଲୋକମାନଙ୍କ ଘରକୁ ଯୋଗାଇ ଦିଆଯାଉଛି । ଯଦି ମେନ୍‌ହୋଲ ଖୋଲି, ଏ ସମସ୍ତ ଲୋକ ଏପରି ଅସ୍ୱାସ୍ଥ୍ୟକର କାମ କରନ୍ତି ତାହା ସହରବାସୀଙ୍କ ପକ୍ଷେ ବିଶେଷ କ୍ଷତିକାରକ । ଏଠାରେ ଏତେ ବଡ଼ ବଡ଼ ଅଫିସରମାନେ ଅଛନ୍ତି । ପୁଣି ଓଡ଼ିଶାର ରାଜଧାନୀ । ଏଠାରେ ଏପରି ଅସ୍ୱାସ୍ଥ୍ୟକର ପରିବେଶ ସୃଷ୍ଟି ହେବା ଆଶ୍ଚର୍ଯ୍ୟର କଥା ।"

ତାଙ୍କ କଥାପୁଣି ହୋଟେଲ ମାଲିକ କହିଲେ, "ଏ ପଡ଼ିଆ କଥା କଅଣ କହୁଛନ୍ତି ? ବଡ଼ ବଡ଼ ଅଫିସର, ମନ୍ତ୍ରୀ, ଏମ: ଏଲ: ଏ:ଙ୍କ ଘର ସାମ୍ନା ପଡ଼ିଆରେ ମଧ୍ୟ ସକାଳୁ ସକାଳୁ ବହୁ ଲୋକ ପାଇଖାନା କରୁଛନ୍ତି । ସେମାନଙ୍କ ଘର ପାଖ ରାସ୍ତା କଡ଼ର ମେନ୍ ହୋଲରୁ ଘୋଡ଼ଣୀ ଉଠାଇ ନେଉଛନ୍ତି । ସେମାନେ କଅଣ ଜାଣୁନାହାନ୍ତି ? କଅଣ ହଉଛି ? ଯଦି ଆମ ସହରର ଲୋକମାନେ ଜନସ୍ୱାସ୍ଥ୍ୟ ବିଷୟରେ ଜ୍ଞାନ ଅର୍ଜ୍ଜନ କରିନାହାନ୍ତି, ତାହେଲେ ମ୍ୟୁନିସିପାଲିଟି, ଜନସ୍ୱାସ୍ଥ୍ୟ ବିଭାଗ, ପୁଲିସ ବିଭାଗ, ସମସ୍ତେ ମିଶି ଲୋକମାନଙ୍କୁ ସହରର ସ୍ୱାସ୍ଥ୍ୟରକ୍ଷା ଏବଂ ସ୍ୱାସ୍ଥ୍ୟହାନି

ବିଷୟରେ ସଚେତନ କରାନ୍ତୁ ! ଏ ବିଷୟରେ ବିଭିନ୍ନ କ୍ଲବ ଆଉ ଇଉନିଟ୍‌-ମାନଙ୍କରେ ଆଲୋଚନା ହେଉ । ଆମ ସହରକୁ ଆମେ ଯଦି ସୁନ୍ଦର ଏବଂ ସ୍ୱାସ୍ଥ୍ୟକର ନ କରିବା, ଆଉ କିଏ ଆସି କରିବ ? ସେଥିପାଇଁ ଜନଚେତନା ସୃଷ୍ଟି କରିବା ସଙ୍ଗେ ସଙ୍ଗେ, ବିଭିନ୍ନ ସଂସ୍ଥା ତରଫରୁ ସହରର ବସ୍ତି ଅଞ୍ଚଳ, ବଜାରଘାଟ ମାନଙ୍କରେ ଯଥେଷ୍ଟ ପରିମାଣରେ ସୁଲଭ ଶୌଚାଳୟ କରାଯାଉ । ବର୍ତ୍ତମାନ ଯେଉଁ ଗୋଟେ ଦିଇଟା ଶୌଚାଳୟ କରାଯାଇଛି ତାହା ବୃଦ୍ଧି ପାଉଥିବା ସହରର ଲୋକସଂଖ୍ୟା ପାଇଁ ଯଥେଷ୍ଟ ନୁହେଁ । ତା'ଛଡ଼ା ଏବେ ଯେଉଁ ଜାଗାମାନଙ୍କରେ ପବ୍ଲିକ ଲାଟ୍ରିନ୍‌-ମାନ ଅଛି, ସେଗୁଡ଼ିକୁ ମରାମତି କରି, ତାହାକୁ କିପରି ଲୋକମାନେ ବ୍ୟବହାର କରିପାରିବେ, ତା'ର ବନ୍ଦୋବସ୍ତ କରିବା ଉଚିତ । ଯଦି ତା କରାନଯାଏ, ଏ ସହର ତ କିଛିଦିନ ପରେ 'ପାଇଖାନା' ସହର ହୋଇଯିବ । କଟକର ସାହି-ବାସିନ୍ଦାମାନଙ୍କୁ ମ୍ୟୁନିସିପାଲ ଡ୍ରେନ ଉପରେ ବସି ପାଇଖାନା କରିବାକୁ ସହରର ସଂସ୍କୃତି ସଙ୍ଗେ ସାମିଲ କରି ଦେଇଛନ୍ତି । ସେଇ ସଂସ୍କୃତି ଓଡ଼ିଶାର ସବୁ ସହରକୁ ମଧ୍ୟ ମାଡ଼ିଆସିବ । ଏଥିପାଇଁ ସହରର ବାସିନ୍ଦା, ବିଭାଗୀୟ କର୍ମଚାରୀମାନେ ଧ୍ୟାନ ଦେବା ଉଚିତ ।

ତାଙ୍କ କଥା ଶୁଣି ଇନ୍ଦ୍ର କହିଲେ—"ଯେତେ ସମସ୍ୟା ଲାଗୁପଡ଼ିଛେ, ମୁଁ ସେଇ ବସଷ୍ଟାଣ୍ଡ ପାଖ ସୁଲଭ ଶୌଚାଳୟକୁ ଯାଉଛି ।"

ଇନ୍ଦ୍ର, ରଥ ଚାଲକଟିରେ ପାଣି ଟାଳେ ଧରି ବସଷ୍ଟାଣ୍ଡ ପାଖ "ସୁଲଭ ଶୌଚାଳୟ" ସାମ୍ନାରେ ଠିଆ ହେଲେ । ସେତେବେଳକୁ ଶୌଚାଳୟ ଭିତରେ ବହୁ ବ୍ୟକ୍ତି ସକାଳ ନିତ୍ୟକର୍ମ ସମ୍ପାଦନ କରୁଥାନ୍ତି । ଇନ୍ଦ୍ର ମନେ ମନେ ଭାବିଲେ ଯାହାହେଉ "ଶୌଚାଳୟଟି" ଏପରି ସୁନ୍ଦରଭାବେ ତିଆରି ହୋଇଛି ବୋଲି ସିନା, ଏତେ ଲୋକ ସୁବିଧାରେ ସେମାନଙ୍କ ନିତ୍ୟକର୍ମ କରି ପାରୁଛନ୍ତି !! ନ ହେଲେ ଏମାନେ ବି ରାସ୍ତାକଡ଼ ମେନ୍‌ହୋଲ କିମ୍ବା ଖୋଲା ପଡ଼ିଆରେ କାମ ସମ୍ପାଦନ କରିଥାନ୍ତେ ।

ଏଇ ସମୟରେ ତାଙ୍କ ପାଖକୁ ଆଉ କେତେଜଣ ଦୋକାନୀ, ଯେଉଁମାନେ ବସଷ୍ଟାଣ୍ଡ ଭିତରେ ଦୋକାନ ଭଡ଼ା ନେଇ ରହିଛନ୍ତି, ଆସି ଠିଆହେଲେ । କଥା-ବାର୍ତ୍ତା ଭିତରେ ଜଣେ ଦୋକାନୀ କହିଲା, ଦେଖନ୍ତୁ ଆଜ୍ଞା, ଏ ସହରର ଲୋକ-ସଂଖ୍ୟା ଯେତେବେଳେ ଲକ୍ଷେଠାରୁ କମ୍ ଥିଲା, ସେମାନଙ୍କ ଯାତାୟାତର ସୁବିଧା ପାଇଁ ସହର ମଝିରେ ଏଇ ବସଷ୍ଟାଣ୍ଡ ତିଆରି କରାଯାଇଥିଲା । ଏବେ ସହରର ଲୋକସଂଖ୍ୟା ପାଞ୍ଚଲକ୍ଷ ପାଖାପାଖି ହେଲାଣି । ଗାଡ଼ି ମଟର ସଂଖ୍ୟା ଚାରି ପାଞ୍ଚ ଗୁଣ

ବଢ଼ିଗଲାଣି । "ବ୍ୟାନରହିମ୍" ହେଲା ପରେ ଘରୋଇ ଗାଡ଼ିଗୁଡ଼ିକ ମଧ୍ୟ ଏଇ ବସଷ୍ଟାଣ୍ଡକୁ ଆସିଲେ । ତାଙ୍କ ସଙ୍ଗେ ଆଉ କେତେକ ଘରୋଇ ଗାଡ଼ି ତାଙ୍କ ଗାଡ଼ି ଉପରେ "ବ୍ୟାନର ଗାଡ଼ି" ଲେଖି ସରକାରଙ୍କ ଆଖିରେ ଧୂଳି ପକାଇ ଚଳାଇଲେ । ଏ ସମସ୍ତ ଗାଡ଼ି, ମଟର ଏଇ ଛୋଟ ବସଷ୍ଟାଣ୍ଡରୁ ଯିବା ଆସିବା କରିବା ଯୋଗୁ ଏ ରାସ୍ତାରେ ଯାତାୟାତ ବିପଦପୂର୍ଣ୍ଣ ହୋଇ ଉଠିଛି । ଆମେମାନେ ଏଠି ଦୋକାନ କରିଛୁ, ଜୀବନକୁ ପାଣି ଛଡ଼େଇ ଇସ୍ୟାମଧ୍ୟକୁ ଯିବାଆସିବା କରୁଛୁ । କୁହନ୍ତୁ ତ, କେଉଁ ଆଧୁନିକ ସହରର ମଝିରେ ବସଷ୍ଟାଣ୍ଡ ଅଛି ? ଏଠି ବସଷ୍ଟାଣ୍ଡ କରିବାଦ୍ୱାରା ଅଯଥାରେ ରାସ୍ତାଘାଟ ଅବରୋଧ ହେଉଛି, ଛୋଟ ବଡ଼ ଦୁର୍ଘଟଣାମାନ ପ୍ରାୟ ପ୍ରତ୍ୟେକ ଦିନ ଘଟୁଛି । ସବୁଠାରୁ ବଡ଼ ଅସୁବିଧା ହେଲା "ପରିବେଶ ଦୂଷିତ" । ବସଷ୍ଟାଣ୍ଡକୁ ଲାଗିକରି ଶହ ଶହ ରେସିଡ଼େନ୍‌ସିଆଲ କ୍ୱାଟର, ପାଖକୁ ବଡ଼ ବଡ଼ ଅଫିସ । ଏ ସମସ୍ତ ମଝିରେ ବସଷ୍ଟାଣ୍ଡ । ପ୍ରତ୍ୟେକ ଦିନ ହଜାର ହଜାର ଗାଡ଼ି ମଟର ଏଠାକୁ ଆସିବା ଦ୍ୱାରା, ଏ ଅଞ୍ଚଳ ସାଉଣ୍ଡ ପଲିଉସନ୍ ଏବଂ ଗାଡ଼ି ଦେହରୁ ବାହାରୁଥିବା ଧୂଆଁ ଦ୍ୱାରା ଏ ଅଞ୍ଚଳର ପରିବେଶ ଦୂଷିତ ହେଉଛି । ଏ ସମସ୍ତର ଶିକାର ହେଉଛନ୍ତି, ନିକଟରେ ରହୁଥିବା ନାଗରିକଗଣ ।

"ପରିବେଶ ଦୂଷିତ" କଥାକୁ ଛାଡ଼ିଦେଲେ, ଏ ବସଷ୍ଟାଣ୍ଡର ଅବସ୍ଥା ଦେଖନ୍ତୁ । ଷ୍ଟାଣ୍ଡ ପାଖ ଏବଂ ସାମ୍ନାରାସ୍ତା ଚାରିପାଖେ ବିଭିନ୍ନ ଉଠା ଦୋକାନ । ଦୋକାନ ହେବାଦ୍ୱାରା ବିକାକିଣା ଯୋଗୁ ସବୁ ସମୟରେ ରାସ୍ତା ଉପର ଭିଡ଼ ହେଉଛି । ଗୋଟିଏ ଗୋଟିଏ 'ବସ' ବସ୍‌ଷ୍ଟାଣ୍ଡରୁ ବାହାରି ମେନ୍ ରାସ୍ତାରେ ପହଞ୍ଚିବାକୁ ପାଞ୍ଚମିନଟ୍ ଜାଗାରେ ପନ୍ଦର ମିନଟ୍‌ରୁ ଅଧିକା ସମୟ ନେଉଛି । ଯଦି ଗୋଟିଏ ବସ୍ ଦଶମିନଟ୍ ଅଧିକା ସମୟ ନେଲା, ତେବେ ସେ ଦଶମିନଟ୍ ପାଇଁ ତେଲ କେତେ ଖର୍ଚ୍ଚ ହେଲା ଏବଂ ହଜାର ବସ୍ ପାଇଁ "ଦଶହଜାର ମିନଟ୍" ଆମେ ପ୍ରତ୍ୟେକ ଦିନ ନଷ୍ଟ କରୁଛୁ । ଟଙ୍କାରେ ଏଇ ସମୟକୁ ହିସାବ କଲେ ଦିନକୁ ହଜାର ହଜାର ଟଙ୍କା ମୂଲ୍ୟର ତେଲ କେବଳ ଏଇ ସାଧାରଣ ଭୁଲ୍‌ପାଇଁ ନଷ୍ଟ ହେଉଛି । ଏହା ସତ୍ୟ କି ନୁହଁ, ଏହା ଉପରେ କୌଣସି ଅର୍ଥନୀତଜ୍ଞ ଷ୍ଟଡ଼୍ କରି ଜନସାଧାରଣ ଏବଂ ସରକାର ଜାଣିବା ପାଇଁ ତଥ୍ୟ ପ୍ରକାଶ କରନ୍ତୁ । ଏଥିରେ ସର୍ବସାଧାରଣଙ୍କର କ୍ଷତି ଘଟିବା ସଙ୍ଗେ ସଙ୍ଗେ ସମୟ-ନଷ୍ଟ ହେଉଛି ।

ଦୋକାନୀଟିର କଥା ଶୁଣି ଇନ୍ଦ୍ର କହିଲେ, "ଆପଣ ଯାହା କହିଲେ ଠିକ୍‌କଥା । ଏପରି ଗୋଟିଏ ଛୋଟିଆ ଘଟଣାକୁ କିଏ ଖିଆଲକୁ ନେଉ ନାହାନ୍ତି, କିନ୍ତୁ ଅର୍ଥନୈତିକ ଦୃଷ୍ଟିକୋଣରୁ ଦେଖିଲେ, ଏହା ଏକ ବିରାଟ କ୍ଷତି । ତା'ଛଡ଼ା ବସଷ୍ଟାଣ୍ଡକୁ ଯେତେଶୀଘ୍ର ପାରିଯାଏ ଅନ୍ୟ ଜାଗାକୁ ସ୍ଥାନାନ୍ତରିତ କରି ଏଠାରେ

ଟାଉନବସ୍ତି ପାଇଁ ବ୍ୟବସ୍ଥା କରିବା ଉଚିତ । ତା' ନ ହେଲେ ଏ ଅଞ୍ଚଳରେ ଲୋକମାନେ ବସବାସ କରିବା ଅସମ୍ଭବ ହୋଇ ଉଠିବ ।"

ସକାଳ କାମସାରି, 'ପ୍ରିନ୍ସ ହିନ୍ଦୁ ହୋଟେଲ'ର ମାଲିକଙ୍କଠାରୁ ବିଦାୟ ନେଇ ଇନ୍ଦ୍ର ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟରେ ପହଞ୍ଚିଲ ବେଳକୁ ଦିନ ଦଶଟା ଉପରେ । ସେତେବେଳକୁ କେତେକ କର୍ମଚାରୀ ଅଫିସକୁ ଆସିସାରିଥାନ୍ତି, ଆଉ କେତେକ ଆସୁଥାନ୍ତି । ମଫସଲ ଅଞ୍ଚଳରେ ଗସ୍ତ କଲା ସମୟରେ ଯେ କଣ୍ଟ୍ରାକ୍ଟରମାନଙ୍କ ଜଳସେଚନ ବିଭାଗର କେନାଲ ବନ୍ଧ ମରାମତି କାମ, ରାସ୍ତାଘାଟ ନିର୍ମାଣ ବିଭାଗର ବ୍ରିଜ କାମ ଉପରେ ଯାହାସବୁ ସନ୍ଦେହ ଥିଲା, ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟରୁ ସେ ସମସ୍ତ ବିଷୟରେ ବୁଝିବା ପାଇଁ ତାଙ୍କର ଆଗମନ ।

କାର୍ଯ୍ୟାଳୟ ଭିତରକୁ ପଶିବା ପୂର୍ବରୁ ଇନ୍ଦ୍ର ଦେଖିଲେ, ମୁଖ୍ୟମନ୍ତ୍ରୀଙ୍କ ଅଫିସ ସାମ୍ନାରେ ପଞ୍ଚେଲୋକ ହାତରେ ଦରଖାସ୍ତ ପ୍ରଭୃତି ଧରି ଠିଆ ହୋଇଥାନ୍ତି । ଏବେ ସରକାରଙ୍କ ଆଦେଶ ଅନୁଯାୟୀ ପ୍ରତ୍ୟେକ ମୁଖ୍ୟ ଦପ୍ତରରେ ମୁଖ୍ୟ ଅଫିସରମାନେ ଅଭିଯୋଗ ପ୍ରକୋଷ୍ଠମାନ ଖୋଲି, ନିମ୍ନକର୍ମଚାରୀ, ଜନସାଧାରଣଙ୍କ ଅଭିଯୋଗ ଶୁଣି ଆଶୁ ପ୍ରତିକାର ପାଇଁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରୁଛନ୍ତି । ସେଦିନ ଅଭିଯୋଗ ଶୁଣିବାପାଇଁ ନିର୍ଦ୍ଦିଷ୍ଟଦିନ ଥିବା ହେତୁ ଏଇ ଲୋକମାନେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଆସିଛନ୍ତି । ସେମାନଙ୍କ ଗୁହାରି ଜଣାଇବା ପାଇଁ ଇନ୍ଦ୍ର ବୁଝି ବୁଝି ଜାଣିଲେ ଯେ, ଏମାନେ ସମସ୍ତେ ଏନ୍.ଏମ୍.ଆର୍. କର୍ମଚାରୀ । ବିଭିନ୍ନ ପି. ଡବ୍ଲୁ. ଡି. ଅଫିସ, ଜଳସେଚନ ଅଫିସମାନଙ୍କରେ ଏମାନେ ବର୍ଷ ବର୍ଷ ଧରି ଏନ୍.ଏମ୍.ଆର୍. କର୍ମଚାରୀ ହିସାବରେ କାମ କରି ଆସୁଛନ୍ତି; ମାତ୍ର ସେମାନଙ୍କୁ ଏପର୍ଯ୍ୟନ୍ତ ସରକାରୀ କର୍ମଚାରୀ ହିସାବରେ ଗ୍ରହଣ କରାଯାଉ ନାହିଁ । ବର୍ଷ ବର୍ଷ ଧରି ସେମାନେ ଦିନ ମଜୁରିଆ ହିସାବରେ କାମ କରି ଆସୁଛନ୍ତି । ଯେତେ ଗୁହାରି କଲେ ମଧ୍ୟ ତାଙ୍କ କଥା କେହି ଶୁଣୁ ନାହାନ୍ତି ।

ତାଙ୍କ କଥା ଶୁଣି ଇନ୍ଦ୍ର କହିଲେ, ଏନ୍. ଏମ୍. ଆର୍. କର୍ମଚାରୀମାନେ ତ ଜରୁରୀ ଦରକାର ବେଳେ ରହିବା କଥା । ଧରନ୍ତୁ ହଠାତ୍ ବଢ଼ି ଆସିଲା, ସେଇ ସମୟରେ ନଦୀବନ୍ଧ, କେନାଲ ବନ୍ଧ ଇତ୍ୟାଦି କାମ ଲାଗି ଅସ୍ଥାୟୀ ମଜୁରିଆ ରଖାଯିବା କଥା, କିନ୍ତୁ ଆପଣମାନେ ବର୍ଷ ବର୍ଷ ଧରି କିପରି ରହିଛନ୍ତି ? ୧୮୦ ଦିନରୁ ଅଧିକା ରହିଲେ ଆପଣମାନେ ସରକାରୀ କର୍ମଚାରୀ ପରି କେତେକ ସୁବିଧା ପାଇବା କଥା,ଏହାତ ଶ୍ରମ ଆଇନରେ ଅଛି ! ତା'ଛଡ଼ା ଏବେ ଯାହା ଖବରକାଗଜମାନଙ୍କରେ ବାହାରୁଛି, ଯେଉଁଥିରୁ ଜଣାପଡ଼ୁଛି, ବର୍ତ୍ତମାନ ପ୍ରତ୍ୟେକ ଅଫିସରେ

ଯେତକ କର୍ମଚାରୀ ଅଛନ୍ତି ସେମାନେ ଦିନକେ ୪ ଘଣ୍ଟାରୁ ଅଧିକା କାମ କରୁନାହାନ୍ତି । ଏ ଅବସ୍ଥାରେ ଆପଣମାନଙ୍କୁ ବର୍ଷ ବର୍ଷ ଧରି ଏପରି ହଇରାଣ କରିବାର କିଛି ଆବଶ୍ୟକତା ନାହିଁ ।"

ତାଙ୍କ କଥା ଶୁଣି ଜଣେ ଏନ୍. ଏମ୍. ଆର୍. କର୍ମଚାରୀ କହିଲେ, ଆଜ୍ଞା, ଆମମାନଙ୍କ ଭିତରୁ ବହୁତଙ୍କ ଆବଶ୍ୟକତା ଅଫିସ ଭିତରେ ନଥାଏ । ଆମମାନଙ୍କର ସମସ୍ତ କଷ୍ଟ ଅଫିସରମାନଙ୍କ ପାଇଁ । ଆପଣ ତ ଶୁଣିଥିବେ, କାହ୍ନୁ ବାରିକ କିପରି ବର୍ଷ ବର୍ଷ କାମ କରି କରି ଶେଷକୁ ଇଞ୍ଜିନିୟର ବାବୁଙ୍କ ସ୍ତ୍ରୀଙ୍କୁ ହତ୍ୟା କଲା ! ଆଉ ଜଣେ ସେମିତି ପନିକିରେ ହାଣୁ ହାଣୁ , ଜଣେ ବଞ୍ଚିଗଲେ । ଯଦି ସରକାରଙ୍କ ପ୍ରକୃତିରେ କାମ ନାହିଁ, ତା'ହେଲେ ବର୍ଷ ବର୍ଷ ଧରି ଆମକୁ ଆଶା ଦେଇ ରଖିବା କଅଣ ଦରକାର ? ଆମେମାନେ ଆଶା କରି ରହୁଛୁ ବୋଲି ସେମାନେ ଆମକୁ ଗୋରୁ ପରି ଖଟାଉଛନ୍ତି । ହେଲା, ଏବେ ଆମେ ଦି'ବର୍ଷ, ତିନିବର୍ଷ ଖଟିଲୁ; ମାତ୍ର ସାତବର୍ଷ ଆଠବର୍ଷ ହେଲାଣି ଆମେ ଚାକିରି ପାଉନୁ, ଆମ ପିଲାଛୁଆ ଚଳନ୍ତି କିପରି ?

ଖାଲି କଅଣ ଫିଲଡ୍‌ରେ ଏନ୍.ଏମ୍. ଆର୍. କର୍ମଚାରୀ ଅଛନ୍ତି ? ଏବେ ପ୍ରତ୍ୟେକ ଅଫିସରେ ଏନ୍.ଏମ୍.ଆର୍. ଟାଇପିଷ୍ଟ, ଷ୍ଟେନୋ, କ୍ଲର୍କବାବୁମାନେ ବି ରହିଲେଣି । ଯେଉଁ ବାବୁମାନେ ଅଫିସରେ ଆଠଘଣ୍ଟା କାମ କରିବା କଥା, ସେମାନେ ଚାରିଘଣ୍ଟା କାମକରି, ବାକି ଚାରିଘଣ୍ଟା କାମକୁ ଏମାନଙ୍କ ଦ୍ୱାରା କରାଉଛନ୍ତି । ସରକାରଙ୍କ ଏ ବାବଦରେ ହଜାର ହଜାର ଟଙ୍କା ନଷ୍ଟ ହେଉଛି । ପ୍ରତ୍ୟେକ ଅଫିସରେ କିରାଣୀଙ୍କ ଠାରୁ ଆରମ୍ଭ କରି ଅଫିସ୍‌ର ପର୍ଯ୍ୟନ୍ତ କାମ ଦେଖାଷ୍ଟାଫ୍ ବଢ଼େଇବା କଥା, ମାତ୍ର ସେସବୁ କିଏ କରୁଛି ? କିଏ ଦେଖୁଛି ? ବଡ଼ବାବୁ ଅଫିସରଙ୍କୁ କୁହାବୋଲି କରିଦେଲେ ଅଫିସର ଏନ୍.ଏମ୍.ଆର୍. କର୍ମଚାରୀଙ୍କୁ ଫିଲଡ଼ରେ କାମ କରିବା ଦେଖେଇ ଅଫିସରେ ଦିନ ମଜୁରୀ ଦେଇ କାମ କରେଇଲେ । ଏପରି କରିବା ଦ୍ୱାରା ଆମ ଯୁବଗୋଷ୍ଠୀକୁ ଆମେ ଶୋଷଣ କରୁନେ କି ?"

ତାଙ୍କ କଥା ଶୁଣି ଇନ୍ଦ୍ର କହିଲେ "ସତକଥା । ଏନ୍.ଏମ୍. ଆର୍. କର୍ମଚାରୀ ଯେତେଦିନ ପର୍ଯ୍ୟନ୍ତ ଥିବେ ଅଫିସରମାନେ ସେତେଦିନ ପର୍ଯ୍ୟନ୍ତ ସେମାନଙ୍କୁ ଶୋଷଣ କରୁଥିବେ । ଏ'ତ ନୂତନ ପ୍ରକାର "ବଣ୍ଡେଜ ଲେବର" ।

ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟ ପରିସର ଭିତରେ ଏନ୍.ଏମ୍.ଆର୍. କର୍ମଚାରୀଙ୍କ ସଙ୍ଗେ କଥାବାର୍ତ୍ତା ହେଉଥିବା ସମୟରେ, ସେହି ଅଫିସର ଜଣେ ଯୁବକ କିରାଣୀ

ତାଙ୍କ ପାଖେ ଠିଆ ହୋଇ ସେମାନଙ୍କ କଥାବାର୍ତ୍ତା ଶୁଣୁଥିଲେ । ଇନ୍ଦ୍ର, ମୁଖ୍ୟ-ମନ୍ତ୍ରୀଙ୍କ କାର୍ଯ୍ୟାଳୟକୁ ଆସିଥିବାର ଅଭିପ୍ରାୟ ବୁଝିଯାଇଲା ପରେ, ସେ କହିଲେ, ଆପଣ ମଫସଲ ଅଞ୍ଚଳରେ ବୁଲି ଯାହାସବୁ ଦେଖିଲେ ସେ ସମସ୍ତ ଘଟଣାମାନ ଠିକ୍ । କଣ୍ଟ୍ରାକ୍ଟରମାନେ ଗୋଟିଏ କାମ ନେଲାପରେ ଏବଂ ପୂର୍ବରୁ କେତେ ପଇସା କାହାକୁ ଦିଅନ୍ତି ଏବଂ ନିଅନ୍ତି ଏ କଥା ସାରା ଦେଶରେ ଗ୍ରେଷ୍ଟ ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ଜାଣନ୍ତି । ସେ ବିଷୟରେ ମୁଖ୍ୟମନ୍ତ୍ରୀଙ୍କ ଅଫିସରେ ଆଉ ଅଧିକା ତଥ୍ୟ କଅଣ ବୁଝିବେ ? "ଦିବାନିବା" କାମ ଏଠାରେ ଗତାନୁଗତିକ ପ୍ରଥାରେ ପଡ଼ିଗଲାଣି ।

ତା'ଛଡ଼ା ଏବେ ଆହୁରି ବଡ଼ବଡ଼ ଘଟଣାମାନ ଘଟୁଛି । ଯେଉଁ କାମଟା ଲକ୍ଷେ ଟଙ୍କାରେ ହବା କଥା, ତାକୁ ଲକ୍ଷେ ତିରିଶ ହଜାର କରି ଜଣାଶୁଣା କଣ୍ଟ୍ରାକ୍ଟରମାନଙ୍କୁ ଦିଆଯାଉଛି । ଏ ଯେଉଁ ଅଧିକା ଟଙ୍କା କାମ ନାଁରେ ଗଲା, ସେ ଟଙ୍କା କୁଆଡ଼େ ଯାଉଛି, କିଏ ନେଉଛି, ସେ କଥାମାନ ବେଳେବେଳେ ସମ୍ବାଦ-ପତ୍ରମାନଙ୍କରେ ପ୍ରକାଶ ପାଉଛି । ପ୍ରକାଶ ପାଇବା ସତ୍ତ୍ୱେ ମଧ୍ୟ, ଏ କାମ ଚାଲିଛି । ଚାଲୁ ରହିବ । ଅବଶ୍ୟ କେତେଦିନ ଚାଲୁ ରହିବ ଠିକ୍‌କରି କହିହେବନି । ଏବେ ଦେଖନ୍ତୁନାହାନ୍ତି 'ଦାଦନ ଶ୍ରମିକ' ଘଟଣା ।

ଓଡ଼ିଶାରେ କାମ ମିଳୁନାହିଁ ବୋଲି ଶହ ଶହ ଓଡ଼ିଆ ଶ୍ରମିକ ପୁରୀ, କଟକ, ଗଞ୍ଜାମ, ବାଲେଶ୍ୱର ଜିଲ୍ଲାମାନଙ୍କରୁ ଦେଶର ବିଭିନ୍ନ ଜାଗାମାନଙ୍କୁ ଦାଦନ କାମ କରିବାକୁ ଯାଉଛନ୍ତି । ଏମାନେ ଉତ୍ତର ପ୍ରଦେଶର ଉତ୍ତର କାଶୀ, କାଶ୍ମୀରର ବାରମୂଲା ପ୍ରଭୃତି ଜାଗାମାନଙ୍କରେ କଣ୍ଟ୍ରାକ୍ଟରମାନଙ୍କ ପାଖେ କାମ କରନ୍ତି । ଏଇ କଣ୍ଟ୍ରାକ୍ଟରମାନଙ୍କୁ ଶ୍ରମିକ ଯୋଗାଇଦେବା ପାଇଁ, ଓଡ଼ିଶାରେ ବହୁତ ଲେବର କଣ୍ଟ୍ରାକ୍ଟର ଅଛନ୍ତି । ଏମାନଙ୍କ ମଧ୍ୟରୁ ବହୁତ ଶ୍ରମିକ କଣ୍ଟ୍ରାକ୍ଟର ଶ୍ରମ ବିଭାଗରେ ସେମାନଙ୍କ ନାମ ରେଜିଷ୍ଟ୍ରି କରିଛନ୍ତି ଏବଂ ପ୍ରତ୍ୟେକ ମାସରେ ସେମାନେ କେଉଁ କେଉଁ ସ୍ଥାନକୁ କେତେ ଲୋକ ପଠାଇଲେ, ସେମାନଙ୍କ ନାମ, ଠିକଣା ଇତ୍ୟାଦି ଲେଖି ରିଟର୍ଣ୍ଣ ମଧ୍ୟ ଶ୍ରମ ଅଫିସକୁ ପଠାନ୍ତି । ଏସବୁ ସତ୍ତ୍ୱେ, ଏବେ ପ୍ରାୟ ବିଭିନ୍ନ ସମ୍ବାଦପତ୍ରରେ ପ୍ରକାଶ ପାଉଛି ଯେ, ଲେବର କଣ୍ଟ୍ରାକ୍‌ଟରମାନେ ଲୋକମାନଙ୍କୁ ଶୋଷଣ କରୁଛନ୍ତି । ମାଡ଼ମାରି ଦିନକୁ ବାରଘଣ୍ଟା କାମ କରାଉଛନ୍ତି ।

ଏହା କିପରି ସମ୍ଭବ ହେଉଛି ? ପ୍ରଥମ କଥାହେଲା, ଆମ ପ୍ରଦେଶରୁ ଆମେ ବାହାରକୁ ଶ୍ରମିକ ପଠାଇବା କି ?

ଏଠାରେ ଯଦି କାମ ନ ମିଳୁଛି, ଶ୍ରମିକମାନେ ବାଧ୍ୟ ହୋଇ ଅନ୍ୟ ଜାଗାକୁ

କାମ ଖୋଜିଯିବେ । ତାକୁ କେହି ବନ୍ଦ କରି ପାରିବେନି । ଯଦି ଯିବେ, ତା'ହେଲେ "ଶ୍ରମ ବିଭାଗ" ଏ ସମସ୍ତ ଉପରେ କାହିଁକି ଉପଯୁକ୍ତ କଣ୍ଟ୍ରୋଲ ରଖୁନି ?

ତା'ଛଡ଼ା, ଯେଉଁ ଶ୍ରମିକମାନେ ଏଠାରୁ ଯାଇ ଅନ୍ୟଜାଗାମାନଙ୍କରେ କାମ କରୁଛନ୍ତି, ସେଠାରେ ମଧ୍ୟ ଶ୍ରମ ଅଫିସର, ଅଫିସମାନ ଅଛି । ତେଣୁ ଶ୍ରମିକ-ମାନଙ୍କ ଯିବାଆସିବା, ସୁବିଧା ଇତ୍ୟାଦି ଏଠାକାର ଏବଂ ସେଠାକାର ଶ୍ରମ ଅଫିସର-ମାନେ ବୁଝିସୁଝି କାମକଲେ ଏ ଅସୁବିଧା ହୁଅନ୍ତାନି । ଶ୍ରମ ବିଭାଗ ଆଖି ଆଗରେ ରେଜେଷ୍ଟ୍ରିଭୁକ୍ତ ହୋଇନଥିବା କଣ୍ଟ୍ରାକ୍‌ଟରମାନେ ଶହ ଶହ ଲୋକ ନେଉଛନ୍ତି । ସେମାନେ ଏ ଲୋକମାନଙ୍କୁ କୁଆଡେ ନେଲେ, କି କାମ କଲେ ତା'ର ହିସାବ କାହାପାଖେ ରହୁଛି ? ଏକଥା କଅଣ ଶ୍ରମ ବିଭାଗ ଜାଣି ପାରୁନି ? ଯଦି ଜିଲ୍ଲା କି ପ୍ରଦେଶର ସଦର ମହକୁମାରେ ବସି ସମସ୍ତଙ୍କୁ କଣ୍ଟ୍ରୋଲ କରିବାରେ ଅସୁବିଧା ହେଉଛି, ଯେଉଁ ଅଞ୍ଚଳରୁ ଶ୍ରମିକମାନେ ବର୍ଷ ବର୍ଷ ଧରି ବହୁ ସଂଖ୍ୟାରେ ଯାଉଛନ୍ତି, ସେଠାରେ ଅସ୍ଥାୟୀ ଅଫିସ ଖୋଲି, ଏ କାମକୁ ନିୟନ୍ତ୍ରିତ କରାଯାଇ ପାରନ୍ତା ! ସେ ସବୁ ନକରି ମଝିରେ ମଝିରେ କେତେ ଲେବର କଣ୍ଟ୍ରାକ୍ଟରଙ୍କୁ ଧରି ଦୋହଲାଇ ଗଛ ଝାଡ଼ିବାରେ ଯାହା ଫଳ ମିଳିଲା ।

ଏବେ ଉତ୍ତର ପ୍ରଦେଶର ଉତ୍ତର କାଶୀ ଅଞ୍ଚଳକୁ, ବାଣପୁର, ଗଞ୍ଜାମ ଅଞ୍ଚଳରୁ ଯାଇଥିବା ଦାଦନ ଶ୍ରମିକମାନେ ଓଡ଼ିଶାକୁ ଫେରି ଆସିବାକୁ ନାରାଜ । କିଛିଦିନ ତଳେ ସମ୍ବାଦପତ୍ରରେ ଏଇ ଶ୍ରମିକମାନଙ୍କ ଉପରେ ଅତ୍ୟାଚାର ହେଉଛି ବୋଲି ସମ୍ବାଦ ପରିବେଷିତ ହେବାପରେ, ଓଡ଼ିଶାର ଶ୍ରମ ଅଫିସରମାନେ ସେଠାକୁ ଯାଇଥିଲେ । ସେଠାରେ ସେମାନେ ଇନ୍‌କ୍ୱାରି କଲାପରେ ଜାଣିଲେ ଯେ, ଶ୍ରମିକ-ମାନେ ସେଠାରେ ଓଡ଼ିଶାଠାରୁ ବେଶୀ ରୋଜଗାର କରୁଛନ୍ତି ଏବଂ କାମ ଛାଡ଼ି ଫେରିବାକୁ ରାଜି ନୁହନ୍ତି । ତେଣୁ, ଏସବୁ ମୂଳରେ କିଏ କମିତି କାର୍ଯ୍ୟ କରୁଛି, ତାକୁ ଭଲରେ ବୁଝିବା ଦରକାର । ଶ୍ରମ କଣ୍ଟ୍ରାକ୍ଟରମାନେ ପଇସା ଅଧିକା ପାଉଛନ୍ତି । ସେଠାକାର ମୂଳ କଣ୍ଟ୍ରାକ୍ଟରମାନେ ନିଶ୍ଚୟ ଆହୁରି ଅଧିକା ପଇସା ପାଉଥିବେ, ଏଥିରେ କିଛି ସନ୍ଦେହ ନାହିଁ । ଆମର ଏଠି ଯେପରି ସରକାରୀ ହିସାବରେ ମାଟି ହଜାରକୁ ତିନିଶହ ଟଙ୍କା, କିନ୍ତୁ ଶ୍ରମିକମାନଙ୍କୁ ଦେଉଛନ୍ତି ଦେଢ଼ଶହ; ସେଠି ମଧ୍ୟ ସେହିପରି ସବୁ ଜାଗାରେ ଶ୍ରମିକମାନଙ୍କୁ ଶୋଷଣ କରାଯାଉଛି । ଏସବୁ ଦେଖି ଶୁଣି ଆମ୍ଭେମାନେ ସମସ୍ତେ କଅଣ କରୁଛେ ?

ଦାଦନ ଶ୍ରମିକମାନଙ୍କ ଦୁରବସ୍ଥା ବର୍ଣ୍ଣନା କରିବାକୁ ଯାଇ, ଯୁବକଜଣକ କହିଲେ, ଓଡ଼ିଶାରୁ ପ୍ରତିବର୍ଷ ଲକ୍ଷେରୁ ବେଶି ଲୋକ ଦାଦନ ଶ୍ରମିକଭାବେ ଭାରତ

ତଥା ଭାରତ ବାହାରକୁ ଯାଉଛନ୍ତି । ମୁଖ୍ୟତଃ ଶ୍ରମିକମାନେ ପୁରୀ ଜିଲ୍ଲା ଖୋର୍ଦ୍ଧା ସବ୍‌ଡ଼ିଭିଜନର ବାଣପୁର, ଟାଙ୍ଗୀ, ବେଗୁନିଆ, ବୋଲଗଡ଼, ସଦର ସବ୍‌ଡ଼ିଭିଜନର, ବ୍ରହ୍ମଗିରି, କୃଷ୍ଣପ୍ରସାଦ ଥାନା ଏବଂ ଗଞ୍ଜାମ ଜିଲ୍ଲାର ଖଲ୍ଲିକୋଟ, ରମ୍ଭା ଥାନା ଅଞ୍ଚଳରୁ ଯାଇଥାନ୍ତି । ତା'ଛଡ଼ା, କଟକ, ବାଲେଶ୍ବର ଅଞ୍ଚଳରୁ ମଧ୍ୟ ଶ୍ରମିକମାନେ ଯାଆନ୍ତି । ମାତ୍ର ଏମାନଙ୍କ ସଂଖ୍ୟା କମ୍ । "ଦାଦନ" ଦିବା ଓଡ଼ିଆ ଶ୍ରମିକମାନଙ୍କ ପକ୍ଷେ କିଛି ନୂଆ କଥା ନୁହଁ । ଆଗେ ଓଡ଼ିଶାରୁ ଠିକାଦାରମାନେ ଶହ ଶହ ଶ୍ରମିକ ନେଇ କଲିକତାର ବନ୍ଦର ଅଞ୍ଚଳରେ ବନ୍ଦର କଣ୍ଟ୍ରାକ୍ଟରମାନଙ୍କୁ ଯୋଗାଉଥିଲେ । ଏ ଶ୍ରମିକମାନେ ମୁଖ୍ୟତଃ ବାଲେଶ୍ବର, କଟକ ଜିଲ୍ଲାର ଯାଜପୁର ସବ୍‌ଡ଼ିଭିଜନ ଅଞ୍ଚଳରୁ ଯାଉଥିଲେ । ଏବେ ଯେଉଁ ଦାଦନ ଶ୍ରମିକମାନେ ଯାଉଛନ୍ତି, ସେମାନେ ଉତ୍ତରପ୍ରଦେଶ, କାଶ୍ମୀର, ଗୁଜୁରାଟ, ପଞ୍ଜାବ ଏବଂ ଭାରତ ବାହାରେ ଇରାନ, ଇରାକ, କୋଏଟ୍ ଲିବିୟା ପ୍ରଭୃତି ବିଭବଶାଳୀ ଦେଶମାନଙ୍କୁ ଯାଉଛନ୍ତି । ଦାଦନ ଦିବାକଥା ଏ ଅଞ୍ଚଳରେ ନୂଆ ନୁହଁ । ବହୁ ବର୍ଷ ଧରି, ଠିକାଦାରମାନେ ଏଇ ବ୍ୟବସାୟ କରିଆସୁଛନ୍ତି ।

କେବଳ ପୁରୀ ଜିଲ୍ଲାରେ ଶହେରୁ ଅଧିକ ଦାଦନ ଠିକାଦାର ଥିବେ । ଏମାନଙ୍କର ମଧ୍ୟ ଗୋଟେ ଆସୋସିଏସନ ଅଛି । ସରକାରଙ୍କ ଶ୍ରମ ବିଭାଗରେ ଏ ଠିକାଦାରମାନଙ୍କ ନାମ ଠିକଣା ଏବଂ ଏମାନଙ୍କ ବ୍ୟବସାୟ ବିଷୟରେ ସଠିକ ଖବର ମିଳିବ ।

ଯେଉଁ ଦାଦନ ଶ୍ରମିକମାନେ ଭାରତ ଭିତରେ କାମ କରନ୍ତି, ସେମାନେ ସାଧାରଣତଃ ବର୍ଷେ, ଦୁଇବର୍ଷ ଲାଗି ଯାଇଥାନ୍ତି । ଗଲାବେଳେ ଠିକାଦାର ଏମାନଙ୍କ ପରିବାର ପାଇଁ ଜଣକୁ ପାଞ୍ଚଶହରୁ ଏକହଜାର ଟଙ୍କା ପର୍ଯ୍ୟନ୍ତ ଅଗତୁରା ଦେଇ, ସେମାନଙ୍କ ଟ୍ରେନ ଟିକଟ ମାଗଣାରେ କିଣାଇ, ସେମାନଙ୍କୁ କାମ ଜାଗାରେ ପହଞ୍ଚାଇଥାନ୍ତି । ତା ଛଡ଼ା,ଯେଉଁମାନେ ଭାରତ ବାହାରେ କାମ କରିବାକୁ ଯାଆନ୍ତି, ସେମାନେ ଠିକାଦାରଙ୍କ ଜରିଆରେ ତାଙ୍କର ପାସ୍‌ପୋର୍ଟ ତିଆରି କଲାପରେ, ବିଭିନ୍ନ ବଡ଼ ବଡ଼ କଣ୍ଟ୍ରାକ୍ଟରଙ୍କ କାମପାଇଁ ବାହାର ଦେଶକୁ ଯାଆନ୍ତି । ଖବର ନେବାରେ ଜଣାଯାଇଛି ଯେ, ବାହାରକୁ ଯାଇଥିବା ଶ୍ରମିକମାନେ ମାସକୁ ହାରାହାରି ତିନିହଜାରରୁ ଚାରି ହଜାର ଟଙ୍କା ପର୍ଯ୍ୟନ୍ତ ରୋଜଗାର କରନ୍ତି । ଏମାନେ ମାସକୁ ମାସ ବ୍ୟାଙ୍କ ଜରିଆରେ ତାଙ୍କ ଗ୍ରାମକୁ ଟଙ୍କା ପଠାଇଥାନ୍ତି । ଜଣେ ଶ୍ରମିକ ଦୁଇବର୍ଷ ବାହାରକୁ ଗଲେ ପ୍ରାୟ ପଚିଶ, ଷାଠିଏ ହଜାର ଟଙ୍କା ନେଟ୍ ଧରି ଆସିଥାଏ । ଏଥିଯୋଗୁ 'ବାଣପୁର' ଅଞ୍ଚଳକୁ କେବଳ ମାସକୁ ଲକ୍ଷ ଲକ୍ଷ ଟଙ୍କା ଆସୁଛି ଏବଂ

ବିଦେଶକୁ ଯିବାଲାଗି ଶ୍ରମିକମାନେ ଠିକାଦାରଙ୍କୁ ପାଞ୍ଚହଜାର ଛଅହଜାର ଟଙ୍କା ହାତରୁ ଦେଇ ଯିବାପାଇଁ ଲାଇନ ଲଗାଉଛନ୍ତି ।

ଶ୍ରମିକମାନଙ୍କ ପଠାଇ ଅଧିକ (ଫରେନ ଏକ୍ସ୍‌ଚେଞ୍ଜ୍) ବିଦେଶୀ ଟଙ୍କା ପାଉଥିବା ହେତୁ, ଇପିକାଲ ଜବଆରେ ସରକାର ମଧ୍ୟ ଲୋକ ପଠାଇଲେ । ବହୁତ ଲୋକ ଇପିକାଲ ଜବଆରେ, ଇରାକ, ଇରାନ ପ୍ରଭୃତି ଦେଶରେ କାମ କରୁଛନ୍ତି ।

ଏ ସମସ୍ତ ବିଷୟକୁ ବିଚାରକୁ ନେଲେ, ଶ୍ରମିକମାନେ ବାହାରକୁ ଯାଉଥିବା ହେତୁ ସେମାନଙ୍କ ପରିବାରର ଆର୍ଥିକ ପରିସ୍ଥିତି ବଢ଼ିଇବା ସଙ୍ଗେ ସଙ୍ଗେ ସେମାନଙ୍କ ଅଞ୍ଚଳର ଆର୍ଥିକ ଅବସ୍ଥା ବଢ଼ାଉଛନ୍ତି । ବାଣପୁର ବଜାର କମ୍ବା ବାଲୁଗାଁ ବଜାରରେ "ହାତେ ଚଉଡ଼ା, ପଚିଶ ହାତ ଲମ୍ବା ଜମିର (୧ × ୫୦)ର ଦାମ୍ ପାଞ୍ଚହଜାର ଟଙ୍କାରୁ ବେଶି । ଏହା ଦିଲ୍ଲୀ, କଲିକତା ସହରର ଜମି ଦାମ୍-ଠାରୁ ମଧ୍ୟ ଅଧିକ । ଏତେ ଟଙ୍କା ଦେଇ ମଧ୍ୟ ଜମି ମିଳୁନି । ଏହାର ମୂଳରେ ଲୋକମାନଙ୍କ କିଣିବାର ଶକ୍ତି ଥିବାର ପରିଚୟ ଦିଏ ।

ଯୁବକ ଜଣକ କହିଲେ, ଠିକାଦାରମାନେ ଶ୍ରମିକ ନବା ଅନ୍ୟାୟ ନୁହେଁ । ଯେତେବେଳେ ଆମ ପ୍ରଦେଶ ଅଧିକା ଟଙ୍କା ବାହାରୁ ପାଉଛନ୍ତି, ସେତେବେଳେ ଯେଉଁ ଠିକାଦାରମାନେ ଏ ବ୍ୟବସାୟ କରୁଛନ୍ତି, ସେମାନଙ୍କ କାର୍ଯ୍ୟକଳାପକୁ ଆଇନ୍ ଅନୁଯାୟୀ ଚାଳିତ କରିବା ସରକାରଙ୍କ ଦାୟିତ୍ୱ ହବା ଉଚିତ୍ । କାରଣ ଏ ସବୁ ଠିକାଦାରମାନେ ସାଧାରଣରେ କମ୍ ଶିକ୍ଷିତ । ସେମାନଙ୍କୁ ଗାଇଡ୍ କରି ଶ୍ରମିକମାନଙ୍କ ମଙ୍ଗଳ ପାଇଁ ଶ୍ରମ ବିଭାଗ ତତ୍ପର ହୋଇ କାମ କରିବା ଉଚିତ୍ । କିନ୍ତୁ ସେ କଥା ନକରି ଏବେ ଭଲଭେଲ ସମସ୍ତଙ୍କୁ ଗୋଟେ ଗୋଧାରେ ପୂରାଇ ବାଡେଇବା ଠିକ୍ ହଉନି ।

ଇନ୍ଦ୍ର ତାଙ୍କ କଥା ଶୁଣି କହିଲେ, ଆପଣ ଯାହା କହିଛନ୍ତି ଠିକ୍ କଥା ।

ଇନ୍ଦ୍ରଙ୍କ ସଙ୍ଗେ ଯୁବକ କିରାଣୀ ଏବଂ ଏନ୍.ଆମ୍.ଆର୍. କର୍ମଚାରୀଙ୍କ କଥା-ବାର୍ତ୍ତା ସହକାରୀ ମନ୍ତ୍ରୀ ଶ୍ରୀଯୁକ୍ତ ଦାସ, ତାଙ୍କ ଅଫିସ କୋଠରୀରେ ବସି ଶୁଣୁଥିଲେ । ଏମାନେ ସମସ୍ତେ ତାଙ୍କ କୋଠରୀ ଦୁଆର ମୁହଁ ପାଖେ ମୁଖ୍ୟମନ୍ତ୍ରୀଙ୍କୁ ଦେଖାକରିବା ପାଇଁ ଅପେକ୍ଷା କରିଥିଲେ । ମୁଖ୍ୟମନ୍ତ୍ରୀଙ୍କ ଅଫିସ ଆସିବା ଡେରି ଦେଖି, ଅପେକ୍ଷା-ରତ କର୍ମଚାରୀମାନେ ଚାହା, ପାନ ଖାଇବା ପାଇଁ ଅଫିସ ପାଖ ରାସ୍ତା ଉପରକୁ ଗଲେ । ଯୁବକ ଜଣକ ତାଙ୍କ ଅଫିସ ଭିତରକୁ ଯିବା ପରେ, ଇନ୍ଦ୍ର ମୁଖ୍ୟମନ୍ତ୍ରୀଙ୍କ କୋଠରୀ ସାମ୍ନାରେ ପଡ଼ିଥିବା ବେଞ୍ଚ ଉପରେ ବସିବାକୁ ଯିବା ସମୟରେ, ସହକାରୀମନ୍ତ୍ରୀ ଦାସ ବାବୁ ତାଙ୍କ କୋଠରୀ ଭିତରକୁ ଯିବାପାଇଁ ଡାକିଲେ । ମନ୍ତ୍ରୀଙ୍କ ଅନୁରୋଧକୁ ଏଡ଼ାଇ ନପାରି, ସେ ତାଙ୍କ କୋଠରୀ ଭିତରେ ପଶିଲେ ।

କିଛି ସମୟ ବସିଲା ପରେ ଦାସ ବାବୁ କହିଲେ, "ମୁଁ ଆପଣମାନଙ୍କ କଥାବାର୍ତ୍ତା ମୋ କୋଠରୀରେ ବସି ଶୁଣୁଥିଲି, କଥାବାର୍ତ୍ତାରୁ ଯାହା ବୁଝିଲି, ଆପଣ ଆମ ମୁଖ୍ୟଯନ୍ତ୍ରୀଙ୍କ ଅଫିସକୁ, ଏଇ ଡିପାର୍ଟମେଣ୍ଟରେ ଯେଉଁ ପ୍ରକାର ଦୁର୍ନୀତି ଚାଲିଛି ସେ ବିଷୟରେ ବୁଝିବାକୁ ଆସିଛନ୍ତି । ଆମ ଅଫିସର ଯୁବକ ଜଣକ ଆପଣଙ୍କୁ ଯାହା କହିଲେ ତାହା ସତ୍ୟ, କିନ୍ତୁ ତାଙ୍କ କଥା ଉପରେ ମୋର କିଛି କହିବାର ଅଛି । ସାରା ଭାରତବର୍ଷରେ କୌଣସି ସଂସ୍ଥା ଅଛି, ଯେଉଁଠାରେ ଦୁର୍ନୀତି ନାହିଁ ବୋଲି ଆପଣ କହିପାରିବେ ? ନା, ସବୁ ସଂସ୍ଥାରେ ଦୁର୍ନୀତି ରାକ୍ଷସ ପଶିଛି । କେଉଁ ସଂସ୍ଥାରେ ତାର ପ୍ରଭାବ କମ୍, ଆଉ କେଉଁ ସଂସ୍ଥାରେ ବେଶି । ଆମ ସଂସ୍ଥାରେ ଏହାର ପ୍ରଭାବ ବେଶି ହୋଇପାରେ ଏଥିରେ କିଛି ସନ୍ଦେହ ନାହିଁ । ମାତ୍ର ଅନ୍ୟ ଯେଉଁମାନେ ଆପଣଙ୍କୁ ଆମଆଡ଼କୁ ହାତ ଦେଖେଇ କହୁଛନ୍ତି, "ଦୁର୍ନୀତି ଚାଲିଛି ବୋଲି" ସେମାନେ କଅଣ ଦୁର୍ନୀତିମୁକ୍ତ ? କେବେ ନୁହଁ । ଆପଣ ତଲେଇ କରି ସବୁ ଘଟଣା ଦେଖନ୍ତୁ, ଠିକ୍ ଜାଣି ପାରିବେ ।

ତା'ଛଡ଼ା ଆପଣ ବୁଝନ୍ତୁ ତ, ଆମେମାନେ କଅଣ ପାଇଁ ଦୁର୍ନୀତି କରିବୁ ? ଆମମାନଙ୍କୁ ଏ ସବୁ କାମ କରିବାପାଇଁ ପ୍ରୋତ୍ସାହନ ଦଉଛି କିଏ ? ସେ ବିଷୟରେ ଟିକିଏ ଅନୁସନ୍ଧାନ କରି ବୁଝନ୍ତୁ । ଆପଣ କହୁଥିଲେ ମଫସଲ ଅଞ୍ଚଳରେ କେନାଲ ବନ୍ଧ, ବ୍ରିଜ ମରାମତି, ନଦୀ ବନ୍ଧ କାମରେ ମାଟି ହଜାରକୁ ତିନିଶହ ନେଇ, ମକ୍ଦୁରିଆମାନଙ୍କୁ ଦେଢ଼ଶହ, ଶହେ ଦଉଛୁ । ଏହା ସତ । ଯଦି ମଫସଲ ଅଞ୍ଚଳରେ କାମ କାହାକୁ ଦିଆଯିବ, ତାକୁ ଯଦି ଇଞ୍ଜିନିୟରମାନେ ନିଷ୍ପତ୍ତି ନ ନେଇ ସେ ଅଞ୍ଚଳର ଜଣାଶୁଣା ଟାଉଟରମାନେ ନିଷ୍ପତ୍ତି ନେବେ କିମ୍ବା ସେମାନଙ୍କ କଥା ଅନୁଯାୟୀ କଣ୍ଟ୍ରାକ୍ଟର ନିଯୁକ୍ତ କରାଯିବ, ଦୁର୍ନୀତି ରହିବନି କିମିତି ? ତା'ଛଡ଼ା, ମାସକୁ ମାସ ଯଦି ମଫସଲରେ କାମ କରୁଥିବା ଇଞ୍ଜିନିୟରମାନେ ବିଭିନ୍ନ ପ୍ରକାର "ନୈବେଦ୍ୟ" ନାନା ଠାକୁରମାନଙ୍କ ପାଖେ ଲଗାଇବାକୁ ବାଧ୍ୟ ହୁଅନ୍ତି, ତା'-ହେଲେ ସେ "ନୈବେଦ୍ୟ" ସେମାନେ ଆଣିବେ କେଉଁଠାରୁ ? ଥରେ କଣ୍ଟ୍ରାକ୍ଟର ପାଖେ ହାତ ପତାଇଲେ, ତାଙ୍କ କାମ ଉପରେ ସେମାନଙ୍କର କର୍ତ୍ତୃତ୍ୱ ରହିଲା କେଉଁଠି ?

ଆପଣ ଦେଖନ୍ତୁ, ଆମେମାନେ ଆଇ: ଏସ୍.ସି:ରେ ପ୍ରଥମ ଶ୍ରେଣୀରେ ପାଶକରି ଦେଶର ଉନ୍ନତି କରିବୁ ବୋଲି ଯନ୍ତ୍ରୀ ହିସାବରେ ପାଞ୍ଚବର୍ଷ ପାଠପଢ଼ି ଚାକିରି କଲୁ । ଆମ ସାଙ୍ଗମାନେ ଯେଉଁମାନେ କି କ୍ଲାସରେ ଆମଠାରୁ ଆହୁରି ଖରାପ ଛାତ୍ର ଥିଲେ, ସେମାନେ ଇଞ୍ଜିନିୟରିଂ ପଢ଼ିବାକୁ ସୁବିଧା ନ ପାଇବାରୁ

ଅନ୍ୟାନ୍ୟ ବିଭାଗରେ ଯୋଗ ଦେଲେ । ଏବେ ସେମାନେ ଆମର ସେକ୍ରେଟାରୀ ହେଲେଣି ।

କିନ୍ତୁ କୋଡ଼ିଏ ବର୍ଷ ବିତି ଯାଇଥିଲେ ମଧ୍ୟ, ଆମେମାନେ ଯେଉଁ ସହକାରୀ ଯନ୍ତ୍ରୀ, ସେଇ ସହକାରୀ ଯନ୍ତ୍ରୀ । ଗୃହକର୍ମରେ ଯଦି ଠିକ୍ ସମୟରେ ପ୍ରମୋଶନ ନ ମିଳିଲା, ତା'ହେଲେ ସେ ଗୃହକର୍ମ ପାଇଁ ଗୃହକର୍ତ୍ତାର ଇନ୍‌ସେଣ୍ଟିଭ କଅଣ ରହିଲା ? ଯଦି ଇନ୍‌ସେଣ୍ଟିଭ ନ ରହିବ, ତା'ହେଲେ ସେ ନିଶ୍ଚୟ ଅବାଟକୁ ଯିବ । ବର୍ତ୍ତମାନ ଆମ ସଂସ୍ଥାରେ ସେଇଆ ହୋଇଛି । ବର୍ଷ ବର୍ଷ ଧରି ପ୍ରମୋଶନ ନାହିଁ । ପ୍ରମୋଶନ ନଥିଲେ ଦୁର୍ନୀତି କରିବାକୁ ସୁବିଧା ଅଛି, ଦୁର୍ନୀତି କରୁଛନ୍ତି । ଆମେ ଦୁର୍ନୀତିକୁ ସପୋର୍ଟ କରୁନୁ, ମାତ୍ର ଦୁର୍ନୀତି କରିବା ପାଇଁ ଆମ ମୁଣ୍ଡରେ ଯଦି ଲଦି ଦିଆ-ଯାଏ, ତା'ହେଲେ କଅଣ କରାଯିବ ?

ଇନ୍ଦ୍ର ତାଙ୍କ କଥା ଶୁଣି କଅଣ ଉତ୍ତର ଦେବେ, କିଛି ଭାବି ପାରିଲେନି । ଏଇ ସମୟରେ "ଗ୍ରି" ଆସି ପହଞ୍ଚିଲା ।

ସହକାରୀ ଯନ୍ତ୍ରୀଙ୍କ ଅଫିସରେ ଗ୍ରି' ଖାଇ ସାରିଲା ବେଳକୁ ତାଙ୍କ ଅଫିସ ପିଅନ ଆସି ଖବର ଦେଲା ଯେ, ଷ୍ଟେଟବ୍ୟାଙ୍କ ଶାଖା କର୍ମଚାରୀମାନେ ଧର୍ମଘଟ କରିଥିବା ଯୋଗୁ ବ୍ୟାଙ୍କ କାମ ସମ୍ପୂର୍ଣ୍ଣ ଅଚଳ ହୋଇଯାଇଛି । ତେଣୁ ସେ ଦେଇଥିବା ଚେକ ଭଙ୍ଗେଇ ହେଲା ନାହିଁ ।

ଇନ୍ଦ୍ର କଥାଟି ଭଲଭାବେ ଜାଣିବାପାଇଁ ସହକାରୀ ଯନ୍ତ୍ରୀଙ୍କ ଆଡ଼େ ଚାହିଁବାରୁ, ଦାସ ମହାଶୟ କହିଲେ ଯେ, ରାଜ୍ୟର ୩୪୮ ଗୋଟି ଷ୍ଟେଟବ୍ୟାଙ୍କ ଶାଖା କାର୍ଯ୍ୟାଳୟରେ ଧର୍ମଘଟ ଚାଲିଛି । ଏହି ଧର୍ମଘଟର କାରଣ ହେଲା, କୋରାପୁଟ ଜିଲ୍ଲାର ଜଣେ ବ୍ୟାଙ୍କ ମ୍ୟାନେଜର ସେହି ବ୍ୟାଙ୍କର ଜଣେ ଷ୍ଟାଫଙ୍କୁ ତାଙ୍କର କାମରେ ଖିଲାପ କରିବା ଦୃଷ୍ଟିରୁ ସସ୍‌ପେଣ୍ଡ କଲେ । ଦୁର୍ଯୋଗକୁ ସେଇ ଷ୍ଟାଫ୍ ଜଣଙ୍କ ସେଠା ଆସୋସିଏସନର ସମ୍ପାଦକ ।

ଆସୋସିଏସନ କରି ଆପଣ ତାର କର୍ମକର୍ତ୍ତା ହୋଇଗଲେ, ଆପଣଙ୍କୁ ସାତଖୁଣ ମାଫ ବୋଲି ଧରିନିଆଯାଇଛି । ଆପଣଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାଭଳି ଅଫିସର ବହୁତ କମ୍ ।

ଆପଣ ଯାଇ ରାଉରକେଲା ଷ୍ଟିଲ ପ୍ଲାଣ୍ଟରେ ଦେଖନ୍ତୁ । ସେଠାରେ ପ୍ଲାଣ୍ଟର କର୍ମଚାରୀ ବିଭିନ୍ନ ଆସୋସିଏସନର କର୍ମକର୍ତ୍ତା ଅଛନ୍ତି । ଏହି କର୍ମକର୍ତ୍ତାମାନେ ତାଙ୍କ ମନଇଚ୍ଛା ଅଫିସକୁ ଆସନ୍ତି, ଯାଆନ୍ତି । ମାତ୍ର ତାଙ୍କ ଆସିବାଟାଇମ 'ଟାଇମ୍-କିପର' ଠିକ୍ ସମୟରେ ପକାଇଥାଏ । ସେ ଅଫିସରେ କାମ ନକରି ମାସ ମାସ

ଧରି ସହର ବାହାରେ ରହିଲେ ମଧ୍ଯ ତାର ଦରମା ମିଳିବାରେ କିଛି ଅସୁବିଧା ହୁଏନି । ପ୍ଲାଣ୍ଟର କର୍ମଚାରୀ ହୋଇ ମଧ୍ଯ, ସେମାନେ ବିଭିନ୍ନ ଦଳର ଯୁବନେତା ହୋଇ ରାଜନୈତିକ କାର୍ଯ୍ୟକ୍ରମରେ ସକ୍ରିୟ ଭାଗ ନେଇଥାନ୍ତି । ରାଜନୈତିକ ପଣ୍ଡାମାନଙ୍କ ପାଖ ଲୋକ ହୋଇଗଲରୁ, ସେମାନେ ଇନ୍ଦ୍ର ଚନ୍ଦ୍ର ମାନନ୍ତିନି । ଏପରିକି ପ୍ଲାଣ୍ଟର ତଳିଆ କର୍ମଚାରୀ 'ଖଲାସୀ' ମଧ୍ଯ ସେ ବିଭାଗରେ ଜେନେରାଲ ମ୍ୟାନେଜର ପ୍ରଭୃତିଙ୍କୁ ଖାତିର କରନ୍ତିନି । ଏସବୁ କଥା ସମସ୍ତେ ଜାଣନ୍ତି, କିନ୍ତୁ ଜାଣି ମଧ୍ଯ ତାଙ୍କୁ କିଛି କୁହନ୍ତିନି । କି ଦରକାର କାଦୁଅରେ ପଶିବା, କାଦୁଅରେ ପଶିଲେ ପୁଣି ଗୋଡ଼ ଧୋଇବାକୁ ପଡ଼ିବ ।

ଏବେ ଏ ଶୃଙ୍ଖଳା ଚୂଲିକି ଯାଉ । କୋରାପୁଟ ବ୍ୟାଙ୍କ ମ୍ୟାନେଜର କାଦୁଅକୁ ନଡ଼ର ପଶିଗଲେ । ସାଥି ସାଥି ଆସୋସିଏସନ ବାଲା ଲାଗି ଯାଇଛନ୍ତି । ଆମ ଦେଶରେ ବ୍ୟାଙ୍କ କର୍ମଚାରୀମାନେ ସବୁଠାରୁ ଅଧିକା ଦରମା ପାଉଥିବା କର୍ମଚାରୀ । ଏମାନେ ମଧ୍ଯ ଧର୍ମଘଟ କରି ଦେଶର ଅର୍ଥନୀତିକୁ ବ୍ୟାଘାତ କରୁଛନ୍ତି । ଯଦି ବ୍ୟାଙ୍କ ମ୍ୟାନେଜର ଅନ୍ୟାୟରେ ଜଣେ ଷ୍ଟାଫକୁ ସସ୍‌ପେଣ୍ଡ କରିଛନ୍ତି, ଆସୋସିଏସନ ମାଧ୍ୟମରେ ତାଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରାଯାଉ । ଦରକାର ପଡ଼ିଲେ କୋର୍ଟ କଚେରୀକୁ ଯାଅ ।

ନା, ସେମାନେ ସେକଥା କରିବେନି । "ଜୋର ଯାହାର ମୂଲକ ତାର" ନୀତିରେ ଧର୍ମଘଟ । ହଇରାଣ ହେଉଛନ୍ତି ସାଧାରଣ ଜନତା,ବ୍ୟବସାୟୀ ଅନୁଷ୍ଠାନ । ବାଧା ପାଉଛି ଦେଶରେ ଅର୍ଥନୀତି । ଆମେ ସମସ୍ତେ ଏକଥା ଦେଖୁଛେ, ଜାଣୁଛେ, ମାତ୍ର ଚୁପ୍ ରହୁଛେ । କାରଣ ଆମ ମୁଣ୍ଡରେ ପଶିଯାଉଛି—ଆମ ଦେଶର ସମ୍ବିଧାନ ଏ ସମସ୍ତ କାମ କରିବାକୁ ଅଧିକାର ଦେଇଛି, ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦ କରିବାକୁ, କୋର୍ଟ କଚେରୀର ଆଶ୍ରୟ ନେବାକୁ କହୁଛି । ମାତ୍ର କେଉଁଠି ତ କହୁନି ଦେଶର ଅର୍ଥନୀତିକୁ ଧ୍ୱଂସ କରିବାକୁ ? ଦେଶର ଜନସାଧାରଣଙ୍କୁ ହଇରାଣ କରିବାକୁ ?

ଏ ସମସ୍ତ ମୂଳରେ ହେଲା ବ୍ୟକ୍ତିଗତ ସ୍ୱାର୍ଥ । ବ୍ୟକ୍ତିବିଶେଷ କେତେ ଲାଭବାନ ହୋଇପାରେ ! ଜାତି କି ଦେଶ ପଛେ ନର୍କକୁ ଯାଉ, ସେମାନଙ୍କର ଯାଏ ଆସେ କେତେ ? ଏହି ଆଦର୍ଶକୁ ଆମେ ଆମ ଆଗରେ ରଖି ଦେଶର ନାଗରିକ ବୋଲାଉଛେ ।

ଇନ୍ଦ୍ର, ଦାସବାବୁଙ୍କ ଇମୋସନାଲ ଯୁକ୍ତିଟି ଶୁଣି ଭାବିଲେ ସତ କଥା । ଏ

ଦେଶର ନାଗରିକମାନେ ସ୍ୱାଧୀନତା ପାଇଲାଦିନଠାରୁ, ପୂରା ମାତ୍ରାରେ ଲଗାମଛଡ଼ା ହୋଇ ଗଲେଣି । ଏମାନଙ୍କୁ ଲଗାମ ଦରକାର ।

ଇନ୍ଦ୍ରଙ୍କ କଥା ଶୁଣି ସହକାରୀ ମନ୍ତ୍ରୀ ଜଣଙ୍କ କହିଲେ, 'ଏମାନଙ୍କୁ କଅଣ ଲଗାମ ଦେବା ? ଆପଣ ଶୁଣନ୍ତୁ ରାଉରକେଲା ସହର କଥା । ଏବେ ମୁଁ ଗସ୍ତରେ ରାଉରକେଲା ଯାଇ ଫେରୁଛି । ସେଠାରେ ମୋର ସାଙ୍ଗସାଥି ବହୁତ ଅଛନ୍ତି । ରାଉରକେଲା ଇସ୍‌ପାତ କାରଖାନାରେ ଦଶବର୍ଷ କାମକଲା ପରେ ମୋର ଗୋଟିଏ ସାଙ୍ଗକୁ ଏବେ ଗୋଟେ କ୍ୱାଟର ଅ:୦ ନମ୍ବର ସେକ୍ଟରରେ ମିଳିଥିଲା । ସେ କ୍ୱାଟରକୁ ଯିବା ପୂର୍ବରୁ ଶହେ ଯୁବକ ସେ କ୍ୱାଟର ଭିତରେ ଜବରଦସ୍ତି ପଶି ସେଠାରେ ଗୋଟେ ସାଇନବୋର୍ଡ଼ ମାରିଦେଲେ ଏବଂ ଉପରବେଳା ଜଣେ ରାଜନୈତିକ ବଡ଼ପଣ୍ଡାଙ୍କୁ ଡାକିଆଣି କ୍ଲବ ଘର ଉଦ୍‌ଘାଟନ କରିଦେଲେ ।

ଅବଶ୍ୟ ତା ଆଗରୁ ବଡ଼ପଣ୍ଡାଙ୍କ ସହିତ କଥାବାର୍ତ୍ତା କରି ଏ ସମସ୍ତ କାମ କରାଗଲା । ସହରରେ ସମସ୍ତେ ଜାଣନ୍ତି 'ବଡପଣ୍ଡା'ଙ୍କ ହାତ ଉପରେ ଅଛି । ସେ ଯେତେ ଅନ୍ୟାୟ କଲେ ଇସ୍‌ପାତ କାରଖାନାର ଏମ: ଡ଼ି: କିଛି କରିପାରିବେନି । ଯଦି କରନ୍ତି, ତାଙ୍କୁ 'ଅଣଓଡ଼ିଆ' ଇତ୍ୟାଦି କହି ଏଇ ବେକାରିଆମାନଙ୍କୁ ଧରି ଗୋଟେ ଆନ୍ଦୋଳନର ସୂତ୍ରପାତ କରିବା ବଡ଼କଥା ନୁହଁ । କିନ୍ତୁ ଜବରଦସ୍ତ ଘର ଦଖଲ କରିବା ଦ୍ୱାରା, ଜନସାଧାରଣଙ୍କ ଧାରଣା କଅଣ ହେଲା ? ଜାଣିବା ଶୁଣିବା ଲୋକହୋଇ, ଆଇନ ଭାଙ୍ଗି ବେନିୟମ କାର୍ଯ୍ୟ କରୁଛନ୍ତି, ଏବଂ ଏଇ ଅନ୍ୟାୟ କାମକୁ ଯେକୌଣସି ଶାସନ ଯଦି ପ୍ରତ୍ୟକ୍ଷ କିମ୍ବା ପରୋକ୍ଷରେ ଅନୁମୋଦନକରେ, ତାହେଲେ ସେ 'ଶାସନ' ଉପରେ ଜନସାଧାରଣଙ୍କ ଧାରଣା କଅଣ ହେବ ? ଶହେଜଣ ବେକାରିଆଙ୍କୁ ସମର୍ଥନ କରିବାକୁ ଯାଇ ଦେଶର ପ୍ରତିଷ୍ଠିତ ଆଇନ ଭାଙ୍ଗିବା, ଶାସନର ବଦନାମ କରିବା ଉଚିତ କି ? ଯଦି କ୍ଲବ ଦରକାର ତାହେଲେ ଅଥରିଟୀଙ୍କୁ କହି ତାଙ୍କର ଆଦେଶ ନେଇ ଘର ନିଅ, କ୍ଲବ ଖୋଲ, କିଏ ମନା କରୁଛି ?

ଏ ତ ଗୋଟେ ଘଟଣା । ମୋ ସାଙ୍ଗ କହିଲେ, ରାଉରକେଲାରେ ଏପରି ବହୁ ଘଟଣାମାନ ଘଟୁଛି । କେବଳ ତୁମେ ଜଣେ ବଡ଼ପଣ୍ଡା ପାଖେ ପହଞ୍ଚିଲେ ହେଲା । ସରକାର ଜବରଦଖଲକାରୀଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରୁଛନ୍ତି । ଗରିବ ଲୋକଙ୍କ ଘର ଭାଙ୍ଗୁଛନ୍ତି । ଏହାମୂଳରେ ସହରରୁ "ଦୂଷିତ ଅଞ୍ଚଳ" ବାହାର କରାଯାଇ ସେମାନଙ୍କ ପାଇଁ ଅନ୍ୟ ବ୍ୟବସ୍ଥା କରାଯାଉଛି । ରାସ୍ତାଘାଟ ଅବରୋଧ ହଟା ଯାଉଛି । ଏହା ଜନହିତକର ସମୂହ କାର୍ଯ୍ୟ ।

କିନ୍ତୁ, ବଡ଼ପଣ୍ଡାମାନେ ଯଦି ଏ ଆଇନ୍‌କୁ ଅମାନ୍ୟ କରି, ମୁଖ୍ୟ ରାସ୍ତାରୁ କିଛି ଅଂଶ ନିଜ ଘର ଭିତରେ ମିଶାଇ ହଜାର ହଜାର ଜନସାଧାରଣଙ୍କ ସାମ୍ନାରେ ଦୋକାନ ଘର କିମ୍ବା କୋଠା ତିଆରି କରି ଭଡ଼ା ଦେଇ ହଜାର ହଜାର ଟଙ୍କା ରୋଜଗାର କରନ୍ତି, ତା'ହେଲେ ଲୋକମାନଙ୍କର କି ପ୍ରକାର ଧାରଣା ଏମାନଙ୍କ ଉପରେ ହେବ ଏବଂ ଏମାନଙ୍କୁ ଯେଉଁମାନେ ସପୋର୍ଟ କରୁଛନ୍ତି, ତାଙ୍କ ଉପରେ କି ଧାରଣା ସୃଷ୍ଟି ହେବ ? ଲୋକମାନେ ଆଜି ନକହି ପାରନ୍ତି, କାଲି ତ ନିଶ୍ଚୟ କହିବେ !

ସବୁଠାରୁ ଆଶ୍ଚର୍ଯ୍ୟ କଥା, ଯେଉଁ ସରକାରୀ କଳ ଏ ଅନ୍ୟାୟ ବିରୁଦ୍ଧରେ କହିଲେ, ତାଙ୍କୁ ସେଠାରୁ ତାଙ୍କ ନାଁରେ ମିଛ ସତ କହି ବଦଳି କରିଦିଅ, କାମ ସରିଲା । ଉପରବାଲା କଅଣ ଭିତରେ ପଶି ଭିତର ଘଟଣା ବୁଝୁଛନ୍ତି ? ବର୍ତ୍ତମାନ ଏମିତି ଘଟଣା ରାଉରକେଲା ସହର କାହିଁକି, ସବୁ ସହରରେ ଦେଖିବାକୁ ପାଇବେ । ମୋ କହିବା କଥା ହେଲା, ଜନସାଧାରଣ ଯେଉଁ ନାଗରିକମାନଙ୍କ ପାଖରୁ କିଛି ନେତୃତ୍ୱ, ଆଦର୍ଶ ଆଶା କରନ୍ତି, ସେ ସରକାରୀ କର୍ମଚାରୀ ହୁଅନ୍ତୁ, କି ବ୍ୟାଙ୍କ କର୍ମଚାରୀ ହୁଅନ୍ତୁ କିମ୍ବା କୌଣସି ଦଳର "ବଡ଼ପଣ୍ଡା" ହୁଅନ୍ତୁ, ସେମାନଙ୍କ ସାଧାରଣ ଭାବମୂର୍ତ୍ତି ଆଦର୍ଶ ସ୍ଥାନୀୟ ହେବା ଉଚିତ୍ । ତା'ନହେଲେ, ସେମାନେ ସେ ସ୍ଥାନମାନଙ୍କରେ ରହିବା ଉଚିତ ନୁହେଁ ।

ବର୍ତ୍ତମାନ ଆମ ଦେଶର ଅବସ୍ଥା ସେଇଆ । କଥା କଥାକେ ଆସୋସିଏସନ, କ୍ଲବ ମାଧ୍ୟମରେ ଧମକ, ଷ୍ଟ୍ରାଇକ । ଦେଶବାସୀ ପଛେ ଭାସିଯାଆନ୍ତୁ, ଆମେ ତ ଭଲରେ ରହିବୁ ?

"ମିଶୁ ତାଙ୍କ ଦେହ ଏ ଦେଶ ମାଟିରେ
ମୁଁ ଚାଲୁଥାଏ ତାଙ୍କର ପିଠିରେ ।"

ଇନ୍ଦ୍ରଙ୍କ ଏ ସବୁ କଥା ଦେଖିବାରେ ଆଉ ଶୁଣିବାରେ ଆଗ୍ରହ ଦେଖି, ସହକାରୀ ମନ୍ତ୍ରୀ ଜଣକ କହିଲେ, "ଆପଣ ତ ଭୁବନେଶ୍ୱର ସହର ଏତେଦିନ ବୁଲି ଦେଖିଲେ । କେତେ ଲୋକଙ୍କୁ ଦେଖା କରି ତାଙ୍କ କଥା ଶୁଣିଲେ । ରାଉରକେଲା ଓଡ଼ିଶାର ଆଉ ଗୋଟିଏ ସହର, ଦେଶର ଗୋଟିଏ ଶିଳ୍ପ ନଗରୀ । ଏଠାରେ ଦେଶର ସବୁଆଡୁ ଲୋକମାନେ ଆସି ବସବାସ କରୁଛନ୍ତି । ସେ ଅଞ୍ଚଳକୁ ଯାଇ ଟିକିଏ ବୁଲି ଆସନ୍ତୁ । ସେଠାରେ ମଧ୍ୟ ଦେଶ ଜାତିର ସମୂହ ସ୍ୱାର୍ଥ ଜଡ଼ିତ ।

ତାଙ୍କକଥା ଶୁଣି ଇନ୍ଦ୍ର କହିଲେ, "ଆପଣ ଯାହା କହିଲେ ସତ କଥା । ସ୍ୱାମଧରେ ରାଉରକେଲା ସହର ଆଡ଼େ ଯାଇ ବୁଲିଆସିଲେ ହେବ । ନିଜ ଆଖିରେ ଘଟଣା ନଦେଖିଲେ, ଆଜିକାଲି କାହାକୁ ବିଶ୍ୱାସ କରିବା ଠିକ ହେବନି ।"

ଅଫିସ ସମସ୍ତ ନଷ୍ଟ ହେଉଥିବା ଦେଖି ଇନ୍ଦ୍ର ବିନମ୍ରଭାବେ ମନ୍ତ୍ରୀଙ୍କ ଠାରୁ ବିଦାୟ ନେଲେ । ମନ୍ତ୍ରୀଙ୍କ ଠାରୁ କେତେଗୁଡ଼ିଏ କଥା ଶୁଣି ତାଙ୍କ ମନ ଭାରାକ୍ରାନ୍ତ ହୋଇଯାଇଥିଲା । ସେ ଯାହା ଭାବୁଥିଲେ, ଘଟଣାମାନ ସେଇବାଟ ଦେଇ ଯାଉନି ।

ଭାରାକ୍ରାନ୍ତ ମନକୁ ଟିକିଏ ଲଘବ କରିଦେବା ପାଇଁ ଇନ୍ଦ୍ର ଗୋଟିଏ ପାନ ଦୋକାନ ପାଖେ ଠିଆହୋଇ ଖଣ୍ଡେ ସାଧାମିଠା ପାନ ମାଗିଲେ । ପାନ ଖାଇବା ଆଗରୁ ତାଙ୍କର ଅଭ୍ୟାସଗତ ନଥିଲା । ବିଧବା ବ୍ରାହ୍ମଣୀ ଘରୁ ଏତିକି ଶିକ୍ଷା ଲାଭ କରିଛନ୍ତି ।

ପାନ ଦୋକାନ ପାଖେ ବେଶ ଭିଡ଼ ଜମିଥାଏ । ଅଫିସର ଟିଫିନ ସମୟ । ଯୁବକଗୋଷ୍ଠୀ ପ୍ରାୟ ଅଫିସ ଛାଡ଼ି ରାସ୍ତାଉପରେ ବା ଆଉ ପାନ ଦୋକାନ ପାଖେ ଭିଡ଼ ଜମାଇଥାନ୍ତି । ପାନ ଦୋକାନ ପାଖେ ଜଣେ ବୟସ୍କ କର୍ମଚାରୀ ମଧ୍ୟ ପାନ ପାଇଁ ଅପେକ୍ଷା କରିଥାନ୍ତି । ଚାକିରୀରୁ ବିଦାୟ ନେବାକୁ ଆଉ ବେଶି ଡେ଼ରି ନାହିଁ । କଥା ପ୍ରସଙ୍ଗରେ ବୟସ୍କ କର୍ମଚାରୀ ଜଣଙ୍କ ଯୁବଗୋଷ୍ଠୀ (କର୍ମଚାରୀ)ଙ୍କୁ ବୁଝାଉଥାନ୍ତି ଯେ ବର୍ତ୍ତମାନ ଯୁବଗୋଷ୍ଠୀ କିପରି ବିପଥ ଆଡ଼କୁ ଟାଣିହୋଇ ଯାଉଛନ୍ତି ।

ସେ କହୁଥାନ୍ତି, "ଆଜିକାଲିର ଯୁବକମାନେ ଅଯଥା ଷ୍ଟ୍ରାଇକ୍, ବନ୍ଦ. ଆନ୍ଦୋଳନରେ ଯୋଗ ଦେଇ, ସେମାନଙ୍କର ବହୁମୂଲ୍ୟ ସମୟ ନଷ୍ଟ କରିବା ସଙ୍ଗେ ସଙ୍ଗେ ଦେଶର କ୍ଷତି ଘଟାଉଛନ୍ତି । ସେମାନେ ଯଦି ଏ ସମୟତକ ଦେଶରେ ଯେଉଁମାନେ ଦୁର୍ନୀତି କରୁଛନ୍ତି, ସେମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରନ୍ତେ; ଯେଉଁ ଅଫିସମାନଙ୍କରେ ଦୁର୍ନୀତି ନୀତିଗତ ଭାବେ ଚାଲୁଛି, ସେ ଅଫିସ ଆଗରେ ଧାରଣା ଦିଅନ୍ତେ; ଯେଉଁ ବଡ଼ପଣ୍ଡାମାନେ ଦିନରେ ଗୋଟିଏ କଥା, ରାତିରେ ଆଉ ଗୋଟିଏ କଥା କହି ଗରୀବ ଲୋକମାନଙ୍କୁ ମିସ୍‌ଗାଇଡ଼ କରୁଛନ୍ତି, ତାଙ୍କୁ ଯଦି ଜନସାଧାରଣରେ ଏକ୍‌ସପୋଜ କରନ୍ତେ; ତାହେଲେ ଏମାନେ ଦେଶର, ଜାତିର ମଙ୍ଗଳ କରନ୍ତେ । ସେହିପରି ମଫସଲ ଅଞ୍ଚଳରେ କାହିଁକି ଆଇ: ଆର: ଡି: ପି, ଇ ଆର. ପି. କାର୍ଯ୍ୟକ୍ରମ ଠିକଭାବେ ଚାଲିପାରୁନି, ଏବଂ ଏଥିପାଇଁ ଯେଉଁମାନେ ଦାୟୀ ତାଙ୍କୁ ଯଦି ଜଗନ୍ତେ, ତାହେଲେ ଆମ ଦେଶର ଅବସ୍ଥା ନିଶ୍ଚୟ ଉନ୍ନତ ହୁଅନ୍ତା ଏବଂ ସେମାନେ ଯେଉଁ ସମୟ ଏଥିପାଇଁ ଦେଲେ ତାହା ଜନସାଧାରଣଙ୍କ ମନରେ ସ୍ନେହ, ଉତ୍ସାହ, ଆଶା, ଦମ୍ଭ ଦିଅନ୍ତା ।"

ତାଙ୍କ କଥା ଶୁଣି ଆଉଜଣେ କହିଲେ, "ଏ ସମସ୍ତ କାମ କରିବାକୁଗଲେ, ଏମାନେ ମସ୍‌ଗୁଲ୍ ହବାପାଇଁ ପଇସା ଦେବ କିଏ ? ଏମାନେ ଯେଉଁସବୁ ବନ୍ଦ, ଷ୍ଟ୍ରାଇକ, ପୋଡ଼ାଜଳା କାମ କରୁଛନ୍ତି, ଏମାନଙ୍କୁ ଏସବୁ କାମ କରିବାପାଇଁ ତ

ଠିକା ଦିଆଯାଉଛି । ଏତେ ପଇସା ନିଅ; ଏତେ ଲୋକ ଦିଅ, ଆଉ ଏଇ କାମ କର । ବେଶ୍ କାମ ଶେଷ । 'ପଇସା ନିଅ', ଉପରେ ଲୋକଦେଖାଣିଆ ପାଇଁ ଗୋଟିଏଣେ ଦେଶଭକ୍ତ । ଜନସାଧାରଣଙ୍କ ପାଇଁ ଜୀବନ ଉତ୍ସର୍ଗ କରିବାକୁ ଡେଇଁ ପଡ଼ିଲା ପରି ଭାଷଣ । ମାତ୍ର ଭିତରେ ଅଲଗା କାମ, ଅଲଗା ଚିନ୍ତାଧାରା । ଆମ ଯୁବକଗୋଷ୍ଠୀର ମୁହଁ ରାତିରେ ଗୋଟେ, ସକାଳ ହେଲେ ଆଉ ଗୋଟେ ।

ତାଙ୍କ କଥା ଶୁଣି ବୟସ୍କଲୋକ ଜଣକ କହିଲେ—"ଏଥିପାଇଁ ଦାୟୀ କିଏ ? ଆମ ପୁଅ ଝିଅମାନେ ଯଦି ଠିକ୍ ବାଟରେ ନ ଚାଲିବେ, ସେଥିପାଇଁ ଆମେ ଦାୟୀ । ସେମାନଙ୍କୁ ବାଟ ଚଲେଇ ଶିଖେଇବା ଆମର କର୍ତ୍ତବ୍ୟ । ଆମେ ଯଦି ସେମାନଙ୍କୁ ଠିକ୍ ବାଟେ ନନବା, ସେମାନେ ଅବାଟକୁ ଯିବେ । ଏବେ ଏସବୁ ବିଷୟରେ ଚିନ୍ତା କରିବା ଉଚିତ । ଯେଉଁମାନେ ଗଲେଣି ଗଲେଣି, ଅନ୍ତତଃ ଅନ୍ୟମାନେ ଯିବା ଉଚିତ ନୁହେଁ ।"

( ୩୧ )

ସହକାରୀ ମନ୍ତ୍ରୀଙ୍କ କଥା ଅନୁଯାୟୀ ଇନ୍ଦ୍ର, ରାଉରକେଲା ସହର ଦେଖିବାକୁ ଭୁବନେଶ୍ୱରରୁ ରାଉରକେଲା ଆସିଥାନ୍ତି । ସେଦିନ ଉତ୍କଳ ଏକ୍ସପ୍ରେସ ପହଞ୍ଚୁ ପହଞ୍ଚୁ ଦି'ଘଣ୍ଟା ଡେରି ହୋଇଥାଏ । ପ୍ରାୟ ସବୁଦିନ ଘଣ୍ଟେ ଦି ଘଣ୍ଟା ଲେଟ୍‌ରେ ଏ ଟ୍ରେନ ଆସେ ବୋଲି ଅନ୍ୟ ପାସେଞ୍ଜରମାନେ କୁହାକୁହି ହେଉଥିଲେ । ଗାଡ଼ିରୁ ଓହ୍ଲାଇ ଇନ୍ଦ୍ର ଭାବିଲେ କୁଆଡ଼େ ଯିବେ । ନୂଆ ସହର । ଅଜଣା ଅଶୁଣା ଜାଗା । ଯାହାହେଉ ଆସି ପହଞ୍ଚିଲେଣି ଯେତେବେଳେ, କୁଆଡ଼େ ହେଲେ ଯିବାକୁ ହେବ ଭାବି, ଷ୍ଟେସନ ଛକରୁ ମେନ୍ ରାସ୍ତା ଧରିଲେ ।

କିଛିବାଟ ଗଲାପରେ ଦେଖିଲେ ଚାରିଆଡ଼େ ପ୍ରଚାରପତ୍ର । ଡାକବାଜି ଯନ୍ତ୍ରରେ ଭାଷଣ ଦେଉଥିବା ନେତାମାନଙ୍କ ପାଟିରେ କାନଅତଡ଼ା ପଡୁଥାଏ । ବଜାରଘାଟ ପଡୁଛି—ଉଠୁଛି ।

ଇନ୍ଦ୍ର ଆଉ କିଛିବାଟ ଯାଇ, ଗୋଟେ ପାନ ଦୋକାନପାଖେ ଠିଆ ହୋଇ, ଦୋକାନୀକୁ ପଚାରିଲେ ଘଟଣା ବୁଝିବା ପାଇଁ ।

ଦୋକାନୀଟି ତାଙ୍କ କଥାଶୁଣି କହିଲା, "କ୍ୟା ମାଲୁମ୍ ନେହିଁ ? ମ୍ୟୁନିସି-ପାଲିଟିକା ଇଲେକ୍ସନ ପ୍ରଚାର ଚଲ୍‌ରହା ହେଁ" ।

ଇନ୍ଦ୍ର ମନେ ମନେ ଭାବିଲେ, ସେ ତ ଓଡ଼ିଆରେ ପଚାରିଲେ, ବାବୁଜଣଙ୍କ

ହିନ୍ଦିରେ ଉତ୍ତର ଦେଲେ । ଏଠାରେ ବୋଧେ ଓଡ଼ିଆରେ ବହୁତ କମ୍ ଲୋକ କଥାବାର୍ତ୍ତା ହୁଅନ୍ତି । ସିଆଡ଼େ ସରକାର "ଓଡ଼ିଆ"କୁ ସରକାରୀ ଭାଷା କଲାବେଳକୁ ଏ ସହରରେ ଓଡ଼ିଆଭାଷା କହିବା କମି କମି ଯାଉଛି । ଯାହାହେଉ, ରାଷ୍ଟ୍ରଭାଷା ପ୍ରଚାର ଚାଲିଛି ତ ! ଭଲ ।

ନେତାମାନଙ୍କ ଭାଷଣ ଶୁଣିବା ପାଇଁ ଇନ୍ଦ୍ର ଯାଇ ସଭା ପାଖେ ପାଖେ ଠିଆ ହେଲେ । ଏପଟେ ଜଣେ ବକ୍ତା ମାଇକ୍‌ରେ ଖୁବ୍ ପାଟିକରି, ଟେବୁଲ ବାଡ଼େଇ ଭାଷଣ ଦେଲାବେଳକୁ ତାଙ୍କ ବିପକ୍ଷ ଦଳର ବକ୍ତା ଆରପଟୁ ମାଇକ୍‌ରେ ସେହିପରି ଅଙ୍ଗଭଙ୍ଗି କରି ଭାଷଣ ଦେଉଥାନ୍ତି । କିଛି ସମୟ ଠିଆହେଲାପରେ ମଧ୍ୟ ଇନ୍ଦ୍ର ସେ ଭାଷଣମାନଙ୍କରୁ କିଛି ବୁଝିପାରିଲେନି । ଏ ଦୁଇଦଳଙ୍କ ଛଡ଼ା ତୃତୀୟ ଦଳର ଲୋକ ମଧ୍ୟ ଗୋଟିଏ ରିକ୍‌ସା ଉପରେ ମାଇକ୍‌ଟେ ରଖି, ସେମାନଙ୍କ ମତି ଦେଇଗଲେ । ସେ ମଧ୍ୟ ପ୍ରଚାରପତ୍ର ଫିଙ୍ଗିବା ସଙ୍ଗେ ସଙ୍ଗେ ରଡ଼ି କରି ପ୍ରଚାର କରୁଥାନ୍ତି । କିଏ କାହା କଥା ବୁଝୁଁଛି ? ଦୋକାନୀମାନେ ଦୋକାନ ଭିତରୁ ମୁଣ୍ଡ ଟେକି ନିର୍ବାଚନ ମଜା ଦେଖୁଥାନ୍ତି ।

କିଛି ସମୟ ପରେ ଇନ୍ଦ୍ର ଗୋଟେ ଓଡ଼ିଆ ସାଇନ୍‌ବୋର୍ଡ ମରାହୋଇଥିବା ଦୋକାନ ଭିତରକୁ ପଶିଲେ । ଦୋକାନ ମାଲିକଙ୍କୁ ପଚାରିବାରେ, ସେ ବୁଝିଲେ ଯେ, ରାଉରକେଲା ସହର ହେବା ଦିନଠାରୁ ସେଠାରେ ମ୍ୟୁନିସିପାଲିଟି ନିର୍ବାଚନ-କେବେ ହୋଇ ନଥିଲା । ଯଦିଓ ଗଣତନ୍ତ୍ରରେ ନିର୍ବାଚନ ମାଧ୍ୟମରେ ଲୋକପ୍ରତିନିଧି ବାଛି ମ୍ୟୁନିସିପାଲିଟି ଶାସନ ଚଳେଇବା କଥା, ଏପର୍ଯ୍ୟନ୍ତ ସରକାର ଏଠାକାର ଏ: ଡ଼ି: ଏମ୍‌ଙ୍କୁ ଚେୟାରମ୍ୟାନ୍ କରି, ମନୋନୀତ ପ୍ରତିନିଧିମାନଙ୍କ ଦ୍ୱାରା ଏ ଶାସନ ଚଳାଉଥିଲେ । ଏବେ ସମସ୍ତେ ଦାବୀ କରିବାରୁ ନିର୍ବାଚନ ହେଉଛି । କଥା ପ୍ରସଙ୍ଗରେ ସେ କହିଲେ, ରାଉରକେଲା ସହର ଗୋଟିଏ କସମୋପୋଲିଟାନ ସହର । ଏଠାକାର ବାସିନ୍ଦାମାନେ ମୁଖ୍ୟତଃ ପ୍ଲାଣ୍ଟର ଚାକିରିଆ । ବାକି ଯେଉଁମାନେ ରହିଲେ, ସେମାନେ ବ୍ୟବସାୟୀ ଗୋଷ୍ଠୀ, ଦିନ-ମଜୁରିଆ । ଏମାନଙ୍କଲାଗି ଏ ସହରର ବହୁତ ଉନ୍ନତି ହେବା ଦରକାର । ଦଳଗତ ମନୋଭାବ ନରଖି ଯଦି କାମ ହୁଏ ତା'ହେଲେ ଏ ସହରରେ କିଛି ଉନ୍ନତି ହେବ । ଏ: ଡ଼ି: ଏମ: ସରକାରୀ ପ୍ରତିନିଧି ଥିବାଦ୍ୱାରା ସେ କୌଣସି ଦଳଗତ କଥାକୁ କାନକୁ ନନେଇ ଏ ସହରର ଉନ୍ନତି କରିବା ଲାଗିଥିଲେ । ଏବେ ନିର୍ବାଚନ ହେଉଛି, ଦେଖିବା କିମିତି କାମ ହେବ !

ସେମାନଙ୍କ କଥାଶୁଣି ଇନ୍ଦ୍ର କହିଲେ ଶୁଣନ୍ତୁ, "ପୂର୍ବକାଳରେ କାଶୀ ରାଜ୍ୟ

ସାରା ଭାରତ ଭୂଖଣ୍ଡରେ ଏକ ପରାକ୍ରମୀ, ଶକ୍ତିଶାଳୀ, ସୁଶାସିତ ରାଜ୍ୟଥିଲା । ରାଜା ଇନ୍ଦ୍ରନୀଲଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର "ବରଭୂତ" ରାଜ୍ୟର ରାଜା ହେଲେ । ବର-ଭୂତ ରାଜ୍ୟ ଭାର ଗ୍ରହଣ କଲାବେଳେ, ତାଙ୍କର ବୟସ ଅତ୍ୟନ୍ତ କମଥିଲା । ଯୁବକ ସୁଲଭ ଚପଳତାର ବଶବର୍ତ୍ତୀ ହୋଇ, ସେ ଆମୋଦ ପ୍ରମୋଦରେ ଦିନ କାଟୁ-ଥିଲେ । ଦିନ ଦିନ ଧରି ପାଶଖେଳ କରିଚିବା, ରଙ୍ଗ ମହଲରେ ସୁନ୍ଦରୀ ନୃତ୍ୟରତା ରମଣୀମାନଙ୍କ ସଙ୍ଗେ ସମୟ କଟାଇବା ତାଙ୍କର ଥିଲା ବଡ଼ ସଉକ । ଏସବୁ ସତ୍ତ୍ୱେ କାଶୀରାଜ୍ୟ ସୁଶାସିତ ଏବଂ ଅନ୍ୟ ରାଜ୍ୟ ତୁଳନାରେ ପରାକ୍ରମୀ ଥିଲା । ଏହାର ମୂଳରେ ଥିଲେ ସେ ରାଜ୍ୟର ମନ୍ତ୍ରୀ "ଅନାହୁତ" ।

ରାଜା ଇନ୍ଦ୍ରନୀଳ ଇହଧାମ ତ୍ୟାଗ କରିବା ପୂର୍ବରୁ ରାଜକୁମାରଙ୍କ ଗୁଣାବଳୀ ଜାଣି ମନ୍ତ୍ରୀଙ୍କୁ ସବୁକଥା କହି ଯାଇଥିଲେ । ରାଜକୁମାର କପରି ଉତ୍ତମ ରାଜା ହୋଇ ରାଜ୍ୟ ଶାସନ କରିବେ, ତାହା ଶିକ୍ଷା ଦେବାପାଇଁ ମଧ୍ୟ ମନ୍ତ୍ରୀଙ୍କୁ ଅନୁରୋଧ କରି-ଥିଲେ । ରାଜଭକ୍ତ ଅନାହୁତ ମୃତ ରାଜାଙ୍କ ନିର୍ଦ୍ଦେଶମତେ ରାଜ୍ୟ ଶାସନ କରି, ଉତ୍ତମରୂପେ ରାଜ୍ୟ ପାଳନ କରୁଥିଲେ । ନଗରେ ନଗରେ, ଗ୍ରାମେ ଗ୍ରାମେ ଲୋକ-ମାନଙ୍କର ପ୍ରଶଂସା । ରାଜ୍ୟର ଦୁର୍ନୀତିଗ୍ରସ୍ତ, ଅକ୍ଷମ, ଅଳସୁଆ କର୍ମଚାରୀମାନଙ୍କୁ ବାହାର କରି ସେ ରାଜ୍ୟରେ ସକ୍ଷମ ଲୋକଙ୍କୁ ନିଯୁକ୍ତି ଦେଉଥିଲେ ଏବଂ ରାଜସ୍ୱ ମଧ୍ୟ ବଢ଼ାଇଥିଲେ । ପ୍ରଜାମାନେ ମହାଆନନ୍ଦରେ କାଶୀ ରାଜ୍ୟରେ ଜୀବନ ଯାପନ କରୁଥାନ୍ତି ।

କିଛିଦିନପରେ, ବହିଷ୍କାର ହୋଇଥିବା କର୍ମଚାରୀମାନେ ମନ୍ତ୍ରୀଙ୍କ ବିରୁଦ୍ଧରେ ଚକ୍ରାନ୍ତ କରିବାରେ ଲାଗି ପଡ଼ିଲେ । ଚକ୍ରାନ୍ତକାରୀମାନେ ରାଜାଙ୍କ ପାଖ ଲୋକ-ମାନଙ୍କୁ ଧରାଧରି କରି ରାଜାଙ୍କ ପାଖେ ପହଞ୍ଚିଗଲେ । ରା'ଜା ଗୋଜା । ଖୁସାମଦିଆଙ୍କ କଥା ସମସ୍ତଙ୍କୁ ଭଲ ଲାଗେ । ଚକ୍ରାନ୍ତକାରୀ ଦଳ ରାଜାଙ୍କ ପାଖେ ଠିକ୍‌ବେଳ ଦେଖି କହିଲେ ଯେ, କାଶୀ ରାଜ୍ୟରେ ସମସ୍ତେ ମନ୍ତ୍ରୀ 'ଅନାହୁତ'ଙ୍କ ପ୍ରଶଂସା କରନ୍ତି—ରାଜାଙ୍କର ନୁହେଁ । ସେତ ରାଜା । ଦିନ ପରେ ଦିନ ଏହି ଦଳ ପାରିଧି ବେଳେ, ରଙ୍ଗ ମହଲରେ ରାଜାଙ୍କ କର୍ଣ୍ଣକୁ ବିଷାକ୍ତ କରିବାକୁ ଲାଗିପଡ଼ିଲେ । ତାଙ୍କ କଥାଶୁଣି ରାଜାମଧ୍ୟ ଭାବିଲେ ପ୍ରକୃତରେ ମନ୍ତ୍ରୀ "ଅନାହୁତ" ଏଥିପାଇଁ ଦାୟୀ । ସେ ମନ୍ତ୍ରୀ ଥିଲା ପର୍ଯ୍ୟନ୍ତ ମୋତେ କୌଣସି ପ୍ରଜା ସୁଶାସକ କରୁଛି ବୋଲି କହିବେନି । ତେଣୁ ସେ ଦିନେ ମନ୍ତ୍ରୀଙ୍କୁ ଡାକି ମନ୍ତ୍ରୀତ୍ୱରୁ ଅବ୍ୟାହତି ନେବାକୁ ଆଦେଶ ଦେଲେ ।

ରାଜାଙ୍କ ଆଦେଶ ମନ୍ତ୍ରୀ ମୁଣ୍ଡପାତି ଗ୍ରହଣ କରିନେଇ ମନ୍ତ୍ରୀତ୍ୱରୁ ବିଦାୟ ନେଲେ । ଏଣେ ଚକ୍ରାନ୍ତକାରୀ ଦଳ ସେମାନଙ୍କ ଭିତରୁ ଜଣକୁ ମନ୍ତ୍ରୀ ପଦରେ

ଅଭିଷେକ କରିବାକୁ ରାଜାଙ୍କୁ ମତାଇ ମନ୍ତ୍ରୀ କରିଦେଲେ । ରାଜା ତାଙ୍କର ପୂର୍ବପରି ଆମୋଦପ୍ରମୋଦରେ ବ୍ୟସ୍ତ ରହିଲେ ।

କିଛିଦିନ ପରେ ଦେଖାଗଲା, ଏହିଦଳ ରାଜ୍ୟରୁ ରାଜସ୍ୱ ହରିଲୁଟ କରିବାରେ ଲାଗିପଡ଼ିଲେ । ପ୍ରଜାମାନଙ୍କ ଉନ୍ନତି କଳ୍ପେ ଯାହା ରାଜସ୍ୱ ଖର୍ଚ୍ଚ ହେଲା, ସେଥିରୁ ଅଧେ ସେମାନଙ୍କର ଆମୋଦ ପାଇଁ ଗଲା । ନିଜର ପୁଅ, ପୁତୁରାମାନେ ରାଜ୍ୟର ବଡ଼ ବଡ଼ କର୍ମଚାରୀ ହେଲେ, ବ୍ୟବସାୟର ଅଧିକାରୀ ହେଲେ । ପ୍ରଜାମାନଙ୍କ ପରିସ୍ଥିତି ଅତି ଖରାପ ଆଡ଼କୁ ଗଲା । କିନ୍ତୁ ଏମାନେ ରାଜାଙ୍କୁ ପ୍ରଜାମାନେ ମହା ଆନନ୍ଦରେ ଅଛନ୍ତି, ଶାସନ ଠିକ୍ ଚାଲିଛି ଖବର ଦେଇ ସନ୍ତୁଷ୍ଟ କରି ରଖିଥାନ୍ତି । ମାତ୍ର ଏଇ ଚକ୍ରାନ୍ତକାରୀ ଦଳ ଏବଂ ତାଙ୍କଦ୍ୱାରା ମନୋନୀତ ମନ୍ତ୍ରୀଙ୍କ ଅତ୍ୟାଚାର ବିରୁଦ୍ଧରେ ପ୍ରଜା ମେଳି ରାଜ୍ୟରେ ଦେଖାଦେଲା । ସବୁଆଡ଼େ ଅଶାନ୍ତି ଆଉ ଅରାଜକତା ।

କିଛିଦିନ ପରେ ରାଜା ଏମାନଙ୍କ ଚକ୍ରାନ୍ତ ବୁଝି ପାରିଲେ । ମାତ୍ର ସେତେବେଳକୁ ରାଜ୍ୟର ବହୁତ କ୍ଷତିହୋଇ ସାରିଥାଏ । ସେ ପୁଣି ପୂର୍ବତନ ମନ୍ତ୍ରୀ ଅନାହୂତଙ୍କୁ ଡାକି ମନ୍ତ୍ରୀପଦ ଦେଲେ । ନିଜେ ସବୁକଥା ବୁଝିଲେ । ଅନାହୂତ ମନ୍ତ୍ରୀ ହେଲାପରେ ରାଜାଙ୍କୁ କହିଲେ, "ମହାରାଜ ମୁଁ ମନ୍ତ୍ରୀ ହିସାବରେ ଯାହା କରୁଥିଲି ସେ ସବୁ ତ ଥିଲା ରାଜାଙ୍କ ମଙ୍ଗଳ ପାଇଁ । ମୁଁ ତ ଥିଲି ରାଜାଙ୍କ ଅଧୀନସ୍ଥ କର୍ମଚାରୀ । ହାତୀ ବନସ୍ତରେ ବୁଲିଲେ ମଧ୍ୟ ସେ ରାଜାଙ୍କର ।" ରାଜା ତାଙ୍କ ଭୁଲ ବୁଝିପାରିଲେ ଏବଂ କାଶୀ ରାଜ୍ୟରେ ସୁଶାସନ ଦେଖାଦେଲା ।

ଇନ୍ଦ୍ରଙ୍କ କଥାଟି ଶୁଣି ଦୋକାନୀ ଏବଂ ଦୋକାନରେ ଠିଆ ହୋଇଥିବା ଗରାଖମାନେ କହିଲେ, ସେ ଯାହା କହିଲେ ସତକଥା । ଦେଖାଯାଉ ରାଉରକେଲା ପରି ଉପାନ୍ତ ସହରର ନିର୍ବାଚନ ଯୁଦ୍ଧରେ କେଉଁ ପ୍ରକାର ଦଳ ମ୍ୟୁନିସିପାଲିଟି ଶାସନ ଭାର ଗ୍ରହଣ କରି କିପରି ନାଗରିକମାନଙ୍କୁ ଚଳାଉଛନ୍ତି ! ଖାଲି ରାଜାଙ୍କ ପଛ ମନ୍ତ୍ରୀ ଆଉ ତାଙ୍କ ଦଳପରି ନହେଲେ ହେଲା !

ଇନ୍ଦ୍ର, ଏବଂ ଅନ୍ୟମାନଙ୍କ ମଧ୍ୟରେ ଚାଲିଥିବା କଥାବାର୍ତ୍ତା ଦୋକାନ ଭିତରେ ବସି ଜଣେ ବୟସ୍କଲୋକ ଶୁଣୁଥିଲେ । ବୟସ ସତୁରୀ ଉପରେ ହେବ । ଦେହରେ ଗାନ୍ଧି ଖଦଡ଼ର ଜାମା । ଏମାନଙ୍କ କଥା ଶୁଣି ସେ କହିଲେ, "ଭାରତକୁ ସ୍ୱାଧୀନ କରିବାପାଇଁ ବହୁ ମହାନ ବ୍ୟକ୍ତି ସେମାନଙ୍କର ଜୀବନ ଉତ୍ସର୍ଗ କରିଥିଲେ । ସେମାନଙ୍କ ନେତୃତ୍ୱ, ପରାକାଷ୍ଠା, ନୈତିକତା ଏବଂ ନିଃସ୍ୱାର୍ଥପର ଦେଶସେବା ଯୋଗୁଁହିଁ ଆଜି ଆମେ ଏ ସ୍ୱାଧୀନତା ଉପଭୋଗ କରୁଛେ । ପରବର୍ତ୍ତୀ କାଳରେ ଦେଶ

ସ୍ୱାଧୀନ ହେଲାପରେ, ସେଇମାନଙ୍କ ମଧ୍ୟରୁ ବହୁ ମହାନ ନେତା ଏ ବିରାଟ ଗଣତନ୍ତ୍ର ଦେଶକୁ ସେବା ମନୋଭାବ ନେଇ ଶାସନକରି ଆସିଥିଲେ । ସେମାନେ କାଳକ୍ରମେ ଦୂରେଇ ଯିବାପରେ, ତାଙ୍କପରି ରାଜନୈତିକ ନେତାମାନଙ୍କ ମଧ୍ୟରେ ସେ ସେବା-ମନୋବୃତ୍ତି ପରିଲକ୍ଷିତ ହେଉନାହିଁ । ନିଃସ୍ୱାର୍ଥପର ସ୍ଥାନରେ 'ସ୍ୱାର୍ଥପରତା' ପ୍ରବେଶ କରିବାକୁ ଲାଗିଲା । ଜନସେବା ପରିବର୍ତ୍ତେ 'ଆତ୍ମସେବା' ବଡ଼ହେଲା । ଗଣତନ୍ତ୍ରରେ ଏଇ ସେବାମନୋବୃତ୍ତି ପରିବର୍ତ୍ତେ ଏବେ ଯେଉଁ ସ୍ୱାର୍ଥପରତା, ପରଶ୍ରୀକାତରତା, ଅସହିଷ୍ଣୁତା ଏବଂ ହିଂସା ମନୋଭାବ ସ୍ଥାନ ପାଇଛି, ତାହା ଏ ଗରିବ ଦେଶବାସୀଙ୍କ ପକ୍ଷେ ମଙ୍ଗଳକର ନୁହେଁ ।

ଅବଶ୍ୟ ଏବେ ଏକ ନୂତନ ଆଲୋକ ଦେଖା ଯାଉଛି । ମାତ୍ର ଏଇ ନୂତନ ଆଶାର ଆଲୋକକୁ ସମ୍ପୂର୍ଣ୍ଣଭାବେ ଆଲୋକିତ କରିବାକୁ ହେଲେ ସମସ୍ତଙ୍କର ସହଯୋଗ ଦରକାର । ଆମର ନୈତିକତା ଏବଂ ମନୋବଳ ବଢ଼ିବା ଦରକାର ।''

ବୟସ୍କ ବ୍ୟକ୍ତି ଜଣଙ୍କ କହୁଥାନ୍ତି, ''ଏଇ ନୈତିକତା କଥା ମନେ ପଡ଼ିଲେ, ତାଙ୍କର ଓଡ଼ିଶାର ହାସ୍ୟରସ କବି ଯଦୁମଣିଙ୍କ 'ଚଇତନଆ' କଥା ମନେପଡ଼େ । କଥାଟିକୁ ବ୍ୟାଖ୍ୟା କରିବାକୁ ଯାଇ ସେ କହିଲେ, ଯଦୁମଣିଙ୍କ ନିଜ ଗ୍ରାମରେ ଚୈତନ୍ୟ ସାହୁ ନାମକ ଜଣେ ତେଲି ମହାଜନ ପରମାର୍ଥୀ ଦୀକ୍ଷା ଗ୍ରହଣକରି ଦ୍ୱାରକା, ବୃନ୍ଦାବନ, ମଥୁରା ଆଦି ଧାମରୁ ଫେରି ବୈଷ୍ଣବ ଭେକ ଧରି ତାଙ୍କର ଗୁରୁଜନ ମାନ୍ୟବ୍ୟକ୍ତିଙ୍କୁ ଦଣ୍ଡବତ କରୁନଥିଲେ । ବୟସ ପଞ୍ଚଶ ସରିକି ହେବ । ଗାଁରେ ତାଙ୍କୁ ସମସ୍ତେ ଚଇତନଆ ବୋଲି ଡାକୁଥିଲେ । ତାଙ୍କୁ ଦେଖି ଯଦୁମଣି କବିତାଟିଏ କହିଲେ—

''ବଣ ନାଶ କରେ ଚଇତନିଆଁ
ବର୍ଣ୍ଣନାଶକରେ ଚଉତନିଆଁ,
ବର୍ଣ୍ଣନା ଶଙ୍କରେ ଚଇତ ନିଆଁ'' ।

ଏହାଶୁଣି ଗାଁରେ ଚହଳ ପଡ଼ିଗଲା । ଏହାର ଅର୍ଥ ହେଲା ଯେ ଚଇତ ମାସର ନିଆଁ ବଣକୁ ନଷ୍ଟ କରେ । ଚଇତ ନିଆଁ ବା ଚୈତନ୍ୟ ଦୀକ୍ଷା, ବର୍ଣ୍ଣ କି ଜାତି ଗୋତ୍ର ନାଶ କରିଥାଏ । ଚଇତନ ସାହୁ ନାମକ ଚଇତନିଆଁ, ଶଙ୍କର ଅର୍ଥାତ୍ ଶିବଙ୍କ ସମ୍ବନ୍ଧରେ ଯେଉଁ ବର୍ଣ୍ଣନା ରହିଛି, ସେ ନିଜର ଗୁରୁଜନ ଶ୍ୱଶୁରଙ୍କୁ ମଧ୍ୟ ମାନ୍ୟ କରିନଥିଲେ; ଚଇତନିଆ ପରମାର୍ଥ ଦୀକ୍ଷା ଗ୍ରହଣ କରି ସେଇଆ କଲା ।

ସେ କହିଲେ, ଏହା କହିବାର ଉଦ୍ଦେଶ୍ୟ ହେଲା ମୋର ଜଣେ ଗ୍ରୁପ ଥିଲେ । ପିଲାଦିନେ ସେ ଖୁବ୍ ଭଲପିଲା ଥିଲେ । ଗୁରୁଜନମାନଙ୍କୁ ଭକ୍ତି କରିବା, ସତ କହିବା, ଲୋକମାନଙ୍କ ସେବା ତାଙ୍କର ଥିଲା ଆଦର୍ଶ ।

ଏବେ କିଛି ବର୍ଷ ହେଲା ପରିସ୍ଥିତିର ସୁବିଧା ନେଇ ସେ ରାଜନୀତିରେ ପ୍ରବେଶ କଲେ । ଆମେମାନେ ଗର୍ବ ଅନୁଭବ କଲୁ ଯେ, ଆମର ଜଣେ ପୁରାତନ ଛାତ୍ର, ଦେଶସେବା କରିବା ପାଇଁ ରାଜନୀତିରେ ପ୍ରବେଶ କଲେ । କିଛିଦିନ ପରେ ସେ ମଧ୍ୟ ବଡ଼ ପଦବୀରେ ରହିଲେ । ମୋପରି ଲୋକମାନେ ତାଙ୍କ ଅଗୋଚରରେ ତାଙ୍କୁ ଆଶୀର୍ବାଦ କଲେ ।

କିଛିଦିନ ପରେ କୌଣସି ସଭାକୁ ତାଙ୍କୁ ଡକାଯାଇଥାଏ । ମୁଁ ମଧ୍ୟ ସେ ସଭାକୁ ଜଣେ ଦର୍ଶକ ଭାବେ ଯାଇଥିଲି । ପଛରେ ଠିଆହୋଇ ମୋ ଛାତ୍ରର ଭାଷଣ ଶୁଣି ଗର୍ବରେ ମୁଁ ଫାଟି ପଡୁଥିଲି । ମନେ ମନେ ମନେ ଭାବୁଥିଲି, ସଭାପରେ କିମିତି ତାଙ୍କୁ ଟିକିଏ ଦେଖିବି ।

ସଭାପରେ ପେଲାପେଲି କରି ସେ ବିଶ୍ରାମ ନେଉଥିବା ବଙ୍ଗଳାକୁ ଗଲି । ବହୁ କଷ୍ଟରେ ସାକ୍ଷାତ ମିଳିଲା । ମାତ୍ର ମୁଁ ଯାହା ବ୍ୟବହାର ପାଇଲି, ମୋର ସମସ୍ତ ଗର୍ବ, ଏତେଦିନର ଶିକ୍ଷାଦାନ, ଅପାତ୍ରରେ ଢାଳି ଦେଇଛି ବୋଲି ମନେ ହେଲା । ଛାତ୍ର ଜଣକ ଚେୟାରରୁ ତ ଉଠିଲେନି, ସାମାନ୍ୟ "ନମସ୍କାରଟିଏ" ମଧ୍ୟ କଲେନି । ଭଲ ମନ୍ଦ ଦୂରେଥାଉ 'କଅଣ ଦରକାର ପରେ ଆସିବ କହି ବିଦା କରିଦେଲେ ।"

ଆମର ରାଜନୀତି କଅଣ ଏଇ ନୈତିକତା ଶିକ୍ଷା ଦେଉଛି ? ଆଜି ଯେଉଁ ଭୋଟରମାନଙ୍କ ପାଖେ ଅମୁକ କରିଦେବି, ସମୁକ କରିଦେବି କହି, ନିର୍ବାଚନ ପରେ ତାଙ୍କୁ ପାଖେ ନ ପୂରାଇବା କଅଣ ଗଣତାନ୍ତ୍ରିକ ନୀତିର ଧର୍ମ ନା ଚଇତନିଆ ପରି ଯେ ରାଜନୀତିରେ ପଶିଲା, ସେ ସବୁ ନୈତିକତା, ମାନବିକତା ଭୁଲିଯିବାକୁ ଦୀକ୍ଷା କରିନେଲା ? ଯେଉଁ ନେତାମାନଙ୍କର ନୈତିକତା ନାହିଁ ସେମାନେ ଅନ୍ୟମାନଙ୍କୁ ଶାସନ କରିବେ କିପରି ?"

ତାଙ୍କ କଥାଟି ସମସ୍ତଙ୍କ ମନକୁ ପାଇଲା ।

## ( ୩୨ )

ଅସୁସ୍ଥତା ଯୋଗୁ ଇନ୍ଦ୍ର କିଛିଦିନ ହେଲା ତାଙ୍କର ଗସ୍ତ କାର୍ଯ୍ୟକ୍ରମ ବାତିଲ କରିବାକୁ ବାଧ୍ୟ ହୋଇଥିଲେ । ରାଉରକେଲା ପାଣି ପବନ ତାଙ୍କ ଦେହରେ ବୋଧେ ଗଲାନି । ମନେ ମନେ ସ୍ୱର୍ଗ ବୈଦ୍ୟ ଅଶ୍ୱିନୀକୁମାରଙ୍କୁ ସ୍ମରନ୍ତେ ବୈଦ୍ୟରାଜ ଅଶ୍ୱିନୀ-କୁମାର ସ୍ୱର୍ଗ ପୁରରୁ, ଇନ୍ଦ୍ରଙ୍କୁ ମର୍ତ୍ତ୍ୟରେ ଥିବା ବୈଦ୍ୟ ବା ଡାକ୍ତରଙ୍କ ପାଖେ ଚିକିତ୍ସା ହେବାପାଇଁ ଅନୁମତି ଦେଲେ । ମର୍ତ୍ତ୍ୟରେ ରହି ଯେତେବେଳେ ମର୍ତ୍ତ୍ୟର ଖାଦ୍ୟ,

ପାନୀୟ ଗ୍ରହଣ କରୁଛନ୍ତି, ତତ୍‌ଜନିତ ରୋଗ ପାଇଁ, ଏଠାକାର ଡାକ୍ତରହିଁ ଚିକିତ୍ସା କରିପାରିବେ ।

ସ୍ୱର୍ଗ ବୈଦ୍ୟଙ୍କ ଠାରୁ କ୍ଲିୟରାନସ୍ ପାଇଲାପରେ, ଇନ୍ଦ୍ର ଡାକ୍ତରଖାନା ଖୋଜିବା ପାଇଁ ବାହାରିଲେ ।

ରାଉରକେଲା ସହରର ସବୁଠାରୁ ଭଲ ଡାକ୍ତରଖାନା 'ରାଉରକେଲା ଇସ୍ପାତ ହସ୍‌ପିଟାଲରେ ଚିକିତ୍ସା ହେବାପାଇଁ ସମସ୍ତେ କହନ୍ତେ, ଇନ୍ଦ୍ର ସେଇ ହସ୍‌ପିଟାଲକୁ ଚିକିତ୍ସା ପାଇଁ ଗଲେ ।

ପ୍ରଥମେ ଆଉଟ୍‌ଡ଼ୋରରେ ଥିବା ଡାକ୍ତରବାବୁ ତାଙ୍କୁ ଚିକିତ୍ସା କରିବା ପାଇଁ ମନା କରୁଥିଲେ, କାରଣ ସେ ଇସ୍ପାତ କାରଖାନାର ଚାକିରିଆ ନୁହନ୍ତି, କି ସେମାନଙ୍କ ନିକଟତମ ସମ୍ପର୍କୀୟ ନୁହନ୍ତି ।

ଏକଥା ଶୁଣି ଇନ୍ଦ୍ର ବଡ଼ ଅଡୁଆରେ ପଡ଼ିଥିଲେ । କିନ୍ତୁ ତାଙ୍କର ଗୁରୁତର ଅବସ୍ଥା ଦେଖି ଡାକ୍ତର ବାବୁ ଦୟାକରି ତାଙ୍କୁ ପରୀକ୍ଷା କରିବାକୁ ରାଜି ହେଲେ ।

ଡାକ୍ତରଙ୍କ ପରୀକ୍ଷା ପରେ ଜଣାଗଲା ଯେ, ଇନ୍ଦ୍ରଙ୍କୁ 'ଜଣ୍ଡିସ' ଆକ୍ରମଣ ଆରମ୍ଭ କରିଛି । ଜଣ୍ଡିସ ନାଁଟା ଶୁଣି ଇନ୍ଦ୍ର ଟିକିଏ ଘାବରେଇ ଗଲେ । ସ୍ୱର୍ଗରେତ ଏପରି ରୋଗର ନାଁ ସେ ଶୁଣିନଥିଲେ । ଡ଼ାକ୍ତରଙ୍କ ଠାରୁ ପ୍ରେସକ୍ରିପସନ ଧରି ବାହାରିକୁ ଆସି ସେ ଅପେକ୍ଷା କରିଥିବା ରୋଗୀଙ୍କ ମଧ୍ୟରୁ ଜଣକୁ ଏ ରୋଗର ଉପସର୍ଗ ବିଷୟରେ ପଚାରିଥିଲେ ।

ତାଙ୍କ ରୋଗ କଥାଶୁଣି ରୋଗୀ ଜଣଙ୍କ କହିଲେ—ରାଉରକେଲା ସହରରେ 'ଜଣ୍ଡିସ' ରୋଗ ଘରେ ଘରେ ପରିଚିତ । ଏପରିକି ଏଇ ହସ୍‌ପିଟାଲର ପ୍ରଖ୍ୟାତ ଆଖି ଡ଼ାକ୍ତର ଏଇ ରୋଗରେ ପଡ଼ି ଏପରି ଅବସ୍ଥାର ସମ୍ମୁଖୀନ ହେଲେ ଯେ, ତାଙ୍କ ପାଇଁ କଟକ, କଲିକତାରୁ ଡାକ୍ତରମାନେ ଚିକିତ୍ସା ପାଇଁ ଉଡାଜାହାଜରେ ଉଡ଼ିକରି ଆସିଲେ । ବହୁ କଷ୍ଟରେ ତାଙ୍କ ଜୀବନ ରକ୍ଷା କରିହେଲା । କିନ୍ତୁ ସେଇ ବର୍ଷ ପ୍ରାୟ ତିନି ଶହରୁ ବେଶି ରୋଗୀ ଏହି ରୋଗରେ ଆକ୍ରାନ୍ତ ହେଲେ । ବହୁ ଲୋକ ମୃତ୍ୟୁ ବରଣ କଲେ ।

ତାଙ୍କ କଥା ଶୁଣି ଇନ୍ଦ୍ର ପଚାରିଲେ, ଯଦି ମହାମାରୀ ରୂପେ ଏହି ରୋଗ ଦେଖାଦେଲା, ତା'ର କାରଣ ବୁଝି ତା'ର ପ୍ରତିକାର କରିବା ଉଚିତଥିଲା । ବର୍ଷ ବର୍ଷ ଧରି ଲୋକମାନେ ରୋଗରେ ପ୍ରପୀଡ଼ିତ ହେଉଛନ୍ତି, ଅଥଚ ଏଥିପାଇଁ ବ୍ୟବସ୍ଥା କରାଯାଉ ନାହିଁ ? ଏହା ଏକ ଗୁରୁତର ପ୍ରଶାସନିକ ଅବ୍ୟବସ୍ଥା । ଇସ୍‌ପାତ ନଗରୀର

ପ୍ରଶାସନ ସଂସ୍ଥା, ସ୍ୱାସ୍ଥ୍ୟବିଭାଗ, ସରକାରୀ ଶାସନ ଏବଂ ତାଙ୍କର ସ୍ୱାସ୍ଥ୍ୟ ସଂସ୍ଥା ଏ ସବୁ ବିଷୟରେ ଦେଖିଶୁଣି, ତାର ସୁବ୍ୟବସ୍ଥା କରୁନାହାନ୍ତି କାହିଁକି ?

ତାଙ୍କ କଥା ଶୁଣି ରୋଗୀ ଜଣକ କହିଲେ, ସହର ପ୍ରଶାସନ ସଂସ୍ଥା ଏ ବିଷୟ ଭଲଭାବେ ଜାଣେ । କୋଇଲ୍ ନଦୀରୁ ସହରର ବହୁ ଅଞ୍ଚଳ ପାଇଁ ଜଳ ଯୋଗାଣ ବ୍ୟବସ୍ଥା କରାଯାଇଛି । ଖରାଦିନେ ଏହି ନଦୀରୁ ପାଣି କମିଯାଏ । ପାଣି କମିଗଲପରେ, ଏହି ନଦୀ ମଧ୍ୟକୁ ସହରର ମଇଳା ଛାଡ଼ୁଥିବ ଏବଂ ଏହି 'ମଇଳା' ଟାଙ୍କି ଜଳଯୋଗାଣ କେନ୍ଦ୍ର ପାଖାପାଖି ହୋଇଥିବା ହେତୁ, ବହୁ ସମୟରେ ନଦୀର ଦୂଷିତ ଜଳ ସଙ୍ଗେ ବିଭିନ୍ନ ରୋଗର ଭାଇରସ୍ ସହରକୁ ଯୋଗାଉଥିବା ଜଳ ସଙ୍ଗେ ମିଶିଥାଏ । ଏହି ଦୂଷିତ ଜଳ ବ୍ୟବହାର କରୁଥିବା ଯୋଗୁ କୋଇଲ୍‌ନଗର ଏବଂ ଟାଉନ୍‌ସିପ୍ ଅଞ୍ଚଳରେ ଶହ ଶହ ଲୋକ "ଜଣ୍ଡିସ', ପରି ମାରାତ୍ମକ ରୋଗରେ ଆକ୍ରାନ୍ତ ହେଉଛନ୍ତି । ତା'ଛଡ଼ା ବର୍ତ୍ତମାନ ଇସ୍ପାତ କାରଖାନାର ଯେଉଁ ଦୂଷିତ ଜଳ ସଙ୍ଗେ ବିଭିନ୍ନ ପ୍ରକାର ରାସାୟନିକ ଦ୍ରବ୍ୟ ପ୍ରତ୍ୟେକ ଦିନ ବାହାରୁଛି, ତାକୁ ମଧ୍ୟ ଏହି କୋଇଲ୍ ନଦୀକୁ ଛାଡ଼ି ଦିଆଯାଉଛି । ଯେଉଁ ପ୍ରକାର ଫିଲ୍‌ଟର ବ୍ୟବସ୍ଥା କରାଯାଇଛି, ତାହା ଏହି ଦୂଷିତ ପଦାର୍ଥକୁ ଫିଲ୍‌ଟର କରି ନଦୀ ମଧ୍ୟକୁ ଛାଡ଼ିବାରେ ପୂରାପୂରି ଅକ୍ଷମ ହୋଇଥିବାଯୋଗୁ, କୋଇଲ୍ ନଦୀରେ ରାଉରକେଲା ସହରଠାରୁ ପ୍ରାୟ ପଚିଶ କଲୋମିଟର ତଳ ପର୍ଯ୍ୟନ୍ତ କୌଣସି ଜଳଜୀବ ପ୍ରାଣଧାରଣ କରି ବଂଶ ବଢ଼ାଇ ପାରୁନାହାନ୍ତି । ଆଗେ ଏହି ନଦୀରେ ପ୍ରଚୁର ପରିମାଣରେ ମାଛ, ଚିଙ୍ଗୁଡ଼ି ମିଳୁଥିଲା । ଏବେ ଏହା ସ୍ୱପ୍ନ ହେଲାଣି ।

ଗୋଟେପଟେ 'ସରକାର ପାରିପାର୍ଶ୍ୱିକ ସଂସ୍ଥା ଗଠନ କରି ଜଳ ସ୍ଥଳରେ ଦୂଷିତକୁ ରକ୍ଷା କରିବାକୁ କହୁଥିବାବେଳେ, ଆମମାନଙ୍କ ସମସ୍ତଙ୍କ ଆଖି ଆଗରେ ଏହା ଘଟୁଛି ଏବଂ ଏଥିଲାଗି ଏ ନଦୀ ତଟବର୍ତ୍ତୀ ଶହ ଶହ "ଆଦିବାସୀ" ଭାଇ ଭଉଣୀମାନେ ଦୂଷିତ ଜଳ ପିଇ ରୋଗାକ୍ରାନ୍ତ ହେଉଛନ୍ତି । ଆପଣଙ୍କ ରୋଗ ଏହି ଦୂଷିତ ପାଣି ପିଇଥିବା ଯୋଗୁଁ ହୋଇଛି ।

କଥାରେ ଭାଗନେଇ, ଆଉଜଣେ ଭଦ୍ରଲୋକ କହିଲେ, ଖାଲି କାହିଁକି ରାଉରକେଲା ସହର, ଏହାର ଆଖପାଖ ଅଞ୍ଚଳର ଜଳବାୟୁ ମଧ୍ୟ ଦୂଷିତ ହେବାକୁ ଗଲାଣି । ରାଉରକେଲା ନିକଟବର୍ତ୍ତୀ ବେଦ୍ୟାସଠାରେ ଏହି କୋଇଲ୍ ନଦୀ ବାହାରି ସବୁଜ ବଣ ଜଙ୍ଗଲ ଘେରା ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ଦେଇ ଏହି ନଦୀ ପ୍ରବାହ-ମାନ । ବର୍ତ୍ତମାନ ଏହି ନଦୀରେ ପଚିଶ କଲୋମିଟର ପର୍ଯ୍ୟନ୍ତ ଆକ୍ୱାଟିକ୍ ପ୍ରାଣୀମାନଙ୍କ ଜୀବନ ସଙ୍କଟାପନ୍ନ । କେତେକଙ୍କର ବି ବଂଶ ଲୋପ ହୋଇ ଗଲେଣି । ଇଚ୍ଛାକରି

ପ୍ରଶାସନିକ ବ୍ୟବସ୍ଥା ଗ୍ରହଣ କରିଥିଲେ, ହୁଏତ କୋଇଲ ନଦୀ ଜଳର ଅବସ୍ଥା ଏବଂ ଜଳଜୀବମାନଙ୍କ ପ୍ରାଣ ଏତେଦୂର ନଷ୍ଟ ହୋଇନଥାନ୍ତା ।"

ସେ ପୁଣି କହିଲେ, "ରାଉରକେଲା ଇସ୍ପାତ କାରଖାନାରୁ ପ୍ରତ୍ୟେକଦିନ ସଂଗୃଣ ଟନ୍‌ରୁ ଅଧିକ ଦୂଷିତ ବାଷ୍ପ ଆକାଶକୁ ଛାଡ଼ି ଦିଆଯାଉଛି । ଏହି ବାଷ୍ପରେ ବିଭିନ୍ନ ପ୍ରକାର ମାରାତ୍ମକ ଗ୍ୟାସ ମଧ୍ୟ ଅଛି । ଏ ସମସ୍ତ ବାଷ୍ପ ଆକାଶ ମାର୍ଗକୁ ଉଠିଲାପରେ, କିଛି ଉପରକୁ ଯାଇ ଆକାଶରେ ମିଶିଯାଏ; ଆଉକିଛି ଆକାଶରୁ ତଳକୁ ଖସେ, ଯାହାକୁ କି ଏ ସହରର ସମସ୍ତ ବାସିନ୍ଦା ନିଶ୍ୱାସ ପ୍ରଶ୍ୱାସରେ ଗ୍ରହଣ କରିଥାନ୍ତି । ଏହି ଦୂଷିତ ବାୟୁ ଗ୍ରହଣ କରିବା ଦ୍ୱାରା, ଯେ କୌଣସି ସୁସ୍ଥ ଲୋକ ବିଭିନ୍ନ ରୋଗରେ ଆକ୍ରାନ୍ତ ହେଉଛି । ରାଉରକେଲା ଏବଂ ଏହାର ଆଖପାଖ ଅଞ୍ଚଳରେ ଯକ୍ଷ୍ମା ଏବଂ ଶ୍ୱାସ ରୋଗୀଙ୍କ ହିସାବ ନେଲେ ଜଣାପଡ଼ିବ ଯେ ଏହି ଆଟୋମୋସଫିୟରିକ୍ ପଲ୍ୟୁସନ ଯୋଗୁ କେତେ ସଂଖ୍ୟକ ଲୋକ ଏହି ମାରାତ୍ମକ ରୋଗରେ ପୀଡ଼ିତ ହେଉଛନ୍ତି ।

କଥା ହେଲା, କେହି କହୁନାହାନ୍ତି ଯେ, ରାଉରକେଲା ଇସ୍ପାତ କାରଖାନାକୁ ଉଠାଇ ଦିଅ । ମାତ୍ର ଅତି କମ୍ ଖର୍ଚ୍ଚରେ ରାଉରକେଲା ଇସ୍ପାତ କାରଖାନା, ଏୟାର ପଲ୍ୟୁସନ ନ ହେବାପାଇଁ ବ୍ୟବସ୍ଥା ଗ୍ରହଣ କରିପାରନ୍ତେ । ବାହାରୁ ଯଦି କୌଣସି ଲୋକ ଏବେ ଏ ବିଷୟରେ କାରଖାନାର କୌଣସି ପଦସ୍ଥ କର୍ମଚାରୀଙ୍କୁ ପଚାରେ, ସେମାନେ କହିବେ ଯେ, 'ଏୟାରପଲ୍ୟୁସନ ନ ହେବାପାଇଁ ସେମାନେ ବିଭିନ୍ନ ବ୍ୟବସ୍ଥା ଗ୍ରହଣ କରିଛନ୍ତି । ଯଦି ସେମାନେ ଏହା କୁହନ୍ତି ତାହେଲେ ସତ୍ୟର ଅପଳାପ କରିବାଛଡ଼ା କିଛି ନୁହଁ ।"

ତାଙ୍କ କଥାଶୁଣି ଇନ୍ଦ୍ର କହିଲେ—"ଏ ବର୍ଷ ଏହି କାରଖାନା ତ ପ୍ରାୟ ଶହେ କୋଟି ଟଙ୍କା ଲାଭ କରିବାର ଆଶା କରୁଛି । ଅନ୍ତତଃ କିଛି ନହେଲେ, "ଏୟାର ପଲ୍ୟୁସନ" ନହେବା ପାଇଁ କାରଖାନା କର୍ତ୍ତୃପକ୍ଷ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରି, ସହରବାସୀ ତଥା ସେମାନଙ୍କ କର୍ମଚାରୀଙ୍କୁ ଆଗତ ଦିନର ବିପଦରୁ ରକ୍ଷା କରନ୍ତୁ । ଗଲା ତିରିଶି ଚାଳିଶି ବର୍ଷ ଧରି ଲୋକେ ଚୁପ୍ ରହିଥିଲେ । ଏବେ ଯେତେବେଳେ ରୋଗର କାରଣ ବୁଝି ଗଲେଣି, ଆଉ କେତେଦିନ ସେମାନଙ୍କ ମୁହଁ ବନ୍ଦ ରଖାଯାଇ ପାରିବ ? ରାଉରକେଲା କାରଖାନା ତରଫରୁ ସ୍ୱତନ୍ତ୍ର ଟି: ଭି: ମାଧ୍ୟମରେ କାରଖାନାର ବିଭିନ୍ନ କାର୍ଯ୍ୟକ୍ରମ ପରିବେଷଣ କରାଯାଉଛି । କାରଖାନା କର୍ତ୍ତୃପକ୍ଷ ସହରରେ କେତେ ଲୋକ କି କି ପ୍ରକାର ରୋଗରେ ପୀଡ଼ିତ ହେଉଛନ୍ତି, ସ୍ୱାସ୍ଥ୍ୟ ବିଷୟରେ ସଜାଗ ରହିବା ପାଇଁ ସହର ବାସିନ୍ଦାମାନଙ୍କୁ ତାଙ୍କ ଟି: ଭି: ମାଧ୍ୟମରେ ଜଣାନ୍ତୁ ।"

ଭଦ୍ରଲୋକ ଜଣକ କହିଲେ, "ଏତ ରାଉରକେଲା ସହର କଥା । ଏଇ ପାଖରେ ରାଜଗାଙ୍ଗପୁର ସିମେଣ୍ଟ କାରଖାନା । ଏହି ସହରରେ ମଧ୍ୟ ତିରିଶ ହଜାର ଉପରେ ଲୋକ ବସବାସ କରୁଛନ୍ତି । ସେମାନଙ୍କ ମଧ୍ୟରୁ ବହୁତ ଆଦିବାସୀ ଭାଇ-ଭଉଣୀ । ଏହି କ୍ଷୁଦ୍ର ସହରରେ ମଧ୍ୟ ରହିବା କଷ୍ଟକର ହେଲାଣି । ବର୍ଷର ଯେ କୌଣସି ସମୟରେ ଜଣେ ଲୋକ ଏ କ୍ଷୁଦ୍ର ସହରକୁ ଗଲେ ଦେଖିବ, ପ୍ରତ୍ୟେକ ଘର, ଗଛ, ପତ୍ର, ସିମେଣ୍ଟ ଗୁଣ୍ଡରେ ପୂର୍ଣ୍ଣ । ବଣ ଝାଡ଼ା ଫେରି ଗଛପତ୍ରକୁ ଧଳା କରି ଦେଲପରି, ଏଠାର ସହରାଞ୍ଚଳ ସିମେଣ୍ଟ କାରଖାନାର ସିମେଣ୍ଟ ଗୁଣ୍ଡ ଯୋଗୁ ଧଳା । ହଜାର ହଜାର ଲୋକ ଏ ଅଞ୍ଚଳରେ ଯକ୍ଷ୍ମା ଏବଂ ଅନ୍ୟାନ୍ୟ ରୋଗଗ୍ରସ୍ତ । କାରଖାନାର ମାଲିକମାନେ ଯେଉଁଠି କୋଟି କୋଟି ଟଙ୍କା ଲାଭ କରୁଛନ୍ତି, ସେମାନେ ସହରର ପରିବେଶ ରକ୍ଷାକରି, ବାସିନ୍ଦାମାନଙ୍କୁ ସୁସ୍ଥ ଜୀବନ ଯାପନ କରିବାକୁ ସୁବିଧା ଦେବା କଣ ଉଚିତ ନୁହେଁ ?

ରାଜଗାଙ୍ଗପୁର ସହରକୁ ଛାଡ଼ିଦେଲେ, ବ୍ରଜରାଜନଗର, ବରଗଡ଼ ପ୍ରଭୃତି ସହରର ଅବସ୍ଥା ମଧ୍ୟ ସେଇ ପ୍ରକାର । ଯଦି ଏଇ କାରଖାନାର ମାଲିକମାନେ ସୁସ୍ଥ ପରିବେଶ ସୃଷ୍ଟି ନକରି ବାସିନ୍ଦାମାନଙ୍କୁ ସୁସ୍ଥରେ ରହିବାକୁ ନ ଦିଅନ୍ତି, ତାହେଲେ ଆଉ କିଛିଦିନ ପରେ ଏମାନେ ଏହା ବିରୁଦ୍ଧରେ ପ୍ରତିବାଦ କରି ଅସୁବିଧା ସୃଷ୍ଟି କରିବେ । ମାଲିକମାନେ ଆଉ କେତେଦିନ ରାଜନୈତିକ ବଡ଼ପଣ୍ଡାମାନଙ୍କୁ ପକେଟରେ ପକାଇ ଜନମତକୁ ଚାପି ଦେବେ ?"

ଇସ୍ପାତ ଜେନେରାଲ ହସ୍ପିଟାଲକୁ ଯିବା ଆସିବା ଭିତରେ ଇନ୍ଦ୍ର ଜାଣିବାକୁ ପାଇଲେ ଯେ, ଯଦିଓ ଏହି ହସ୍ପିଟାଲ କେବଳ ଇସ୍ପାତ୍ କାରଖାନାର କର୍ମଚାରୀ ଏବଂ ସେମାନଙ୍କ ପରିବାର ବର୍ଗପାଇଁ ଉଦ୍ଦିଷ୍ଟ, ଏଠାରେ ମଧ୍ୟ ଓଡ଼ିଶା ସରକାରଙ୍କ କର୍ମଚାରୀଙ୍କ ଠାରୁ ଆରମ୍ଭକରି ଅନ୍ୟ କାରଖାନାରେ କାମ କରୁଥିବା ମଜଦୁରମାନଙ୍କର ଚିକିତ୍ସା ପାଇବାପାଇଁ ଭିଡ଼ହୁଏ ।

ଓଡ଼ିଶା ସରକାରଙ୍କ କର୍ମଚାରୀମାନଙ୍କ ପାଇଁ ଉଦିତ୍ ନଗରରେ ରାଉରକେଲା ଗଭର୍ଣ୍ଣମେଣ୍ଟ ହସପିଟାଲ ନାମରେ ଆଉ ଗୋଟିଏ ସରକାରୀ ଡାକ୍ତରଖାନା ଅଛି । ମାତ୍ର ଆର: ଜି: ଏଚ୍: ଆଉ ଆଇ: ଜି: ଏଚ: ଡ଼ାକ୍ତରଖାନା ଭିତରେ ସ୍ୱର୍ଗ ମର୍ତ୍ତ୍ୟ ତଫାତ୍ । ଏହି ସରକାରୀ ଡ଼ାକ୍ତରଖାନା ବହୁ ଦିନର ହୋଇଥିଲେ ମଧ୍ୟ, ଡ଼ାକ୍ତର-ଖାନା ଚାରିପଟେ ବାଉଣ୍ଡେରୀ କାନ୍ଥ ନାହିଁ । ବୁଲା ଷଣ୍ଢ, ଗାଈ, କୁକୁର, ଛେଳି ମେଣ୍ଢା ପର୍ଯ୍ୟନ୍ତ ଖରା ଆଉ ବର୍ଷା ଦାଉରୁ ରକ୍ଷା ପାଇବାକୁ ଏଇଠାରେ ଆଶ୍ରୟ ନେଇଥାନ୍ତି । ତା'ଛଡ଼ା ଏ ଡାକ୍ତରଖାନାରେ ରୋଗୀ ମୁମୂର୍ଷୁ ଅବସ୍ଥାରେ ପଡ଼ି

ରକ୍ତ ବୋତଲଟେ ଖୋଜିଲେ ମଧ୍ୟ ମିଳିବନି । ରକ୍ତ ଭଣ୍ଡାର ଅଛି ମାତ୍ର ଭଣ୍ଡାର ଖାଲି । ଡ଼ାକ୍ତରଖାନା ଅଛି, ଔଷଧ ନାହିଁ । ଡ଼ାକ୍ତର ଅଛନ୍ତି ଯନ୍ତ୍ରପାତି ନାହିଁ । ଯଦି ରାଉରକେଲା ପରି ଶିଳ୍ପ ନଗରୀରେ ସରକାରୀ ଡ଼ାକ୍ତରଖାନାର ଅବସ୍ଥା ଏହିପରି ହୁଏ, ତାହେଲେ ସରକାରୀ କର୍ମଚାରୀ ହୁଅନ୍ତୁ ବା ବେସରକାରୀ ବାସିନ୍ଦା ହୁଅନ୍ତୁ, ରୋଗୀକୁ ମୃତ୍ୟୁ ମୁଖରୁ ବଞ୍ଚାଇବାପାଇଁ, ତଥା ଶୀଘ୍ର ଆରୋଗ୍ୟ ପାଇଁ ଇସ୍ପାତ ହସ୍ପିଟାଲରେ ଭିଡ଼ କରିବେନିତ କୁଆଡେ ଯିବେ ?

ଇନ୍ଦ୍ର ତାଙ୍କ ରହଣୀକାଳ ଭିତରେ ଜାଣିପାରିଲେ ଯେ, ଆଗେ ସରକାରୀ କର୍ମଚାରୀମାନେ ଆଇ: ଜି: ଏଚ୍‌ରେ ଚିକିତ୍ସାପାଇଁ ଗଲେ ସେମାନଙ୍କୁ ସେଠାରେ ଚିକିତ୍ସା କରାଯାଉଥିଲା ଏବଂ ପରେ ଚିକିତ୍ସା ବାବଦ ଖର୍ଚ୍ଚକୁ ସେମାନେ ସେଇ ଡ଼ିପାର୍ଟମେଣ୍ଟ ଜରିଆରେ ସରକାରଙ୍କ ଠାରୁ ପାଇଲେ । ଯାହା ହେଲେବି ଏବି ତ ସରକାରଙ୍କ ସେବି ତ ସରକାରଙ୍କ । ଦୂରତ୍ୱ ଯାହା 'ଆଇ' ଆଉ 'ଆର' ଭିତରେ ।

କିନ୍ତୁ ଏ ବ୍ୟବସ୍ଥା ଏବେ ଆଇ: ଜି: ଏଚ୍ ବନ୍ଦ କରି ଦେଇଛି । ଏବେ ଯେଉଁ ସରକାରୀ କର୍ମଚାରୀ କିମ୍ବା ତାଙ୍କ ପରିବାର ଏଠାରେ ଚିକିତ୍ସା ହେବାପାଇଁ ଯାଉଛନ୍ତି, ସେମାନେ ଆଗ ଟଙ୍କା ଜମାଦେଲେ, ତାଙ୍କୁ ଚିକିତ୍ସା କରାଯାଉଛି ପୁଣି ରୋଗୀ ଭଲ ହୋଇଗଲାପରେ ତାର ଚିକିତ୍ସା ବାବଦକୁ ଯେତେ ଖର୍ଚ୍ଚ ହେଲା ତାକୁ ଜମା ନଦେଲେ ରୋଗୀକୁ ଡ଼ାକ୍ତରଖାନାରୁ ଛଡ଼ା ଯାଉନାହିଁ । ବଡ଼ବଡ ପଇସା-ବାଲା ସରକାରୀ କର୍ମଚାରୀଙ୍କୁ ଏହାଦ୍ୱାରା ଅସୁବିଧା ନ ହୋଇ ପାରେ, ମାତ୍ର ଗରିବ ସରକାରୀ ଚାକିରିଆମାନେ ଅତି ଅସୁବିଧାର ସମ୍ମୁଖୀନ ହେଉଛନ୍ତି । ରୋଗୀକୁ ଡ଼ାକ୍ତରଖାନାରୁ ଆଣିଲାବେଳକୁ, କଂସା, ବାସନ, ଗହଣାଗାଣ୍ଠି ବନ୍ଧକ କରିବାକୁ ପଡୁଛି । ଏଣେ ଡ଼ାକ୍ତରଖାନାରୁ ବିଲ୍ ଆଣି, ତାକୁ ଅଫିସରେ ଦେଇ ପଇସା ପାଇଲାବେଳକୁ ବର୍ଷେ ପାଖାପାଖି । ଅବସ୍ଥା ସ୍ଥଳରେ ମଧ୍ୟ ବର୍ଷ ବର୍ଷ ଧରି ବିଲ୍ ଡ୍ରକରି ହୁଏନି, ଯଦି ବଜେଟ୍‌ରେ ମେଡ଼ିସିନ ହେଡ଼ରେ ଯଥେଷ୍ଟ ଟଙ୍କା ନଥାଏ ।

ଆଇ: ଜି: ଏଚ୍: ଅଥରିଟିଙ୍କୁ ଏ ବିଷୟରେ ପଚାରିବାରେ ଜଣାଗଲା ଯେ, ସରକାରୀ କର୍ମଚାରୀମାନେ ଚିକିତ୍ସା ହୋଇ ଗଲାପରେ, ବର୍ଷ ବର୍ଷ ଧରି ସେମାନଙ୍କ ଚିକିତ୍ସା ବାବଦକୁ ଖର୍ଚ୍ଚ ହୋଇଥିବା ଟଙ୍କା ମିଳିଲା ନାହିଁ । ଡ଼ିପାର୍ଟମେଣ୍ଟକୁ ଲେଖି ଲେଖି ମଧ୍ୟ କେହି ଶୁଣିଲେ ନାହିଁ । ତେଣୁ ବାଧ୍ୟହୋଇ ସେମାନେ ଏଇ ପ୍ରକାର ବ୍ୟବସ୍ଥା ଗ୍ରହଣ କଲେ ।

ଇନ୍ଦ୍ର ଦେଖିଲେ ବଡ଼ବଡ଼ କର୍ମଚାରୀମାନଙ୍କର କିଛି ଅସୁବିଧା ହଉନି, ମାତ୍ର ଶ୍ରେଷ୍ଠ ସ୍ୱଳ୍ପବେତନଧାରୀ କର୍ମଚାରୀମାନେ ବହୁ କଷ୍ଟର ସମ୍ମୁଖୀନ ହେଉଛନ୍ତି ।

ଏଣେ ସରକାରୀ ହସପିଟାଲର ଅବସ୍ଥା କହିଲେ ନସରେ, ତେଣେ କାରଖାନା ହସ୍ପିଟାଲକୁ ଗଲେ, ମହାଜନ ଚୁଟିଧରି ପଇସା ଆଦାୟ କଲାପରି, ପଇସା ନଦେଲେ 'ନୋ ଟ୍ରିଟମେଣ୍ଟ' ।

ଏ ବିଷୟରେ ମଧ୍ୟ ବହୁ ସରକାରୀ ସଂସ୍ଥା ସରକାରଙ୍କ ଦୃଷ୍ଟି ଆକର୍ଷଣ କଲେଣି । ମାତ୍ର ଏ ପର୍ଯ୍ୟନ୍ତ ସେଇ ଅବସ୍ଥା ରହିଛି ।

ଏତେ କଥାରୁ କଅଣ ମିଳନ୍ତା ଯଦି ସରକାରୀ ଡାକ୍ତରଖାନାକୁ ଆଇ: ଜି: ଏଚ୍: ପରି କରିଯାଇ ପାରନ୍ତା ? ଉପଯୁକ୍ତ ଯନ୍ତ୍ରପାତି, ଘର ଏବଂ ଡାକ୍ତର ଦେଲେ ଏହା ସମ୍ଭବ ହୋଇ ପାରନ୍ତା ।

କିଛିଦିନ ତଳେ ଜଣେ ଏ. ଡ଼ି: ଏମ୍: ସରକାରୀ ହସପିଟାଲରେ, ଆଇ:ଜି: ଏଚ: ଠାରୁ ଅଧିକ ଭଲ ଚିକିତ୍ସା ଦେବେ ବୋଲି କହି ବହୁ ପଦକ୍ଷେପ ନେଇଥିଲେ । ସାଂସ୍କୃତିକ କାର୍ଯ୍ୟକ୍ରମ ମାଧ୍ୟମରେ ବ୍ଲଡ଼ ବ୍ୟାଙ୍କ ପାଇଁ ଟଙ୍କା ସଂଗ୍ରହ ଉପରେ କଥାବାର୍ତ୍ତା କରି ଭଲ ଭଲ ଡ଼ାକ୍ତର ଆଣିବା, ସେମାନଙ୍କ ରହିବା ପାଇଁ ଘର ଯୋଗାଇଦେବା ଇତ୍ୟାଦି କେତେକ ପଦକ୍ଷେପ ଗ୍ରହଣ କରିଥିଲେ । ସେ ଗଲାପରେ ପୁଣି ଯେଉଁ ଅବସ୍ଥାକୁ ସେଇ ଅବସ୍ଥା । କେବଳ ଗରିବ ଗୁରୁବା ହଇରାଣ ହରକତ ହେଉଛନ୍ତି ।

( ୩୩ )

ଇସ୍ପାତ ଜେନେରାଲ ହସ୍ପିଟାଲରୁ ବାହାରି ବସଷ୍ଟାଣ୍ଡରେ ପହଞ୍ଚିଲା ବେଳକୁ ଇନ୍ଦ୍ର ଶୁଣିଲେ, 'ଚକାବନ୍ଦ, ଅଖବନ୍ଦ' ଆନ୍ଦୋଳନ ଯୋଗୁ ସମସ୍ତ ସବୁ ସାଧାରଣ ପରିବହନ ବ୍ୟବସ୍ଥା ବନ୍ଦ ରହିଛି । ଏହି ଅନ୍ଦୋଳନକୁ ପାଞ୍ଚଗୋଟି ମିଳିତ ବିରୋଧିଦଳ ସମର୍ଥନ ଦେଇ, ଏହାକୁ ସଫଳ କରିବା ନିମନ୍ତେ ପ୍ରତ୍ୟେକ ବସଷ୍ଟାଣ୍ଡ ମାନଙ୍କରେ ଧାରଣା ଦେଇଛନ୍ତି । ସରକାର ମୁକାବିଲା କରିବାକୁ ଇଚ୍ଛା ନ କରିବାରୁ ଗାଡ଼ି ମଟର ଚାଲୁନାହିଁ ।

ମୁକାବିଲା ନ କରିବାର ମୂଳ ଉଦ୍ଦେଶ୍ୟ ହେଲା, ପୂର୍ବରୁ ଯେଉଁସବୁ ଚକାବନ୍ଦ ଆନ୍ଦୋଳନ ହୋଇଥିଲା, ସେହି ଆନ୍ଦୋଳନ ମାଧ୍ୟମରେ ବହୁ ସରକାରୀ, ବେସରକାରୀ ଲକ୍ଷ ଲକ୍ଷ ଟଙ୍କାର ଗାଡ଼ି ମଟର ପୋଡ଼ାଜଳା ଏବଂ ଭଙ୍ଗାରୁଜାରେ ନଷ୍ଟ ହେଲା । ପୁଲିସ, ଜନସାଧାରଣ ମଧ୍ୟ ଏଥିରେ ଫଣ୍ଡିଆ ଖାଇବସି ହେଲେ । ସରକାର, ଆନ୍ଦୋଳନକାରୀମାନଙ୍କୁ ଏହି ହିଂସାତ୍ମକ କାର୍ଯ୍ୟ ପାଇଁ ଦାୟୀ କଲାବେଳେ,

ଆନ୍ଦୋଳନକୁ ପରିଚାଳନା କରୁଥିବା ଦଳମାନେ ସରକାରଙ୍କୁ ଧ୍ୱଂସାତ୍ମକ ଘଟଣା ପାଇଁ ଦାୟୀ କରି ଖବରକାଗଜମାନଙ୍କରେ ବିବୃତି ଦେଲେ ।

ଘଟଣାଟି ଘଟିଗଲା ପରେ ସମ୍ବାଦପତ୍ରମାନଙ୍କରେ ଏତେ ବିବୃତି ଏବଂ ପ୍ରତ୍ୟକ୍ଷଦର୍ଶୀମାନଙ୍କର ଏତେ ବିବରଣୀ ଛପାଯାଏ ଯେ, ସାଧାରଣ ଲୋକେ ଏ ସମସ୍ତ ଖବର ପଢ଼ିଲାପରେ କେଉଁଟା ସତ ଆଉ କେଉଁଟା ମିଛ ବୋଲି ବୁଝି ପାରନ୍ତି ନାହିଁ । ସାଧାରଣରେ ଗୋଟେ 'କନ୍‌ଫିଉଜନ' ସୃଷ୍ଟିକରି ଲୋକମାନଙ୍କ ଆଗରେ ନିଜ ଦୋଷକୁ ଅନ୍ୟ ମୁଣ୍ଡରେ ଲଦାଇ ମୂଳ ଘଟଣାରୁ ଖସିଯିବା ହେଲା ଏହାର ମୂଳ ଉଦ୍ଦେଶ୍ୟ । ସମସ୍ତ 'ଦଳ' ଏହାକୁ ଭଲଭାବେ ହୃଦୟଙ୍ଗମ କରିବାହେତୁ, ଏହିପରି ସତ୍ୟ, ଅର୍ଦ୍ଧସତ୍ୟ, ମିଥ୍ୟା ସମ୍ବାଦ ଜାଣି ଜାଣି ପରିବେଷଣକରି ରାଜନୈତିକ କ୍ଷେତ୍ରରେ ଜମା ଜ୍ଞାନ ନଥିବା ଏବଂ ଜ୍ଞାନ ଥିବା ଏ ଦେଶର କୋଟି କୋଟି ଜନସାଧାରଣଙ୍କ ମନକୁ ବିଭ୍ରାନ୍ତକରି ସେମାନଙ୍କ ରାଜନୈତିକ ଫାଇଦାଉଠାଉଛନ୍ତି ।

ବସଷ୍ଟାଣ୍ଡ ପାଖେ ପହଞ୍ଚିବାଯୋଗୁ,ଇନ୍ଦ୍ର ଧାରଣାଧାରୀ ସରକାରୀ କର୍ମଚାରୀ, ମଟର କର୍ମଚାରୀ ଏବଂ ଜନସାଧାରଣଙ୍କ ପାଖୁ ଏହି "ଚକାବନ୍ଦ ଅଫିସବନ୍ଦ" ଆନ୍ଦୋଳନ ଉପରେ ସେମାନଙ୍କ ମତାମତ ଜାଣିବାକୁ ସୁଯୋଗ ପାଇଲେ । ବସଭଡ଼ା ବଢ଼ିବା ସତ । କଥା ହେଲା,ଏହି ଭଡ଼ା ବଢ଼େଇବାରେ ଯଥାର୍ଥତା ଅଛି କି ନାହିଁ ଏବଂ ଜନସାଧାରଣ କେଉଁ ପ୍ରକାରେ ଏହି ବର୍ଦ୍ଧିତ ଭଡ଼ାକୁ ଗ୍ରହଣ କରୁଛନ୍ତି ।

ଇନ୍ଦ୍ର, ତାଙ୍କର ସଂଗ୍ରହ କରିଥିବା ବିଭିନ୍ନ ଗୋଷ୍ଠୀ ଏବଂ ଦଳର ମତାମତରୁ ଜାଣିଲେ ଯେ, 'ବର୍ଦ୍ଧିତ ଭଡ଼ା' ମୁଖ୍ୟତଃ ସବୁଦିନିଆ 'ବସଯାତ୍ରୀ' ମାନଙ୍କୁ ବାଧୁଛି । କାରଣ, ଏଇ ସବୁଦିନିଆ ଯାତ୍ରୀମାନେହିଁ ଏ ବିଷୟରେ ବିଶେଷ ଭାବରେ ଆଲୋଚନା କରୁଛନ୍ତି । ମାତ୍ର ସାଧାରଣ ଲୋକ ଯେ, ମାସରେ କି ଦମାସରେ ଥରେ ବସରେ ଯାତ୍ରା କରନ୍ତିନ, ସେମାନଙ୍କର ଆବଶ୍ୟକତା କିଛି ନାହିଁ କହିଲେ ଚଳେ । ତେଣୁ ସେମିତି ଲୋକମାନେ ଏହି ବର୍ଦ୍ଧିତ ଭଡ଼ା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ଚାହାଁନ୍ତିନ ।

କିନ୍ତୁ ବିରୋଧିଦଳ ଏହି ଆଳରେ ଗୋଟିଏ ସୁଯୋଗ ନେବାକୁ ଚାହୁଁଛନ୍ତି । ଯଦିଓ କେତେଲୋକ ଏହାଦ୍ୱାରା ଆଫେକ୍ଟ ହୋଇଛନ୍ତି, କିନ୍ତୁ ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ଏହି କାର୍ଯ୍ୟ କରିବାକୁ ସରକାର ବାଧ୍ୟ ହୋଇଛନ୍ତି । କେବଳ ଆମ ପ୍ରଦେଶରେ ନୁହେଁ, ଭାରତର ଅନ୍ୟ ପ୍ରଦେଶ ମାନଙ୍କରେ 'ବସଯାତ୍ରୀ'ଙ୍କ ଭଡ଼ା ମଧ୍ୟ ଆମର ବର୍ତ୍ତମାନରେ ପ୍ରଚଳିତ ଭଡ଼ାଠାରୁ ବେଶୀ । ଯେତେବେଳେ ପେଟ୍ରୋଲ, ଡ଼ିଜେଲ, ମଟର ପାର୍ଟସର ଦାମ୍ ବଢ଼ିଲା,ସେତେବେଳେ ଗାଡ଼ି ଭଡ଼ା ନବଢ଼ିଲେ ଗାଡ଼ି ଚାଲିବ

କିପରି ? ସବୁସଂସ୍ଥା ଯଦି କ୍ଷତିରେ ଚାଲିବ, ତାହେଲେ ସେ ସଂସ୍ଥାମାନ ରହିବ କିମିତି ଏବଂ ତାର ଉନ୍ନତି କଲେକି କି ପ୍ରକାର କାର୍ଯ୍ୟ ହେବ ? ବିରୋଧିଦଳମାନେ କହୁଛନ୍ତି ଏ ସଂସ୍ଥାରେ ବହୁତ ଦୁର୍ନୀତି ଚାଲିଛି, ଲିକେଜ ବହୁତ ଅଛି ।

ଏହା ଯଦି ସତ୍ୟ, ବିରୋଧିଦଳମାନେ ଏ ସଂସ୍ଥାରୁ 'ଦୁର୍ନୀତି ଏବଂ ଲିକେଜ ବିରୁଦ୍ଧରେ ପିକେଟିଂ କରିଥିଲେ ଜନମତ ନିଶ୍ଚିତ ଭାବେ ତାଙ୍କ ସପକ୍ଷରେ ଯାଇଥାନ୍ତା । କିନ୍ତୁ ତାହା କରାନଯାଇ, ଭଡ଼ାବୃଦ୍ଧି ବିରୁଦ୍ଧରେ ଆନ୍ଦୋଳନ କରି ହଜାର ହଜାର ଜନସାଧାରଣଙ୍କୁ ହଇରାଣ କରିବା ସଙ୍ଗେ ସଙ୍ଗେ, ଦେଶର ଲକ୍ଷ ଲକ୍ଷ ଟଙ୍କା କ୍ଷତି କରାଇଲେ । 'ଗଣତନ୍ତ୍ର'ରେ ଜନମତକୁ ସମ୍ମାନ ଦେବା ନାଁରେ ଜନତାର କ୍ଷତି ଘଟାଇବା କଅଣ ରାଜନୈତିକ ଦଳ ଗୁଡ଼ିକର କାମ ?

ଗାନ୍ଧୀଙ୍କ ନାଁ ନେଇ ରାଜନୈତିକ ଦଳମାନେ ଏ ଦେଶରୁ ବହୁତ ଫାଇଦା ଉଠେଇ ସାରିଲେଣି । ଅହିଂସା ନାଁ ନେଇ ହିଂସାର ଆଶ୍ରୟ ନେବା, ଜନତାକୁ ଗୋଟେ କଥା କହି ନିଜେ ଗୋଟେ କାମ କରିବା, ଜନତା ପାଇଁ ଗୋଟେ ଆଇନ କରି ନିଜପାଇଁ ଅଲଗା ବ୍ୟବସ୍ଥା କରିବା, ଦେଶର ଅଶିକ୍ଷିତ, ସ୍ୱଳ୍ପ ଶିକ୍ଷିତ ଜନତା ବେଶ ବୁଝିଲେଣି । ଜନମତ ସୃଷ୍ଟି କରିବାକୁ ହେଲେ ଜନତାର କ୍ଷତି ନକରି ଜନମତ ସୃଷ୍ଟି କରିବାକୁ ସମସ୍ତ ରାଜନୈତିକ ନେତା ଚେଷ୍ଟା କରନ୍ତୁ । ଟିଭି, ରେଡ଼ିଓ, ସମ୍ବାଦପତ୍ରର ସାହାଯ୍ୟ ନିଅନ୍ତୁ । ସଭାସମିତି କରନ୍ତୁ ମାତ୍ର 'ଚକାବନ୍ଦ', ଅଫିସ ବନ୍ଦ, ଓଡ଼ିଶା ବନ୍ଦ, ଭାରତ ବନ୍ଦ ଧନ୍ଦା ଛାଡ଼ନ୍ତୁ ।

"ଚକାବନ୍ଦ" ଆନ୍ଦୋଳନର ଶେଷପର୍ଯ୍ୟାୟ । ବିରୋଧିଦଳ କର୍ମୀମାନେ ଏପଟ ସେପଟ ଧାଁ ଧପଡ଼ରେ ଲାଗିଯାଇଥାନ୍ତି । ସନ୍ଧ୍ୟାରେ ସଫଳତା ସଭାର ଆୟୋଜନ । ବସଷ୍ଟାଣ୍ଡ ପାଖ ପଡ଼ିଆରୁ ମାଇକର ଟୁଁ-ଟାଁ ଶବ୍ଦ ମଝିରେ ମଝିରେ ଶୁଭୁଥାଏ ଏବଂ ପଥପାର୍ଶ୍ୱ ପଥିକମାନଙ୍କୁ ସ୍ମରଣ କରାଇ ଦେଉଥାଏ ଯେ, ଆଜି ସନ୍ଧ୍ୟାରେ ଏଇ ସ୍ଥାନରେ ସଭାର ଆୟୋଜନ କରାହୋଇଛି ।

ଇନ୍ଦ୍ର ସେଇବାଟେ ଗଲାବେଳେ ଏ ଖବର ଜାଣିପାରି ସଭା କାର୍ଯ୍ୟ ଦେଖିବା ପାଇଁ ରହିଲେ । ଅଫିସ ଛୁଟି ହବାପାଇଁ ସବୁ ସମୟରେ ଏହି "ସଭାର କାର୍ଯ୍ୟକ୍ରମ" ଅପେକ୍ଷା କରେ । ଅଫିସରୁ ଘରକୁ ଯିବା ବାଟରେ, ଖୋଳଲ ଅଫିସ କର୍ମଚାରୀମାନେ ଘଣ୍ଟେ ଅଧଘଣ୍ଟେ 'ତାମସା' ଦେଖିବାକୁ ଠିଆ ହୋଇଯାଆନ୍ତି ଏବଂ ସେଇ ସମୟରେ ସଭାର ଜନସଂଖ୍ୟା ସମୁଦ୍ରରେ ଜୁଆର ବେଳେ ପାଣିଟା ଫୁଲି ଉଠିଲାପରି, ସଭାସ୍ଥଳୀର ଲୋକ ସଂଖ୍ୟା ଫୁଲିଉଠେ । ଏହାର ସୁଯୋଗ ନେଇ, ଆୟୋଜନକାରୀ ଦଳ ଗତ ସନ୍ଧ୍ୟାର ସଭାରେ ହଜାର ହଜାର ଲୋକ, ସମର୍ଥନ ଜଣାଇ ଶୀଘ୍ର

କାକର ରାତ୍ରିରେ ଘଣ୍ଟା ଘଣ୍ଟା ଧରି ଠିଆହୋଇ, ଆନ୍ଦୋଳନକାରୀମାନଙ୍କୁ ସମର୍ଥନ ଜଣାଇଥିଲେ ବୋଲି ସମ୍ବାଦପତ୍ର ସମ୍ପାଦକମାନଙ୍କୁ ଟେଲିଫୋନରେ କହି ସମ୍ବାଦ ଛପାଇବାକୁ ଜବରଦସ୍ତ କରିଥାନ୍ତି ।

ଯଦି ଏହି ଆନ୍ଦୋଳନରେ କୌଣସି ବଡ଼ ଏବଂ ଶ୍ରେଷ୍ଠକାଟିଆ ନେତାମାନେ ଆରେଷ୍ଟ ହୋଇଥାନ୍ତି, ସେମାନଙ୍କ ନାଁ ଯେପରି ସମ୍ବାଦପତ୍ର ମାନଙ୍କରେ ପରିବେଷଣ ହୁଏ ତାହା ମଧ୍ୟ ଥରକୁ ଥର ଟେଲିଫୋନ କରି ବୁଝିଥାନ୍ତି । ଯଦି କାହାର ନାଁ ଭୁଲରେ କୌଣସି ସମ୍ବାଦପତ୍ର କିମ୍ବା ପି:ଟି:ଆଇ:, ୟୁ:ଏନ: ଆଇ: ଛାଡ଼ିଦେଇ ଅନ୍ୟମାନଙ୍କ ନାଁ ଦେଇ ଦେଇଥାନ୍ତି, ତା'ହେଲେ ତା'ପର ଦିନ ସେ ସମ୍ବାଦପତ୍ରର ସମ୍ପାଦକ ଏବଂ ସମ୍ବାଦଦାତାମାନଙ୍କ ପ୍ରାଣଗଲା । ଗୋଟାକ ପରେ ଗୋଟେ ଏକ୍ସ-ପ୍ଲାନେସନ ସେମାନଙ୍କୁ ଦବାକୁ ପଡ଼େ । ତେଣୁ ଆଜିର ନେତାମାନେ 'କାମ' ନୁହଁ 'ପ୍ରଚାର'ରେ ବେଶୀ ବିଶ୍ୱାସ କରନ୍ତି । ପ୍ରଚାର ହୋଇଗଲେ ନାଁ' ହେଲା, କାମ କରୁଛି କି ନାହିଁ ଦେଶବାସୀ ଆସି କଅଣ ଦେଖୁଛନ୍ତି ନାଁ । ପଚାରିବାକୁ ସାହାସ ପାଉଛନ୍ତି ?

ସଭାମଞ୍ଚ ପାଖେ ଠିଆହୋଇ ଇନ୍ଦ୍ର ଏ ସମସ୍ତ କଥା ଭାବିଲାବେଳେ ସଭା-କାର୍ଯ୍ୟ ଆରମ୍ଭ ହେଲା । ସଭାପତି ଜଣକ ପରେ ଜଣକୁ ସେମାନଙ୍କ ଉଦ୍‌ବୋଧନ ସମବେତ ଜନତାଙ୍କୁ ଦେବାକୁ କହୁଥାନ୍ତି ।

ଜନତା ଭିତରେ ଠିଆ ହୋଇ, ଜନତାଙ୍କ ଠାରୁ ଇନ୍ଦ୍ର ଦୁଇଟି କଥା ଶୁଣିଲେ । ଲୋକେ କୁହାକୋହି ହେଉଥାନ୍ତି ଏ ଆନ୍ଦୋଳନରେ ସରକାର ଜିତାପଟ ନେଲେ । ଏ ବିରୋଧିଦଳବାଲା ଜାଣିଶୁଣି କେନ୍ଦ୍ରାପଡ଼ା ନିର୍ବାଚନକୁ ଆଖି ଆଗରେ ରଖି ଗୋଟେ ମଉକା ଖୋଜୁଥିଲେ । କୌଣସି ବାଟରେ ଟିକିଏ 'ଗଣ୍ଡଗୋଳ' ଲଗାଇ ଦେଇଥିଲେ, ସେଇ ଘଟଣାକୁ ପନ୍ଦରଦିନ ପାଇଁ ଫେଣେଇ ଥାନ୍ତେ । ମାତ୍ର ସରକାର ଗୁଳିକ୍ ପଡ଼ି ସେସବୁ କରିବା ପାଇଁ ମଉକା ଦେଲେନି । ଏମାନେ ଯେତେ "ସଫଳ ହେଲା, ସଫଳ ହେଲା" ବୋଲି ଦାବୀକଲେ କଅଣ ହେବ, 'ସଫଳତା'ଟା ସରକାରଙ୍କପଟେ ପୂରାମାତ୍ରାରେ ଗଲା ।

ଆଉ କଥାଟି ହେଲା, ସମବେତ ଜନତା କେତେକ ଭୂତପୂର୍ବ ମନ୍ତ୍ରୀ, ଏମ୍: ଏଲ୍: ଏ:ଙ୍କ ଭାଷଣ 'ଶାଳୀନତା ବିହୀନ' ଦେଖି କ୍ଷୋଭ ପ୍ରକାଶ କରିଥିଲେ । ଦେଶ ସ୍ୱାଧୀନ ହେଲା ପରେ, ଆମ ଦେଶର ସମ୍ବିଧାନ ଶାନ୍ତିପୂର୍ଣ୍ଣ ଭାବରେ ସମବେତ ହୋଇ ନିଜ ନିଜର ମତବ୍ୟକ୍ତ କରିବାର ଅଧିକାର ଦେଲା । ଏତେ ବର୍ଷର ସ୍ୱାଧୀନତା ପରେ ଦେଶର ନାଗରିକମାନେ ଶିକ୍ଷା, ରାଜନୀତି ଅନ୍ୟସବୁ କ୍ଷେତ୍ରରେ ଅଗ୍ରସର

ହେଲେଣି । ଏହିପରି ଗୋଟିଏ ଜନତାଙ୍କୁ ଯଦି ଦେଶର ନେତାମାନେ ଆଉ ହବାକୁ ଯାଉଥିବା ନେତାମାନେ ସେମାନଙ୍କ ଭାଷଣରେ, ସରକାର ହେଉ କିମ୍ବା ସରକାରଙ୍କ ନୀତିରେ କେଉଁଠି ଦୋଷ ଦୁର୍ବଳତା ରହୁଛି, ତାକୁ ସମାଲୋଚନା ନକରି, ବ୍ୟକ୍ତିବିଶେଷଙ୍କୁ ଅଶ୍ଳୀଳ ଭାଷାରେ ଆକ୍ଷେପ କରନ୍ତି, ତା'ହେଲେ ଏମାନେ କେଉଁ ଧରଣର ନେତା ? ଏମାନଙ୍କ ଶିକ୍ଷା କଅଣ ?

କେତେକ ନେତାଙ୍କ ନୀଚମାନର ଉଦ୍‌ବୋଧନକୁ ଶୁଣି ଇନ୍ଦ୍ର କହିଲେ, ଏମାନେ ଯିନା ଦେଶର ନୀତି, ଆନ୍ତର୍ଯାତୀୟ ନୀତି, ଆଭ୍ୟନ୍ତରୀଣୀୟ ଅର୍ଥନୀତି ବିଷୟରେ ଜାଣିଥିଲେ, ସଭାସମିତିରେ ସେ ବିଷୟ କହିବେ ! ଏମାନେ ତ ସବୁ-ବେଳେ ଅନ୍ୟପ୍ରକାର ଚିନ୍ତାରେ ରହିଲେ । ପ୍ରକୃତ ଜ୍ଞାନ ଅଭାବରୁ ଅଶ୍ଳୀଳତାକୁ ଶାଳୀନତା ବୋଲି ଧରିନେଲେ । ସଭା ସମିତିରେ ତା'ଛଡ଼ା ଆଉ ଅଧିକା କଅଣ କହିବେ ? ସମ୍ବିଧାନର ଅଧିକାରକୁ ସେ ଠିକ୍ ଠିକ୍ ବ୍ୟବହାର କରୁଛନ୍ତି ଏବଂ ଜନତା ତାଙ୍କୁ ପୂର୍ଣ୍ଣମାତ୍ରାରେ ସପୋର୍ଟ କରୁଛି ବୋଲି ଏପରି ନେତା ଭାବିବା ମୂର୍ଖାମୀଛଡ଼ା କଅଣ ହୋଇପାରେ ।

( ୩୪ )

ଇନ୍ଦ୍ର ଶ୍ରୀଲ ଗ୍ରୀଲ ଛକ ଉପରେ ପହଞ୍ଚିଲା ବେଳକୁ ଦିନ ସାଢ଼େ ଅ.୦ । ସେତିକବେଳକୁ ବାବୁ ନୀଳମଣିଙ୍କ ଜିପ୍ ଖୁବ୍ ଜୋରରେ 'ସାଇରନ'ମାରି ସେଇ ବାଟ ଦେଇ ସାଇଁକିନା ପଳାଇଗଲା । ତା ପଛେ ପଛେ ଆଉ ଗୋଟେ ଦିଇଟା ପୋଲିସ ଗାଡ଼ି ପେଁ ପାଁ ହୋଇ ଛୁଟିଗଲେ । ଇନ୍ଦ୍ର ବୁଝିଁ ବୁଝିଁ ସେଦିନ ଭାରତ ବନ୍ଦ । ସେଇଥିଲାଗି ପୁଲିସବାଲାଏ ସକାଳୁ ସକାଳୁ ବାଡ଼ି ଗାଡ଼ି ଧରି ଧାଁ ଧପଡ଼ ଲଗେଇଛନ୍ତି । ଶହ ଶହ ରିକ୍ସା ଜାଗାରେ ଗୋଟେ ଦିଇଟା ରିକ୍ସା ରାସ୍ତା ଉପରେ ଟହଲ ମାରୁଛନ୍ତି ।

ରାସ୍ତାକଡ଼ କୃଷ୍ଣଚୂଡ଼ା ଗଛମୂଳେ ଠିଆହୋଇ, ଇନ୍ଦ୍ର ମନେ ପକେଇଲେ, ତାଙ୍କ ଗସ୍ତକାଳ ମଧ୍ୟରେ ସେ କେତେ 'ବନ୍ଦ' ଦେଖିଲେଣି । ପୁଣି ଏ ଭାରତବର୍ଷର ଓଡ଼ିଶା ଖଣ୍ଡରେ 'ବନ୍ଦ'ତ ପ୍ରାୟ ମାସେ ଦିମାସକେ ଥରେ ନହେଲେ ଓଡ଼ିଶା ନେତାମାନଙ୍କ ଭାତ ହଜମ ହୁଏନା ।

ତାଙ୍କର ମନେ ପଡ଼ିଲା, ଥରେ ସେ ଗୋଟିଏ ଶ୍ରେଷ୍ଠ ଟାଉନ ଗସ୍ତରେ ଗଲାବେଳେ ଦେଖିଲେ, ସେ 'ଟାଉନ'ରେ ବଜାର ଘାଟ ସବୁ ବନ୍ଦ । ବୁଝିଲେ ଯେ,

ସେ ଦିନ ସକାଳୁ ଗୋଟେ **'ଫୁଲପଗାଡ଼ି'** ବଜାରର ଅତି ପପୁଲାର ଗୁ ଦୋକାନୀର କୁକୁର ରାସ୍ତାରେ ଆଉ **ଗୋଟେ** **କୁକୁରକୁ** ଗୋଡ଼ାଇ ଗଲାବେଳେ ଗାଡ଼ି ମାଡ଼ିଯାଇ ଇହଧାମ ତ୍ୟାଗ କରିଥିଲା । **ସ୍ୱ** **ଦୋକାନୀର** ଆହ୍ୱାନକୁ ପ୍ରତ୍ୟାଖ୍ୟାନ ନକରି ସେଦିନ ସ୍ୱର୍ଗୀୟ ଆତ୍ମାର ସଦ୍‌ଗତି ଲାଗି 'ବଜାର ବନ୍ଦ' ପାଳନ କରାଯାଇଥିଲା ଏବଂ କୁକୁରର ମରଶରୀରକୁ ଗୋଟେ ବିରାଟ ପ୍ରଶୋଭନରେ ମଶାଣିକୁ ନିଆଯାଇ ଶବ ଶତ୍କାର କରାଯାଇଥିଲା ।

ତା'ର ମାସକପରେ ସେ ଆଉ ଗୋଟିଏ ମଝିଆଁ ଧରଣର ସହରକୁ ଗସ୍ତରେ ଗଲାବେଳେ ଦେଖିଲେ ସେଦିନ ସେ ସହରରେ ବନ୍ଦ ପାଳନ କରାଯାଇଛି । କିଛି ସମୟ ବୁଲାବୁଲି କଲାପରେ ଜାଣିବାକୁ ପାଇଲେ ଯେ, ତା ପୂର୍ବଦିନ ରାତିରେ ଜଣେ କିଏ ଦୁର୍ବୃତ୍ତ ପାପିଷ୍ଠ, ସହରର ଦୋକାନେ ଦୋକାନେ ପରିଚିତ ଈଶ୍ୱର ପଟ୍ଟପଟକୁ ଛୁରୀକାଘାତ କରିଛି । ଈଶ୍ୱର ପଟ୍ଟପଟୁ ରକ୍ତ ଥପ ଥପ ପଡ଼ିବାର ଦେଖି ଜଣେ କିଏ ପ୍ରଚାର କଲା ଯେ, ଅନ୍ୟ କମ୍ୟୁନିଟିର ନରାଧମମାନଙ୍କ ଛଡ଼ା ଅନ୍ୟ କେହି ଲୋକ ଜାଣିଜାଣି ଈଶ୍ୱର ପଟ୍ଟପଟକୁ ଛୁରୀକାଘାତ କରିବେନି । ସଙ୍ଗେ ସଙ୍ଗେ ସହରରେ ବନ୍ଦପାଳନ କରାଗଲା ।

ଭାରତବର୍ଷରେ 'ବନ୍ଦ ପାଳନ' ଗୋଟିଏ ମାମୁଲି ଘଟଣା । ଉପରୋକ୍ତ କେତୋଟି ଘଟଣାକୁ ନେଇ ଯଦି 'ବନ୍ଦ ପାଳନ'ରେ ସମସ୍ତେ ଯୋଗଦେଇ ପାରନ୍ତି ତେବେ ଟିକସ ବୃଦ୍ଧି, ପେଟ୍ରୋଲ, କିରୋସିନି, ଗୁଡ଼ିଲ ଇତ୍ୟାଦିର ଦରବୃଦ୍ଧି ବିରୁଦ୍ଧରେ ପ୍ରତିବାଦ କରି 'ଭାରତ ବନ୍ଦ' ଡାକରା ବିରୋଧୀଦଳମାନେ ଦେବା ସାଧାରଣ କଥା । 'ବନ୍ଦ' ନାଁ ଶୁଣୁ ଶୁଣୁ ଦୋକାନୀମାନେ ଦୋକାନ ବନ୍ଦ କରି ଦୋକାନ ସାମ୍ନାରେ ଟୁଲ୍ ପକାଇ ରାସ୍ତାରେ ପିଲାମାନଙ୍କ କ୍ରିକେଟ ଖେଳ ଦେଖି ଦେଖି ମଉଜ ମାରନ୍ତି । ପ୍ରେସବାଲା ସ୍କୁଟର, ମଟର ସାଇକେଲ ଧରି 'ପ୍ରେସବାଲା' କହି ଖବର ସଂଗ୍ରହ କରିବା ସଙ୍ଗେ ସଙ୍ଗେ ପୁଲିସବାଲା କପର ଗଛତଳେ ଅଧାଗୋଡ଼ ଠେକା ଡ୍ରେସ ପିନ୍ଧି ମୁଣ୍ଡତଳେ ଲାଠି ରଖି ଶୋଇଥିବା ଦୃଶ୍ୟ ଦେଖି ମନେ ମନେ ଦୁଃଖାତ୍ମକ ହାସ୍ୟ ପ୍ରକାଶ କରିଥାନ୍ତି ।

ଆଗେ 'ସରକାର' ଏ ବନ୍ଦ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରୁଥିଲେ । ଏଥିଯୋଗୁ କେତେ ଜାଗାରେ ଲାଠି ଚାଳନା, ଗୁଳିଚାଳନା ହେଲା । ତା'ପରେ ପ୍ରେସବାଲା କଥାଟାକୁ ଏମିତି ଫେଣେଇଲେ ଯେ ଏବେ ବନ୍ଦ ବିରୁଦ୍ଧରେ କନଫ୍ରଣ୍ଟ କରିବାକୁ କେହି ଇଚ୍ଛା କରୁ ନାହାନ୍ତି । କନଫ୍ରଣ୍ଟ କରି ବା ଲାଭ କଅଣ ? ଗୋଟେ ଦିନ ବନ୍ଦ ପାଳନ କରି ବିରୋଧୀଦଳମାନେ ବାହା ବାହା ନିଅନ୍ତୁ, ତା'ର ପ୍ରଭାବ

ସରକାର ଉପରେ କିଛି ପଡ଼େନି । କାରଣ 'ବନ୍ଦ'କୁ ଜନମତ ବୋଲି ଧରାଯାଏନି । ସବୁ ବନ୍ଦରେ, ଗଣ୍ଡଗୋଳକୁ ଭୟ କରି ଲୋକମାନେ ସପୋର୍ଟ କରନ୍ତି । ଦୋକାନ ବଜାର ବନ୍ଦ କରନ୍ତି । ମାତ୍ର ପ୍ରକୃତରେ ତାଙ୍କର ଇଚ୍ଛା ଏସବୁ ବନ୍ଦ ବାନ୍ଦରେ ନଥାଏ ।

ତେଣୁ ଏ ବନ୍ଦ ପାଳନକରି ଲାଭ କଅଣ ? ଗୋଟିଏ ଦିନ 'ଭାରତ ବନ୍ଦ'ରେ କୋଟି କୋଟି ଟଙ୍କା କ୍ଷତି ହେଲା । ଏଥିପାଇଁ ଦାୟୀ କିଏ ? ତେଣୁ ଇନ୍ଦ୍ର ଭାବିଲେ ସବୁଯାକ ବିରୋଧିଦଳ, ଆଉ ସରକାରୀ ଦଳ ବସି ବିଚାର କରି କେଉଁ ପ୍ରକାର ସଙ୍କେତ ଦ୍ୱାରା ସେମାନେ ସରକାରଙ୍କ ନୀତିକୁ ବିରୋଧ କରୁଛନ୍ତି ବୋଲି ଲୋକ-ମାନଙ୍କୁ ଏବଂ ସରକାରଙ୍କୁ ଜଣାଇ ପାରିବେ ଯେପରି ଗୋଟିଏ ସଙ୍କେତ ବାହାର କରି ଲୋକମାନଙ୍କୁ ଟି:ଭି: ରେଡ଼ିଓ ଏବଂ ଅନ୍ୟାନ୍ୟ ପ୍ରଚାର ମାଧ୍ୟମରେ ବୁଝାଇ ଦିଅନ୍ତୁ । ଯେତେବେଳେ ସରକାରଙ୍କ ନୀତିକୁ ପ୍ରତିବାଦ କରିବାକୁ ସେମାନେ ଇଚ୍ଛା କରିବେ, ସେତେବେଳେ ଲୋକମାନଙ୍କୁ ପ୍ରଚାର ମାଧ୍ୟମରେ ଡକାଦେଇ ଯେଉଁ-ମାନେ ସେମାନଙ୍କ ପ୍ରତିବାଦକୁ ଗ୍ରହଣ କରିବେ ସେମାନେ ସେଇ ସଙ୍କେତ ପିନ୍ଧି କିମ୍ବା ଦେହରେ ଲଗାଇ କିମ୍ବା ନିଜ ନିଜର ଦୋକାନ ଘର ଆଗରେ ରଖି ପ୍ରତିବାଦକୁ ସପୋର୍ଟ କରୁଛନ୍ତି ବୋଲି ଜଣାଇବେ । ସରକାର ମଧ୍ୟ ଏ ପ୍ରକାର ପ୍ରତିବାଦ ଉପରେ ଗୁରୁତ୍ୱ ଦେଇ କିପ୍ରକାର କାର୍ଯ୍ୟ ଗ୍ରହଣ କରୁଛନ୍ତି, ଲୋକମାନଙ୍କୁ ଭିନ୍ନଭିନ୍ନମିଡ଼ିଆ ମାଧ୍ୟମରେ ଜଣାଇଦେବେ । ଏପରି ବ୍ୟବସ୍ଥା କଲେ ଗଣତନ୍ତ୍ରର ମୂଲ୍ୟବୋଧ ରହନ୍ତା ଏବଂ ଦେଶର କୋଟି କୋଟି ଟଙ୍କା କ୍ଷତି ହୁଅନ୍ତାନି ।

ଏ ବିଷୟରେ ଭାରତବାସୀ ଚିନ୍ତା କରିବାର ସମୟ ଆସିଛି । ଅବଶ୍ୟ ରୋଗୀକୁ ଔଷଧ ଗନ୍ଧାଏ । ଯେଉଁମାନେ ଦେଶବାସୀଙ୍କ ପାଇଁ କୁମ୍ଭୀର କାନ୍ଦଣା କାନ୍ଦୁଛନ୍ତି, ସେମାନଙ୍କୁ ଏ ପ୍ରକାର ସଜେସନ ଗନ୍ଧାଇ ପାରେ ।

ବନ୍ଦ ଦିନ, ରାସ୍ତାଘାଟରେ ଗାଡ଼ି ମଟର ଆଉ ଲୋକମାନଙ୍କ ସମାଗମ କମ୍ ଥିବା ଦୃଷ୍ଟିରୁ, ଇନ୍ଦ୍ର ଚାଲିଚାଲି ସହରର କେତେକାଞ୍ଚଳରେ କିସମ କିସମର ଲୋକ, ବନ୍ଦକୁ କେଉଁପରି ଭାବରେ ଉପଭୋଗ କରୁଛନ୍ତି ବୁଲି ଦେଖିଥିଲେ ।

ପ୍ରଥମେ ତାଙ୍କ ଦୃଷ୍ଟିକୁ ଆସିଲେ ବିଭିନ୍ନ ଦପ୍ତର ସରକାରୀ କର୍ମଚାରୀମାନେ । ଏମାନେ ପୂର୍ବଦିନରୁ ସେମାନଙ୍କ ଘରଣୀମାନଙ୍କ ଉପରେ ଚଢ଼ାଉ କରାଇ ସେଦିନ ସକାଳ ଆଠଟା ପୂର୍ବରୁ ରୋଷେଇ କାମ ସାରି, ଖାଇ ପିଇ ନିଜ ନିଜର କ୍ୱାର୍ଟର ସାମ୍ନାରେ ଧୋବଧାଉଳିଆ ପୋଷାକ ପକାଇ ରାସ୍ତାର ଏକଡ଼ ସେକଡ଼କୁ ଆଖି ବୁଲଉଥାନ୍ତି । ତାଙ୍କ ସାମ୍ନା ଦେଇ ଯଦି କିଏ ଜଣେ ସାଇକେଲରେ ଗଲା, ତାକୁ

ପଚାରୁଥାନ୍ତି 'କଅଣ ଭାଇ, କେଉଁଠି ଗଣ୍ଡଗୋଳ ହେଲାଣି କି ?' ସେ ଯଦି ମନା କରିଦେଲା, ତାହେଲେ ମୁହଁକୁ ଆମ୍ବିଳା କରି ପୁଣି କିଛି ସମୟପାଇଁ ଗେଟକୁ ଧରି ଠିଆ ହୁଅନ୍ତି ।

ଏଇ ସମୟରେ ଯଦି ତାଙ୍କ ପିଲାମାନଙ୍କ ଭିତରୁ କିମ୍ବା ସ୍ତ୍ରୀ କହିଦେଲେ 'କଉ ଅଫିସ ଟାଇମ ଡେରି ହେଉଛି, ଯିବନାହିଁ ? ତୁମର ପରା ଆଜି ୯ଟାରେ ଅଫିସ ?' ଏତିକି ଶୁଣି ବାବୁଜଣକ ରାଗିଯାଇ କୁହନ୍ତି, 'ହଁ ଚମତ୍କାର ମଜା ଲାଗିଛି । ଟିକିଏ ବୁଝି ବିଚାରି ନଗଲେ, ବାଟରେ ପୁଲିସବାଲାଙ୍କ ଲାଠି ବସିଯିବ । ନହେଲେ ଥାନାକୁ ଆଗେ ନେଇ ମୁଡ଼ି ଖୁଆଇ ରାତି ବାରଟାରେ ଛାଡ଼ିବେ— ନହେଲେ ସିଆଡେ ଅଫିସରେ ପହଞ୍ଚୁ ପହଞ୍ଚୁ ଅନ୍ୟ ଇଉନିୟନର କର୍ମକର୍ତ୍ତାମାନେ ଅଫିସ ଭିତରୁ ତୁମକୁ ଘୋଷାରି ନେବେ । ଇସ୍ତାଡ଼େ ଅଫିସକୁ ନଗଲେ, ଅଫିସର ଦରମା କାଟି ଦେବେ । 'ନୋ ଓ୍ୱାର୍କ ନୋ ପେ ।' ତୁମକୁ ହସ ଲାଗିଛି ନୁହେଁ ? କେଉଁଠି ଯଦି ଗୋଟେ ଗଣ୍ଡଗୋଳ ହୋଇଯାନ୍ତା, ପିଲା ନେଇ ରହିଯାଆନ୍ତି ।

ଇନ୍ଦ୍ର ·ଏମାନଙ୍କ ହାବଭାବ ଠଉରାଇ ବଜାରରେ ପହଞ୍ଚିଲାବେଳକୁ, କେତେଟା ଦୋକାନୀ ଦୋକାନର ଜବାଟ ଅଧେ ମେଲା କରି ତା ଭିତରୁ କଇଁଚ ପରି ମୁହଁ ଟେକି ବଜାରର ହାଲଚାଲ ଦେଖୁ ଥାଆନ୍ତି । ଯଦି ଦେଖିଲେ କିଏ ଦଳେ ତାଙ୍କ ଦୋକାନ ଆଡ଼କୁ ଆସିଲେ, ସାଥି ସାଥି ଭିତରୁ ଦୋକାନ ବନ୍ଦ ।

ଆଉ ପଞ୍ଚେ ଦୋକାନ ସାମ୍ନା ପିଣ୍ଡା ଉପରେ ବସି ତାସ ପାଲି ପକେଇ ଗରମ ପକୁଡ଼ି, ଚା'ର ସଦ୍‌ବ୍ୟବହାର କରିବା ସଙ୍ଗେ ସଙ୍ଗେ ପୁଲିସ ମୋବାଇଲ ଗାଡ଼ି ଗଲା ବେଳକୁ ପଚାରୁଥାନ୍ତି 'ଆଜ୍ଞା ସବୁ ଠିକ୍ ତ' ? ଆଉ ଦଳେ ଦୋକାନୀ ତାଙ୍କ ପଛପଟ ଦରଜା ଖୋଲି ବେଶ୍ କାରବାର ଚଳାଇଥାନ୍ତି ।

ଇନ୍ଦ୍ର ସେଠୁ ଯାଇ ସରକାରୀ ବସ୍ ଗ୍ୟାରେଜ ପାଖେ ଦେଖିଲେ, ବସ କର୍ମଚାରୀମାନେ ତ୍ରେସଟି ପକାଇ ଗେଟପାଖେ ଭିଡ଼ ଜମାଇଥାନ୍ତି । ପ୍ରବାସୀ କି ଗାଡ଼ି ଯିବ କି ନାହିଁ ପଚାରିଲେ କୁହନ୍ତି—"ଆଜ୍ଞା ପୁଲିସ ବାବୁଙ୍କୁ ପଚାରନ୍ତୁ । ସେ ଯଦି କହିବେ ଆଉ ଏସ୍କର୍ଟ ଦେବେ, ତା'ହେଲେ ଯିବୁ, ନହେଲେ ଟେକାମାଡ଼ ଖାଇବ କିଏ ? ବେଟର ହେବ ଆଜି ଆପଣ ଯାଆନ୍ତୁନି, ଯାଇକରି କାହିଁକି ଖଣ୍ଡିଆ ଖାବରା ହେବେ ?" ଏତିକି ଶୁଣି ଆସିଥିବା ପ୍ୟାସେଞ୍ଜର ଘରକୁ ଫେରିଲେ ।

ତାପରେ ଇନ୍ଦ୍ର ଗଳି କନ୍ଦି ବସ୍ତି ଆଡ଼କୁ ଯାଇ ଦେଖିଲେ ଦଳଦଳ ହୋଇ ଛତରା ଲଫଙ୍ଗା ଟୋକା ମଉକା ଖୋଜି ଯାଗାଧରି ବସିଥାନ୍ତି । ସେମାନେ କଥା-ବାର୍ତ୍ତା ହେଉଥାନ୍ତି, ଗତ ରାତିରେ କପରି ଦଳେ ଆସି ସେମାନଙ୍କୁ ଦବାନବା କରି

ଯାଇଛନ୍ତି । କମିତ ଗୋଟେ ମଜ୍ଜା ମିଳିଲେ, ସେମାନେ ଗୋଟେ ଧଇଁଶା ବସ ପୋଡ଼ି, ଦୋକାନ ବଜାର ଲୁଟି କରନ୍ତେ । ଖାଲି ସୁଯୋଗକୁ ଉଣ୍ଟି ଛକି ବସିଥାନ୍ତି ।

ଏଇ ସମୟରେ ଦଳେ ନେତା ରାସ୍ତାରେ ଯିବାର ଦେଖାଗଲା । ସେମାନେ ଲୋକମାନଙ୍କୁ ହାତଯୋଡ଼ି ବନ୍ଦକୁ ସଫଳ କରିବାକୁ ଅନୁରୋଧ କଲାବେଳେ ତାଙ୍କ ପଛରେ ଦଳେ ଯେ ବନ୍ଦକୁ ସପୋର୍ଟ କରୁନାହାନ୍ତି, ସେମାନଙ୍କର ଚଢ଼ଦପୂରୁଷ ଉଦ୍ଧାରି, ମାରିବାକୁ ପ୍ରସ୍ତୁତ ହେଉଥାନ୍ତି । କମିତ ଗୋଟେ ଗଣ୍ଡଗୋଳ ହେଉ ।

ଏହି ସମୟରେ ପୁଲିସ ଗାଡ଼ି ଆସିବାର ଦେଖି, ନେତାମାନେ ହଠାତ୍ ଆଗାମୀ କାର୍ଯ୍ୟପାଇଁ ପ୍ରସ୍ତୁତ ହୋଇଗଲେ । ଗାଡ଼ି ପାଖରେ ପହଞ୍ଚୁ ପହଞ୍ଚୁ ରାସ୍ତା ଉପରେ ଶୋଇପଡ଼ି, କିଏ ବସିଯାଇ, ନିଜ ନିଜର ଲୁଗା, କାମିଜ ଉପରେ ହାତ ରଖିଲେ । ପୁଲିସ ଧରିଲା ମାତ୍ରେ ରାସ୍ତାରେ ଗଡ଼ି, ଲୁଗାଚିରି ମୁଣ୍ଡଉଠାଇଲା ବେଳକୁ, ସେମାନଙ୍କର ସାଙ୍ଗରେ ଆସିଥିବା ଫଟୋଗ୍ରାଫର ଫଟୋ ଉଠାଇ ନେଉଥାଏ । ତା'ପରେ ସେମାନେ ଚାଲିଲେ ପୁଲିସ ଗାଡ଼ିରେ । ତାଙ୍କର କାର୍ଯ୍ୟ ସଫଳ ହୋଇଗଲା ।

ଇନ୍ଦ୍ର ଦେଖିଲେ ଏଇ ବନ୍ଦର ସୁଯୋଗ ନେଇ ଛାତ୍ର ନେତାମାନେ କଲେଜକୁ କଲେଜ ବୁଲି ପ୍ରଥମେ ଝିଅମାନଙ୍କୁ ପରେ ଅନ୍ୟମାନଙ୍କୁ ସାର୍ବଜନୀନ ଭାଷଣ ଦେଇ, ତାଙ୍କ ସଙ୍ଗେ ପ୍ରସେସନରେ ଯୋଗଦେବା ପାଇଁ ଅନୁରୋଧ କରୁଛନ୍ତି । ଅନ୍ୟ ପିଲା-ମାନେ କମିତ ନିଜ ନିଜର ସାଇକେଲ ଧରି ଫେରିବେ, ତା'ର ବ୍ୟବସ୍ଥାରେ ଥାନ୍ତି । ଆଉ ପଞ୍ଚେ ପକେଟରେ ପଥର ଇଟା ଧରି ଯୁଦ୍ଧ କ୍ଷେତ୍ରରେ ପହଞ୍ଚିବାକୁ ପ୍ରିପେୟାର ଥାନ୍ତି । ମାତ୍ର ସେମାନଙ୍କ ସଂଖ୍ୟା ନଗଣ୍ୟ ।

ସେମାନଙ୍କ ପରେ ଇନ୍ଦ୍ର ଦେଖିଲେ ପୁଲିସ ମାନଙ୍କ ଅବସ୍ଥା । ବହୁ ଜାଗାରେ ରାସ୍ତା କଡ଼ରେ ଲମ୍ବା ବେଞ୍ଚ ଷ୍ଟୁଲ ପକାଇ, ଗଛମୂଳେ ବନ୍ଧୁକ,ଲାଠିଡ଼େଙ୍ଗା, କେତେକ ଦେହକୁ ଲମ୍ବାଇ ଦେଇଛନ୍ତି ତ କେତେକ ଗୋଡ଼ ଟେକି ବସିଥାନ୍ତି । ଆଉ ଦଳେ ଗାଡ଼ି ଭିତରେ ପଶି ତାସ ପାଲି ପକେଇଥାନ୍ତି । ମୋବାଇଲ୍ ପୋଲିସ ଏଠି ପଥର ମରା ହେଉଛି, ସେଠି ରାସ୍ତା ରୋକିଲେଣି, ଖବର ପାଇ ଧାଁ ଧପଡ଼ କରୁ-ଥାନ୍ତି । ଆଉ କେତେକ ବନ୍ଦକାରୀମାନଙ୍କ ସହିତ ଭିଡ଼ା ଓଟାରେ ନାକକାନ ଖଣ୍ଡିଆ କରି ଲିକୋପ୍ଲାଷ୍ଟର ଲଗେଇ ବୁଲୁଥାନ୍ତି । ମଝିରେ ମଝିରେ ବଡ଼ ଅଫିସରଙ୍କ ଗର୍ଜନ ଶୁଣିବାକୁ ମିଳୁଥାଏ—"ଖବର କୁଆଡ଼େ ଗଲା ଜଲଦି ଦିଅ, ଉପରକୁ ଯିବାକୁ ଅଛି" ।

ଏଣେ ବଡ଼ବଡ଼ ବ୍ୟବସାୟୀମାନେ କୌଣସିମତେ କ୍ଲବ ଆଉ ରେଷ୍ଟୁରାଣ୍ଟରେ ପଶି ବିୟର ପିଇ, ମଜାଗପରେ ଦିନଟି କାଟୁଥାନ୍ତି । ପୁଣି ସାମ୍ବାଦିକ ବନ୍ଧୁମାନେ ପ୍ରଥମେ ଟିକିଏ ମନ୍ଦରରେ ବୁଲଚଲ କଲାପରେ ଖାଲି ଫୋନ ପାଖରେ ବସି "କଅଣ ହେଲା, କିଛି ଖବର ଅଛି ?" ପଚାରିବାରେ ଲାଗିଥାନ୍ତି । ଏତେବଡ଼ ଗୋଟାଏ "ଭାରତ ·ବନ୍ଦ"ରେ କିଛି ଗୋଟାଏ ଘଟଣା ନ ଘଟିଲେ କି ଖବର ସେମାନେ ଛାପିବେ ? ସେଥିପାଇଁ ସେ ଖାଲି ମନେ ମନେ ଭଗବାନଙ୍କୁ ଡ଼ାକୁଥାନ୍ତି— "ଗୋଟେହେଲେ ଘଟଣା ଘଟୁ" ହେ ପ୍ରଭୁ, ନଡ଼ିଆ ପୁଲିସ ମୁଣ୍ଡରେ ଭାଙ୍ଗିବୁ ପଛେ ଗୋଟେ ଘଟଣା ଘଟାଇ ଦିଅ" ।

ଇନ୍ଦ୍ର ଦେଖିଲେ 'ବନ୍ଦ ଦିନ'ଟି ବିଭିନ୍ନ ଲୋକପାଇଁ ଭିନ୍ନ ଭିନ୍ନ ସ୍ୱାଦୁର । ବେଶ ଉପଭୋଗ୍ୟ ।

( ୩୪)

'ଭାରତବେଲା ବନ୍ଦ' ସରିଲା । ଇନ୍ଦ୍ରପୁଣି ରାଜଧାନୀ ଫେରିଲେ । ସେଦିନ ବୁଲି ବୁଲି ସେ ଯାଇ ମ୍ୟୁନିସିପାଲିଟି ଅଫିସ ପାଖେ ପହଞ୍ଚିଲେ । ସେଠାରେ ଏତେ ଲୋକଙ୍କ ଭିଡ଼ ଦେଖି ଇନ୍ଦ୍ର ଭାବିଲେ, ମ୍ୟୁନିସିପାଲିଟି ଅଫିସ ପାଖେ ତ ସାଧାରଣତଃ ଭିଡ଼ ହୁଏ । କିନ୍ତୁ ହଠାତ୍ ଏତେ ଧୋବଧାଉଳିଆ, ମଲମୁଣ୍ଡିଆ ଲୋକଙ୍କୁ ଏକାଠି ଦେଖି ତାଙ୍କର ମନରେ ଟିକିଏ ସନ୍ଦେହ ହେଲା । ସେ ଯାଇ ଭିଡ଼ ଭିତରେ ଜଣେ ବାବୁଙ୍କୁ ଏ ବିଷୟରେ ପଚାରିଲେ ।

ତାଙ୍କ କଥାଶୁଣି ବାବୁ ଜଣକ ମ୍ୟୁନିସିପାଲିଟିର ପବ୍ଲିକ ନୋଟିସ ବୋର୍ଡ଼ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ, କିଛି ଦେଖି ପାରୁନା ?

ଇନ୍ଦ୍ର ଉପରକୁ ଚାହିଁଲେ । ନୋଟିସ ବୋର୍ଡରେ ଗୁଡ଼ାଏ ନାଁ, ପ୍ଲଟ ନମ୍ବର, ତା'ସାଙ୍ଗକୁ ଟଙ୍କା । ଇନ୍ଦ୍ର ମୁହଁ ତଳକୁ କଲାପରେ ଭଦ୍ରଲୋକଟି କହିଲେ "କିଛି ବୁଝିପାରିଲେନି ବୋଧେ ! ଆମ ମ୍ୟୁନିସିପାଲିଟି ଆଜିପର୍ଯ୍ୟନ୍ତ ଶୋଇଥିଲା । ଏଇ ବର୍ଷ ହଠାତ୍ ଘର ଟିକସ ଚାରିଗୁଣରୁ ପାଞ୍ଚଗୁଣକୁ ବଢ଼ାଇ ଦେଲା । ଯେଉଁ ଲୋକ ଚାରିଶହ ଟଙ୍କା ଟିକସ ଦଉଥିଲା ସେ ଏବେ ଦୁଇହଜାର ଘରେ ଟିକସ ଦବ । ସରକାର ଯାହା କହିବେ, ଆମେ ସବୁ ମୁଣ୍ଡପାତି ଦେଇଦେବୁ, ଏଇଟା କି ପ୍ରକାର ନ୍ୟାୟ ? ସୁପ୍ରିମକୋର୍ଟର ଗୋଟିଏ ପ୍ରକାର 'ଡିସିସନ' ଘର ଟିକସ ଉପରେ ଥିଲା-ବେଳେ, ମ୍ୟୁନିସିପାଲିଟିର ନିର୍ଦ୍ଦେଶ ପୁରା ଅନ୍ୟ ପ୍ରକାର । ଲୋକମାନଙ୍କୁ ଜାଣିଶୁଣି

ଅସୁବିଧା ଭିତରକୁ ଟାଣିନେବା କିମ୍ବା ଲିଟିଗେସନ ଭିତରକୁ ପୂରାଇବାଟା ଠିକ୍ ନୁହେଁ ।

ତା'ଛଡ଼ା ମ୍ୟୁନିସିପାଲିଟି ତରଫରୁ ଘର ଟିକସ ନିର୍ଦ୍ଧାରଣ କରିବା ପାଇଁ ଗୋଟିଏ, 'ଭାଲୁଏସନ ଅର୍ଗାନାଇଜେସନ' ଅଛି । ଏହାର ମୁଖ୍ୟ ଅଫିସର ଭାବେ ଜଣେ ଓ. ଏ ଏସ୍ କ୍ଲାସ ଓ୍ୱାନ ଅଫିସର ଅଛନ୍ତି । ତାଙ୍କୁ ସାହାଯ୍ୟ କରିବା-ପାଇଁ ମଧ୍ୟ ବହୁ ଜୁନିୟର ଇଞ୍ଜିନିୟର ଅଛନ୍ତି । ସେମାନେ ଏସବୁ ବିଷୟରେ ତଦାରଖ କରି ଘରମାଲିକଙ୍କୁ କେତେ ଟଙ୍କା ଟିକସ ବାବଦକୁ ଦବାକୁ ହେବ, ଠିକ୍ କରି କହିଥାନ୍ତି । ଏବେ ସରକାରଙ୍କ ନିର୍ଦ୍ଦେଶ ଏବଂ ସୁପ୍ରିମକୋର୍ଟ ଡିସିସନ ଭିତରେ ତଫାତ ଥିବା ହେତୁ ଲୋକମାନେ କହୁଛନ୍ତି ଏମାନଙ୍କ ଭାଲୁଏସନ ଠିକ୍ ବାଟରେ ହୋଇନାହିଁ । ତେଣୁ ଘରମାଲିକ ମାନଙ୍କୁ ବହୁତ ଟଙ୍କା ଏବାବଦକୁ ଦବାକୁ ପଡ଼ିବ । ଆମେମାନେ ଏହାର ଅବ୍‌ଜେକସନ କରିବାକୁ ଏଠାକୁ ଆସି ଉପଯୁକ୍ତ ଫରମରେ ଦସ୍ତଖତ କରି ଦେଉଛୁ । ଆମମାନଙ୍କର ଅନୁରୋଧ—ସରକାର ଏହାର ପୁନର୍ବିଚାର କରି ଠିକ୍ ଟିକସ ବସାଇବେ ।"

ଇନ୍ଦ୍ର ଭଦ୍ରଲୋକଙ୍କ କଥା ଶୁଣି କହିଲେ—ଆମ୍ଭେ ଯେତେବେଳେ ଭଞ୍ଜନଗର ଗସ୍ତରେ ଯାଉଥିଲୁ, ସେତେବେଳେ ଭଞ୍ଜନଗର ଏନ୍: ଏସ୍. ସି, ଅଞ୍ଚଳରେ ଲୋକମାନଙ୍କ ଉପରେ ବସିଥିବା ଘରଟିକସ ବିଷୟରେ ଶୁଣିଥିଲୁ । ସେମାନେ ମଧ୍ୟ ସେଠାରେ ଏହାର ପ୍ରତିବାଦ କରିଥିଲେ । ମାତ୍ର ତାଙ୍କର ଅନୁରୋଧ ଶୁଣାଯାଇ ନଥିଲା । ପରେ ଭୁବନେଶ୍ୱର, କଟକବାଲା ଏହାର ପ୍ରତିବାଦ କଲେଣି । ଏଠାରେ ବହୁତ ଶିକ୍ଷିତ ଲୋକ, ଅବସର ଗ୍ରହଣ କରିବା ଉଚ୍ଚପଦସ୍ଥ ଅଫିସର ଅଛନ୍ତି । ସେମାନେ ଏହାର ପ୍ରତିବାଦ କରୁଛନ୍ତି । ସେଥିରେ କିଛି ଅସୁବିଧା ନଥିଲେ, ଏମାନେ ଏହାର ପ୍ରତିବାଦ କରିନଥାନ୍ତେ । ତେଣୁ ଉଚିତ ହେବ, ଲୋକମାନଙ୍କର ଆପତ୍ତିକୁ ନିୟମ ଭିତରେ ଶୁଣି ତାହାର ପ୍ରତିକାର କରିବା । ନହେଲେ ଏହା ଅନ୍ୟ ମାନଙ୍କ ଅଶାନ୍ତି ସୃଷ୍ଟି କରିବାପାଇଁ ସୂତ୍ର ଯୋଗାଇବ ।

ଇନ୍ଦ୍ରଙ୍କ କଥାଶୁଣି ଭଦ୍ରବ୍ୟକ୍ତି ଜଣକ କହିଲେ, ଦେଖାଯାଉ ସରକାର କଅଣ କରୁଛନ୍ତି ? ଆମ ଘରପାଖେ ଷ୍ଟ୍ରିଟ୍ ଲାଇଟ୍ ବର୍ଷ ବର୍ଷ ଧରି ନଥିଲେ ମଧ୍ୟ ଏହାର ପ୍ରତିକାର ମ୍ୟୁନିସିପାଲିଟି କରେନି । ପୁଣି ଶହୀଦନଗର, ସତ୍ୟନଗରରେ ପାଣି ଯିବାପାଇଁ ଉପଯୁକ୍ତ ଡ୍ରେନର ବ୍ୟବସ୍ଥା ନାହିଁ । ଗୃହଅଢ଼େ ମଇଳାପଡ଼ି ମଶା ମାଛିର ପ୍ରାଦୁର୍ଭାବ କହିଲେ ନସରେ । ମ୍ୟୁନିସିପାଲିଟି ଯେତେବେଳେ ଟିକସ ନଉଛି, ଏସବୁ କରିବା ତାଙ୍କର କର୍ତ୍ତବ୍ୟ । କିନ୍ତୁ ସେସବୁ ବ୍ୟବସ୍ଥା ନକରି ଖାଲି ଟିକସ ବୃଦ୍ଧି । ସେତେବେଳକୁ ଲୋକଙ୍କ ଗୁହାରି ଶୁଣିବ କିଏ !

ମ୍ୟୁନିସିପାଲିଟି ଅଫିସ ଦୁଆର ମୁହଁରୁ ବାହାରିଲା ବେଳକୁ ଇନ୍ଦ୍ର ଦେଖିଲେ, ନୂଆ "ଟାଉନବସ" ଗୋଟେ ଅଫିସ ପାଖେ ରହିଲା ।

ଏଇ ମାସକ ତଳେ ମ୍ୟୁନିସିପାଲିଟି ତରଫରୁ ଚାରିଗୋଟି "ନୂଆ ଟାଉନ-ବସ" ଚାଲୁଛି ଏବଂ ଭୁବନେଶ୍ୱର ମ୍ୟୁନିସିପାଲିଟି ଅଞ୍ଚଳରେ ସମୁଦାୟ ବାରଗୋଟି ବସ ଚାଲିଛି । ବାକି ଆଠଗୋଟି ଟାଉନବସ ଓ.ଆର.ଟି ଏବଂ ଓ.ଏସ୍ ଆର.ଟି.ସି,ର ବସ । ବହୁ ଆଗରୁ "ଟାଉନବସ" ଚଳେଇବା ପାଇଁ ଜନସାଧାରଣଙ୍କ ତରଫରୁ ଦାବୀ ହୋଇ ଆସୁଥିଲେ ମଧ୍ୟ ବିଭିନ୍ନ କାରଣ ଦର୍ଶାଇ ଓ.ଆର ଟି ଏବଂ ଘରୋଇ ନାଲି ବସ ଯଥେଷ୍ଟ ପରିମାଣରେ ଚାଲୁ ନଥିଲା । ସହରବାସିନ୍ଦାମାନେ ରିକ୍ସାବାଲାଙ୍କ ଅତ୍ୟାଚାରରେ ଦହଗଞ୍ଜ ହେଉଥିଲେ । ଦୁଇନମ୍ବର ମେନ୍ ବସ୍‌ଷ୍ଟାଣ୍ଡରୁ ଆଠ ନମ୍ବର ଇଉନିଟକୁ ଆସିବାକୁ ହେଲେ ରିକ୍ସାବାଲାମାନେ ପାଞ୍ଚ ଟଙ୍କାରୁ, ସମୟ ଆଉ ଲୋକ ଦେଖି ଆଠ ଟଙ୍କା ପର୍ଯ୍ୟନ୍ତ ନେଉଥିଲେ । ଶହୀଦ ନଗର, କମ୍ପା ଲକ୍ଷ୍ମୀସାଗର କଥା ନକହିବା ଭଲ । ଘରୋଇ ବସ କମ୍ପାନୀ ଯେଉଁ କାରଣମାନ ଦର୍ଶାଉଥିଲେ, ତା' ମଧ୍ୟରୁ ମୁଖ୍ୟ କାରଣ ଥିଲାଯେ ଏ ବସ ଚଳାଇଲେ କମ୍ପାନୀର ଲାଭ ନହୋଇ ଯଥେଷ୍ଟ ପରିମାଣରେ କ୍ଷତିହେବ । କ୍ଷତି କଥା ଶୁଣି ସରକାର ଟାଉନବସ ଚଳେଇ ବାକୁ ଚାହୁଁ ନଥିଲେ ।

ଏବେ ଯେଉଁ ବାରଗୋଟି ବସ ଚାଲୁଛି, ତା'ମଧ୍ୟରୁ ମ୍ୟୁନିସିପାଲିଟିର ଚାରିଗୋଟି ବସ ସହରର ବହୁ ପେରିଫେରି ଅଞ୍ଚଳକୁ ଯାତାୟତ କରୁଛି । ଯଥା ଗାଡ଼କଣା, ସୁନ୍ଦରପୁର, କପିଳେଶ୍ୱର, ଖଣ୍ଡଗିରି ଇତ୍ୟାଦି । ମାତ୍ର ଓ ଆର.ଟି. ଏବଂ ନାଲି କମ୍ପାନୀର ବସ ସହରର ଜନଗହଳି ରାସ୍ତାମାନଙ୍କରେ ଯାତାୟତ କରୁଛି । ବସମାନଙ୍କ କାପାସିଟି ଦୃଷ୍ଟିରୁ ସବୁ ବସଗୁଡ଼ିକ ସମାନ । ଏଇ ମାସକ ଭିତରେ ବସଗୁଡ଼ିକର ଦୈନିକ ଇନ୍‌କମରୁ ଜଣାପଡ଼ୁଛି ଯେ,ମ୍ୟୁନିସିପାଲିଟିର ଗୋଟିଏ ବସ ଦିନକୁ ୫୩୦୦ଙ୍କା ଇନକମ କଲାବେଳେ, ଓ. ଆର ଟି ଏବଂ ନାଲିକମ୍ପାନୀ ବସ ମାତ୍ର ୫୮୦୦ରୁ ୧୦୦୦ ଟଙ୍କା ପର୍ଯ୍ୟନ୍ତ ଇନକମ କରୁଛନ୍ତି ।

ବର୍ତ୍ତମାନ ମ୍ୟୁନିସିପାଲିଟି ଟାଉନବସ, ଘରୋଇ କମ୍ପାନୀ ବସମାନଙ୍କ ଦକ୍ଷତା ଉପରେ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଛି । ଏଇଥିରୁ ଜଣାପଡୁଛି ଯେ, ଆଜକୁ କେତେବର୍ଷ ଧରି, କମ୍ପାନୀମାନେ କାହିଁକି ବସ ଚଳେଇବା ସପକ୍ଷରେ ମତପୋଷଣ କରୁନଥିଲେ । ଗୋଟିଏ ବସରେ ଦୈନିକ ଦୁଇହଜାର ଟଙ୍କା କ୍ଷତି ବିଷୟରେ ଓ. ଆର. ଟି. ଏବଂ ଓ ଏସ ଆର ଟି. ସି ର ଅଫିସରମାନେ ତଦନ୍ତ କରି କାରଣ ବାହାର କରିବା ଉଚିତ୍ । ଏ କମ୍ପାନୀମାନଙ୍କର କ୍ଷତି, ଜନତାର କ୍ଷତି ଏବଂ ଏହି

କ୍ଷତି ଭୌତିକ ଶରୀରରେ ସରକାରଙ୍କ ପକ୍ଷେ ନିତାନ୍ତ କ୍ଷତିକାରକ । ବର୍ତ୍ତମାନ ଜନତା ଦାବୀ କଲେଣି, ପ୍ରତ୍ୟେକ ମାସରେ ମ୍ୟୁନିସିପାଲିଟି ଗୋଟିଏ ବସରୁ କେତେ ଇନକମ କରୁଛି ଏବଂ ଅନ୍ୟ ଟାଉନବସମାନ (ଓ ଆର.ଟି , ନାଲି କମ୍ପାନୀ) କେତେ ଇନକମ୍ କରୁଛି, ତାହା ଖବରକାଗଜ ଜରିଆରେ ଜନସାଧାରଣଙ୍କୁ ଜଣାନ୍ତୁ । ଜନତା ଯେତେବେଳେ ପଇସା ଦଉଛି, ସେ ଏ ବିଷୟରେ ଜାଣିବା ଉଚିତ । ଖାଲି ବସ ଭଡ଼ା ବଢ଼େଇ ଦେଲାବେଳେ ଜଣେଇଦେଲେ ହେବନି ।

ଇନ୍ଦ୍ର ଜାଣିବାକୁ ପାଇଲେ ଯେ, ମ୍ୟୁନିସିପାଲିଟି ଏକଜିକ୍ୟୁଟିଭ ଅଫିସର ଏବଂ ତାଙ୍କର କର୍ମଚାରୀ ଶ୍ରୀ ମୁଜାପଣ୍ଡା ଯେ କି ବସ ଚଳାଚଳ ଦାୟିତ୍ୱ ନେଇଛନ୍ତି, ତାଙ୍କର ସିନ୍ସିୟରିଟି ଯୋଗୁ ଏହା ସମ୍ଭବ ହୋଇ ପାରିଛି । ଏଇଥିରୁ ଜଣାପଡୁଛି ଯେ, ଯଦି ବିଭିନ୍ନ ଟାଉନ ବସର ମାସିକ ଇନକମ ବିଷୟରେ ମିଳିଥିବା ଖବର ଠିକ୍ ହୁଏ ତା'ହେଲେ ସରକାରୀ ଏବଂ କରପୋରେସନ ବସରେ କେଉଁ ପରିମାଣରେ କ୍ଷତି ଘଟୁଛି, ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ସବୁଠାରୁ ଭଲ ହେବ, ଯଦି ତିନିଗୋଟି ଯାକ ସେମାନଙ୍କ ବସମାନଙ୍କର ମାସିକିଆ "ଇନକମ" ଖବରକାଗଜ ଜରିଆରେ ସମସ୍ତଙ୍କୁ ଜଣାଇ ଦେଇପାରନ୍ତେ । ଏ ବିଷୟରେ ଖବର କାଗଜରେ ଜଣାଇଦେଲେ କମ୍ପାନୀର କୌଣସି ଗୁପ୍ତ ଖବର ପଦାରେ ପଡ଼ିଯିବନି ବରଂ କମ୍ପାନୀ ଖରାପ ବାଟରୁ ଭଲ ବାଟକୁ ଆସିବ ।

( ୩୭ )

ସେଦିନ ବସାକୁ ଫେରିଲା ବାଟରେ ଇନ୍ଦ୍ର ଦେଖିଲେ ଦୁଇ ତିନିଜଣ ଲୋକ ସେମାନଙ୍କ ସାଇକେଲ ହାଣ୍ଡଲ ଦୋହଡ଼ରେ ଗୋଟେ ମେଣ୍ଢା ଆଉ ପଛ କାରିୟରରେ ଗୋଟେ ଗୋଟେ ଛେଳି, ଅଖା ବସ୍ତା ଆଉ ଟୋକେଇରେ ବାନ୍ଧି ଚାଲିଥାନ୍ତି । କଅଁଳା ଜନ୍ତୁ ଗୁଡ଼ାକ ବେକ ଭାଙ୍ଗି ରାସ୍ତାରେ ମେଁ ମେଁ ରଡ଼ି ଛାଡୁଥାନ୍ତି । ହଜାର ହଜାର ଲୋକଙ୍କ ସାମ୍ନାରେ ରାଜପଥରେ ଏମାନଙ୍କ ସାଇକେଲ ଛୁଟିଆଏ ରସୁଲଗଡ଼ ଛକ ଆଡ଼େ ।

ଇନ୍ଦ୍ର ଚାଲି ଚାଲି ରସୁଲଗଡ଼ (ଭୁବନେଶ୍ୱର ସହର ଉପକଣ୍ଠରେ ରସୁଲଗଡ଼ ବଜାର ଅବସ୍ଥାପିତ ) ଛକ ପାଖେ ପହଞ୍ଚି ଦେଖିଲେ ରସୁଲଗଡ଼ ଛକପାଖ ଏବଂ ତା ଆଗକୁ ଜାତୀୟ ରାଜପଥ ଏବଂ ପୁରୀ ଜଗନ୍ନାଥ ସଡ଼କ କଡ଼ରେ ସମସ୍ତ ଯାତ୍ରୀମାନଙ୍କ ସମ୍ମୁଖରେ ଦିନ ଚାରିଟାବେଳେ ଗୋଟାକ ପରେ ଗୋଟାଏ ଏଇ ମେଣ୍ଢା ଛେଳିପରି ନିରୀହ ପ୍ରାଣୀକୁ ବଧ କରି ମାଂସ ବିକ୍ରୀ ଚାଲିଛି । ସମସ୍ତେ ଜାଣନ୍ତି ମେଣ୍ଢା,

ଛେଳି ଜନ୍ତୁମାନେ ମଣିଷ ପରି ଜନ୍ତୁମାନଙ୍କର ଖାଦ୍ୟ । ଏଇ ଜନ୍ତୁମାନେ ଖାଦ୍ୟ ପାଇଁ ବ୍ୟବହୃତ ହୋଇଥିବା ଯୋଗୁ ସେମାନଙ୍କୁ ବଧ କରିବା ପାଇଁ ମ୍ୟୁନିସିପାଲିଟି ତରଫରୁ ସ୍ୱତନ୍ତ୍ର ନିୟମମାନ ଅଛି । ତା'ଛଡ଼ା ଜନ୍ତୁମାନେ ବଞ୍ଚିଥିବା ପର୍ଯ୍ୟନ୍ତ ସେମାନଙ୍କୁ ଯନ୍ତ୍ରଣା ନଦେବା ପାଇଁ ପ୍ରିଭେନସନ୍ ଅଫ କ୍ରୁଏଲିଟି ଟୁ ଆନିମଲ ଆକ୍ଟ ପ୍ରଣୟନ କରାଯାଇଛି । ଏପରିକି ପୁଲିସ ଆଇନର ୩୪ ଧାରାରେ କୁହାଯାଇଛି ଯେ 'ଯଦି କୌଣସି ବ୍ୟକ୍ତି ସହରର ରାସ୍ତା, ରାସ୍ତା ପାଖ ଖୋଲା ପଡ଼ିଆ, ଷ୍ଟ୍ରିଟ ଇତ୍ୟାଦିରେ ଜୀବଜନ୍ତୁଙ୍କୁ ବଧକରେ କିମ୍ବା ସେମାନଙ୍କ ପ୍ରତି ନିଷ୍ଠୁରତା ଅବଲମ୍ବନ କରେ, ତାହେଲେ ସେଇ ଅଞ୍ଚଳର ପୋଲିସ ଅଫିସର ଏବଂ ମାଜିଷ୍ଟ୍ରେଟ ଯାହାଙ୍କ ସାମ୍ନାରେ ଏପରି ଘଟଣା ଘଟୁଛି, ସେମାନେ ବିନା ଓ୍ୱାରେଣ୍ଟରେ ଅରେଷ୍ଟ କରି ପାରିବେ । ତା'ଛଡା ଦୋଷ ସାବ୍ୟସ୍ତ ହେଲେ ଏମାନେ ଜୋରିମାନା ଦଣ୍ଡ ପାଇବେ ଏପରିକି ଜେଲ୍ ଦଣ୍ଡ ମଧ୍ୟ ଦିଆଯାଇପାରିବ ।

ପୁଲିସ ଆଇନର ୩୪ ଦଫାକୁ ଛାଡ଼ିଦେଲେ, "ପ୍ରିଭେସନ ଅଫ କ୍ରୁଏଲିଟି ଟୁ ଆନିମଲ" ଆକ୍ଟର ୧୧ ଧାରାରେ କୁହାଯାଇଛି ଯେଉଁ ବ୍ୟକ୍ତି ବିନା କାରଣରେ କୌଣସି ଜନ୍ତୁକୁ ଯନ୍ତ୍ରଣା ଦିଏ, ଏପରିଭାବେ ବାନ୍ଧିକରି ନିଏ, ଯେଉଁ ପରିସ୍ଥିତିରେ ଏଇ ଜନ୍ତୁମାନେ ଫ୍ରି ମୁଭମେଣ୍ଟ କରିବାକୁ ସୁବିଧା ପାଆନ୍ତିନି, ସେମାନଙ୍କ ବିରୁଦ୍ଧରେ ଏଇ ଧାରାରେ ଆକସନ ନିଆଯାଇ ପାରିବ ।

ଇନ୍ଦ୍ର, ଏ ସମସ୍ତ ଘଟଣା ଦେଖି ଅନୁଭବ କଲେ ଯେ, ଭୁବନେଶ୍ୱର ପରି ମନ୍ଦିରମାଳିନୀ ଦେବପୀଠ ସହର ଭିତରେ ଏବଂ ଶ୍ରୀଜଗନ୍ନାଥ ସଡ଼କ ପାର୍ଶ୍ୱରେ ହଜାର ହଜାର ଯାତ୍ରୀବାହୀ ବସରେ ଆସୁଥିବା ଯାତ୍ରୀମାନଙ୍କ ଆଖି ଆଗରେ, ଏଇ ନିରୀହ ଜନ୍ତୁମାନଙ୍କୁ ଯେପରି ଭାବରେ ଆଣିଲାବେଳେ ଯନ୍ତ୍ରଣା ଦିଆଯାଉଛି ଏବଂ ସେଇ ଜନ୍ତୁମାନଙ୍କୁ ଠିଆ କରି ତାଙ୍କରି ସାମ୍ନାରେ ଅନ୍ୟ ଜନ୍ତୁମାନଙ୍କୁ ବଧ କରାଯାଉଛି, ଏହାଠୁ ବଳି ନିଷ୍ଠୁରତା କଅଣ ଥାଇପାରେ । ଯଦି ଏଇ ନିଷ୍ଠୁରତାକୁ ବନ୍ଦକରିବାପାଇଁ ଦୁଇ ଦୁଇ ଗୋଟି ଆଇନ ପ୍ରଣୟନ କରାଗଲା ଏବଂ ସେହି ଆଇନ ଯଦି କାର୍ଯ୍ୟକାରୀ ନ ହେଲା ତାହେଲେ ଏପରି ଆଇନ ପ୍ରଣୟନ କରାଯାଉଛି କାହିଁକି ? ଏବଂ ଏହି ଆଇନକୁ ଜାରି କରିବାପାଇଁ ଉଦ୍ଦିଷ୍ଟ ସଂସ୍ଥାମାନ କରୁଛନ୍ତି କଅଣ ?

ଏହା ସତ୍ୟ ଯେ ଏଇ ଜନ୍ତୁମାନଙ୍କ ମାଂସ ବହୁଲୋକଙ୍କର ଅତିପ୍ରିୟ ଖାଦ୍ୟ, ମାତ୍ର ଏଥିଲାଗି ଯେ ଏମାନଙ୍କୁ ନିଷ୍ଠୁର ନିର୍ଯ୍ୟାତନା ଦେଇ 'ବଧ' କରାଯିବ ଏହା ସାମ୍ପ୍ରତିକ ସମାଜରେ କିପରି ସମ୍ଭବ ହେଉଛି ?

ତେଣୁ ମ୍ୟୁନିସିପାଲିଟି ଏବଂ ପୁଲିସ ଅଫିସରମାନଙ୍କୁ ଜନସାଧାରଣଙ୍କ ତରଫରୁ ଅନୁରୋଧ କରାଯାଉ, ଏପରି ବେଆଇନ କାମକୁ ସେମାନେ ବନ୍ଦ କରନ୍ତୁ । ଯେଉଁମାନେ ତାଙ୍କ କହିବା ସତ୍ତ୍ୱେ ସେମାନଙ୍କ ଉପଦେଶକୁ ନମାନିବେ, ତାଙ୍କ ବିରୁଦ୍ଧରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଉ । ବହୁ ଜନସାଧାରଣ ଏ ସମସ୍ତ ଅମାନୁଷିକ କାର୍ଯ୍ୟ ଦେଖି ବ୍ୟଥିତ ହେଉଥିଲେ ମଧ୍ୟ ସୁବିଧା ନ ଥିବା ଦୃଷ୍ଟିରୁ କିଛି କହିପାରୁ ନାହାନ୍ତି । ଆଶା ଏଥିପ୍ରତି କିଛି କାର୍ଯ୍ୟାନୁଷ୍ଠାନ କରାହେବ ।

( ୩୭ )

ଜଣେ ଭଦ୍ରଲୋକଙ୍କ ଅନୁରୋଧ ରକ୍ଷାକରି ସନ୍ଧ୍ୟା ସାତଟା ବେଳକୁ ଇନ୍ଦ୍ର ତାଙ୍କ ଘରକୁ ଗଲେ । ଯିବା ଆସିବା ବାଟରେ ତାଙ୍କ ସହିତ ବହୁତ ପରିଚିତ । ସାତଟା ବେଳକୁ ଇନ୍ଦ୍ର ଭଦ୍ରଲୋକଙ୍କ ଘରେ ପହଞ୍ଚି ଦେଖିଲେ ଘରଆଡ଼େ ଅନ୍ଧକାର । ଘର ପାଖକୁ ଯିବା ପୂର୍ବରୁ ଗେଟ୍ ଦୁଆର ମୁହଁରୁ ଝୁଣ୍ଟି କଚଡ଼େ ପଡ଼ିଲେ । ଗୋଡ଼ ବୁଢ଼ା ଆଙ୍ଗୁଠି ନଖଟା ଇଟାରେ ଛେଚି ହୋଇଯାଇ ରକ୍ତ ଜମିଗଲା । ପିଣ୍ଡା ଉପରକୁ ଉଠି ଭଦ୍ରଲୋକଙ୍କ ନାମଧରି ଡାକିଲାବେଳକୁ ଘର ଭିତରୁ ଭେଁ, ଭାଁ ରଡ଼ି ଶୁଭିଲା । ପିଲାମାନଙ୍କ ମଧ୍ୟରୁ ଜଣେ କିଏ ଆଲୁଅ ଗଲାପରେ ଲଣ୍ଠନ ଖୋଜୁ ଖୋଜୁ ଆଉ ଗୋଟେ ପିଲାସାଙ୍ଗେ ଧକ୍କା ହେବାରୁ ତା ମୁଣ୍ଡ ଠୋକିନା ପିଚି ହୋଇଗଲା । ସେଥିଲାଗି ସେ ରଡ଼ି ଛାଡ଼ୁଥାଏ । ତା ରଡ଼ି ଶୁଣି ଘରର ଘରଣୀଙ୍କର ପାଟି ମଧ୍ୟ ପିଲାଠାରୁ ଉଚ୍ଚ ସ୍ୱରରେ ଶୁଣାଗଲା । ଘରଣୀ ପିଲାଙ୍କ ପିତାଙ୍କୁ ବହେ ଶୋଧିଲା ପରେ, ବିଜୁଳି ଡିପାର୍ଟମେଣ୍ଟର ଶ୍ରାଦ୍ଧ କରିବାକୁ ଲାଗିଲେ ।

ଏଇ ସମୟରେ ଗୃହକର୍ତ୍ତା ମହାଶୟ ବାହାରକୁ ବାହାରି, ଇନ୍ଦ୍ରଙ୍କୁ ବାରଣ୍ଡାରେ ଠିଆ ହୋଇଥିବାର ଦେଖି ଦୁଃଖ ପ୍ରକାଶ କରି, ଘର ଭିତରୁ ଦୁଇଟି ଚଉକି ଆଣି ବାହାରେ ପକାଇଲା ପରେ ଇନ୍ଦ୍ରଙ୍କୁ ବସିବାକୁ ଅନୁରୋଧ କଲେ ।

ଗୃହସ୍ୱାମୀ, ତାଙ୍କ ସ୍ତ୍ରୀଙ୍କ ଗର୍ଜ୍ଜନ ଇନ୍ଦ୍ର ଶୁଣିଥିବା ଠଉରେଇ କହିଲେ, ବୁଝିଲେ ଆଜ୍ଞା, ବିଜୁଳି କାଟ ହେବାଠାରୁ ଘରଣୀମାନେ ବେଶୀ ଅସୁବିଧାରେ ପଡ଼ୁଛନ୍ତି । ଏଇ ଦେଖନ୍ତୁ ସନ୍ଧ୍ୟା ସାତରୁ ଆଠଟା ପନ୍ଦର ପର୍ଯ୍ୟନ୍ତ ଆମ ଏପଟ ଲାଇନ ଗଲା । ଏଇ ସମୟଟି ପିଲାମାନଙ୍କର ପାଠ ପଢ଼ା ସମୟ । ଟିଉସନ ମାଷ୍ଟର ଆସିବା ବେଳ । ଯାହାଘରେ ଛୋଟ ଛୋଟ ପିଲା ଅଛନ୍ତି, ସେମାନେ ଦୁଧ ପିଇ ଶୋଇବା ସମୟ । ତା'ଛଡ଼ା ଯାହା ଘରକୁ ଯେ ଯିବ, ସାଧାରଣତଃ ଏଇ ସମୟରେ ଯା'ଆସ କରନ୍ତି । ଟି.ଭି. ପ୍ରୋଗ୍ରାମ କଥା ଛାଡ଼ । କିନ୍ତୁ ସନ୍ଧ୍ୟା ଛ'ଟାଠାରୁ ଭିନ୍ନ ଭିନ୍ନ ସମୟରେ ଭିନ୍ନ

ଭିନ୍ନ ଯାଗାରେ ବିଜୁଳିକାଟ ଯୋଗୁ ସମସ୍ତେ ହଇରାଣ । ବଜାରରେ କିରୋସିନ, କ୍ୟାଣ୍ଡେଲର କଳାବଜାର । ଲୋକମାନେ ଜାଣିଶୁଣି ଦୋକାନୀମାନଙ୍କ ହାତ ଗୋଡ଼ ଧରି ଚୋରାରେ ଅଧିକା ପଇସା ଦେଇ ଏସବୁ ଜିନିଷ ଆଣୁଛନ୍ତି । କମ୍ପେନ କଲେ ଘରେ ଅନ୍ଧାରରେ ବସିବାକୁ ହେବ । ପିଲାମାନଙ୍କ ପରୀକ୍ଷା ସମୟ । ସହରମାନଙ୍କରେ ସିନା ଏପରି, ଗାଁଗଣ୍ଡା କଥା ଛାଡ଼ନ୍ତୁ । କିଏ ସେମାନଙ୍କ କଥା ଶୁଣୁଛି ? ମନଇଚ୍ଛା ବିଜୁଳିକାଟ । ଚାରିଘଣ୍ଟା, ପାଞ୍ଚଘଣ୍ଟା, ଦିନେ ଦିନେ ୨୪ ଘଣ୍ଟା ।

ଇନ୍ଦ୍ର ପଚାରିଲେ, 'କାହିଁକି ? ଓଡ଼ିଶାତ ସରପ୍ଲସ ଅଞ୍ଚଳ ଥିଲା ?'

ତାଙ୍କ କଥା ଶୁଣି ଭଦ୍ରଲୋକ ଜଣଙ୍କ କହିଲେ—"ହଁ ଥିଲା । ମାତ୍ର ଏବେ ନାହିଁ । ଅବଶ୍ୟ କଳକାରଖାନା ଏବଂ ବିଜୁଳି ଚାହିଦା ବଢ଼ିଛି । କିନ୍ତୁ ଆମର ଯାହା ବର୍ତ୍ତମାନ ଅଛି,ତାକୁ ଯଦି ଉପଯୁକ୍ତ ଭାବେ ବିନିଯୋଗ କରାଇ ପାରନ୍ତେ ତା'ହେଲେ ଏ ଅବସ୍ଥା ହୁଅନ୍ତାନି । ଦେଖନ୍ତୁ ଆମର ହୀରାକୁଦ ଡ୍ୟାମକଥା । ଏଥିରୁ ଓଡ଼ିଶାର ଯେତିକି ବିଜୁଳିବତି ଦରକାର ତାର ହାରାହାରି ଅଧେ ଠାରୁ ବେଶୀ ମିଳିବା କଥା । ମାତ୍ର ଏଇ କେତେ ବର୍ଷଧରି ଡ୍ୟାମ ଭିତର ପଙ୍କରେ ପୋତିହୋଇ ପଡ଼ିଥିବା ଯୋଗୁ ଯେତିକି ପାଣି ରହିବା କଥା ତା ରହୁନି । ସେଥିଲାଗି ହୀରାକୁଦ ଯେତିକି ପରିମାଣରେ ବିଜୁଳି ଦବା କଥା ସେତିକି ଦେଇ ପାରୁନି ।

ଦକ୍ଷିଣରେ ମାଛକୁଣ୍ଡ ଡ୍ୟାମ କଥା ଦେଖନ୍ତୁ । ଆମ ସରକାର ଆନ୍ଧ୍ର ସରକାରଙ୍କ ସଙ୍ଗେ ହୋଇଥିବା ଚୁକ୍ତିଅନୁଯାୟୀ ଶତକଡ଼ା ୩୦ ପାଣି ଓଡ଼ିଶା ପାଇବା କଥା । ଆନ୍ଧ୍ରବାଲା ଡ୍ୟାମରୁ ଶତକଡ଼ା ୩୦ ପାଣି ଦେଲାପରେ ସୁଇଚ ବନ୍ଦ କରୁଛନ୍ତି । ଖରାଦିନେ ଶତକଡ଼ା ୩୦ ପାଣି ତଳକୁ ଆସିଲେ ସେଥିରୁ କ ବିଜୁଳି ଉତ୍ପନ୍ନ ହେବ ?

ଏଣେ ଦେଖନ୍ତୁ ତାଳଚେର ଥର୍ମାଲ କଥା । କୋଟି କୋଟି ଟଙ୍କା ଖର୍ଚ୍ଚ କରି ଏଠାରେ ଥର୍ମାଲ୍ ଷ୍ଟେସନ ହେଲା । କୋଇଲାରୁ ବିଜୁଳି ବାହାରିବ । ବିଶେଷଜ୍ଞମାନେ କୁଆଡ଼େ କହିଲେ ଏଠାରେ ବହୁ ପରିମାଣରେ କୋଇଲା ଅଛି । ଥର୍ମାଲ ଷ୍ଟେସନ ହଉ । ଷ୍ଟେସନ ହେଲା ଏବଂ ଚାରିଗୋଟି ଟରବାଇନ ବସିଲା । ଏଇ ଚାରିଗୋଟି ଟରବାଇନ ଯଦି ପୂରା ଚାଲିଥାନ୍ତା, ତାହେଲେ ଆମର ବିଜୁଳି ସଙ୍କଟ ଦେଖା ଦେଇନଥାନ୍ତା । ମାତ୍ର ଏ ଟରବାଇନରୁ ଗୋଟିଏ ମଧ୍ୟ ଠିକଭାବେ ଚାଲୁନି । କାରଣରେ ଯନ୍ତ୍ରୀମାନେ କହିଲେ, ଏଠା କୋଇଲା ଖରାପ । ଏ କୋଇଲାରୁ ଏତେ ଧୂଆଁ ବାହାରୁଛି ଯେ, ସେ ଟରବାଇନମାନଙ୍କୁ ଖରାପ କରୁଛି । ତେଣୁ ଟରବାଇନ ଚାଲିପାରୁନି । ତାପରେ ସେମାନେ ସଜେସନ ଦେଲେ ନୂଆ ଧରଣର ମେସିନ ବସିଲେ ଏ ସମସ୍ତ ଅସୁବିଧା ଦୂର ହେବ । ସେମାନଙ୍କ ମତାମତ ଅନୁଯାୟୀ ଆମ

ଦେଶରେ ଉତ୍ପନ୍ନ ହେଉଥିବା କୋଟି କୋଟି ଟଙ୍କାର ମେସିନମାନ ଅଣି ବସିଲ । ଏବେ ସେମାନେ ପୁଣି କହିଲେଣି—ଏ ମେସିନର ଗୁଣାତ୍ମକମାନ ନୀଚ ଧରଣର ହୋଇଥିବା ଯୋଗୁ, ଏଗୁଡ଼ିକ ମଧ୍ୟ କାମ କରୁନି । ବିଦେଶରୁ ମେସିନ ଆସିଲେ ଥର୍ମାଲ ଚାଲିବ ।

ତାଲଚେର ଥର୍ମାଲର ଅବସ୍ଥା ଏପରି । ଜନସାଧାରଣ କଅଣ ଜାଣୁଛନ୍ତି ? ଝାଞ୍ଜପ ତ ଖରାପ । ତାଲଚେର ଥର୍ମାଲର ଏପରି ଅବସ୍ଥା କାହିଁକି ହେଲା, ଏଥିପାଇଁ କିଏ ଦାୟୀ ଜନସାଧାରଣ ଜାଣିବାକୁ ଗୋଟିଏ ତଦନ୍ତ ରିପୋର୍ଟ ଖବର କାଗଜରେ ପ୍ରକାଶ ପାଉ । ଯେଉଁଠି ଦେଶର କୋଟି କୋଟି ଟଙ୍କା ଖର୍ଚ୍ଚ ହେଉଛି, ସେଠି ସମସ୍ତେ ଏ ବିଷୟରେ ଜାଣିବା ଉଚିତ ।

( ୩୮ )

ବିଜୁଳି ଆଲୁଅ କଣ୍ଟା ସାଙ୍ଗକୁ ଟ୍ରାଫିକ ଆଲୁଅ ହଟାପଟାରେ, ଇନ୍ଦ୍ର ପଡି କିଛି ସମୟ ପାଇଁ ଛଟପଟ ହେଲେ । ସେଦିନ ସେ ରିକ୍ସାରେ ଫେରୁଥାନ୍ତି । ସ୍ୱର୍ଗରୁ ଆସିଲାବେଳେ ସେ ମଣିଷ ବୁହା ଗାଡ଼ିରେ ବସିବେନି ବୋଲି ଭାବିଥିଲେ । କିନ୍ତୁ ଏ ମର୍ତ୍ତ୍ୟରେ ବୁଲାବୁଲି କଲାପରେ ସେ ତାଙ୍କର ମତ ପରିବର୍ତ୍ତନ କରି ରିକ୍ସାରେ ବସିବାକୁ ନିଷ୍ପତ୍ତି ନେଲେ ।

ସେଦିନ ବିଜୁଳି ଆଲୁଅ କଣ୍ଟା ସମୟରେ ସେ ରାଜମହଲ ଛକ ପାରିହେଲା-ବେଳକୁ ଟ୍ରାଫିକ ଛକ ପାଖେ, ଗୋଟିଏ ଲୁହାକଣ୍ଟା ମାଡ଼ିଲା ପରେ ରିକ୍ସାଟିଏ ଧରି ଫେରୁଥିଲେ । ଅଧାବାଟରେ ବିଜୁଳି ଆସିଗଲା । ରିକ୍ସା ଏ.ଜି. ଛକ ପାଖେ ପହଞ୍ଚିଲାବେଳକୁ, ଆରପଟୁ ନାଲି ଆଲୁଅ ଜଳି ଉଠିଲା । ନାଲି ଆଲୁଅ ଜଳିଲା, ସବୁଜ ଆଲୁଅ ପରେ । ରିକ୍ସାବାଲା ସେତେବେଳକୁ ଛକ ମଝିରେ । ଟ୍ରାଫିକ ପୁଲିସ "ହେ, ହେ" କହୁ କହୁ ରିକ୍ସା ପଛପଟକୁ ଗୋଟେ ପାହାର ଦେଲା । ସେ ପାହାରର ଅଧେ ଇନ୍ଦ୍ରଙ୍କ ପିଠିରେ ବସିଲା । ଇନ୍ଦ୍ର "ଓହୋ ମରିଗଲି" କହିଲା ବେଳକୁ ଟ୍ରାଫିକ ପୁଲିସ ବିନମ୍ର ସ୍ୱରରେ କହିଲା 'ଆଜ୍ଞା ଭୁଲ ହୋଇଗଲା । ଦେଖୁ ନାହାନ୍ତି, ନାଲି ଆଲୁଅ ଜଳିଲାଣି, ଲୋକମାନେ ଜେବ୍ରା କ୍ରସିଂ ପାଖେ ରହିବା କଥା, କିନ୍ତୁ ଆସି ଛକ ମଝିରେ । ଏଥିରେ ଦୁର୍ଘଟଣା ନହେଲେ ହେବ । ସେଇଥି-ପାଇଁ ସ୍ୱଭାବ ବଶତଃ ବାଡ଼ି ହଲେଇ ହଲେଇ ଆପଣଙ୍କ ଉପରେ ବାଜିଗଲା, କିଛି ଭାବିବେନି ଆଜ୍ଞା ।'

ଇନ୍ଦ୍ର ଭାବିଲେ ସେ ମଣିଷଟଣା ଗାଡ଼ିରେ ବସିବେନ ବୋଲି ଶପଥ ନେଇ-ଥିଲେ । ବୋଧେ ସେ, ସେ ଶପଥ ଭାଙ୍ଗିଲାରୁ ତାଙ୍କ ଉପରେ ପାହାରେ ବସିଲା । ତେଣୁ ସେ, ଏ.ଜି. ଛକରେ ରିକ୍‌ସା ଛାଡ଼ି, କିଛି ସମୟ ପାଇଁ ଫୁଟପାଥ ଉପରେ ଠିଆ ହେଲେ । ଠିଆହେବା ସମୟ ମଧ୍ୟରେ ସେ ଲକ୍ଷ୍ୟକଲେ ଏଠାରେ କି ପ୍ରକାର ଅବ୍ୟବସ୍ଥା ଭିତରେ କାମ ଚାଲିଛି । ପ୍ରଥମତଃ ଏଇ ଛକଟିର "ଗଠନ ପ୍ରଣାଳୀ" ଟ୍ରାଫିକ ନିୟମ ଅନୁଯାୟୀ ନୁହେଁ । ତାପରେ ଯେଉଁ ସ୍ୱୟଂଚାଳିତ ବିଦ୍ୟୁତ୍ ଆଲୁଅ ସାହାଯ୍ୟରେ ଟ୍ରାଫିକ କଣ୍ଟ୍ରୋଲ ଚାଲିଛି, ତାହା କୌଣସି ଆଧୁନିକ ସ୍ୱୟଂ ଚାଳିତ ଟ୍ରାଫିକ କଣ୍ଟ୍ରୋଲ ନିୟମ ଭିତରେ ନୁହେଁ । ସେ ଯେଉଁ ଭୁଲଗୁଡ଼ିକ ଦେଖିଲେ, ତାହା ହେଲା—

(୧) ଯେଉଁଠି ସ୍ୱୟଂଚାଳିତ ବିଦ୍ୟୁତ୍ ଆଲୁଅ ରହିବ, ସେ,ଛକରେ 'ଜେବ୍ରା କ୍ରସିଂ' ସବୁବେଳ ସ୍ପଷ୍ଟ ହୋଇ ରହିବ । ଏଠାରେ ଜେବ୍ରା କ୍ରସିଂ କୌଣସି ସମୟରେ ଦୃଷ୍ଟିଗୋଚର ହୁଏନି ।

(୨) ସ୍ୱୟଂଚାଳିତ ବିଦ୍ୟୁତ୍ ସିଗ୍‌ନାଲରେ ତିନିପ୍ରକାର ରଙ୍ଗଥାଏ । ଗୋଟିଏ ହେଲା 'ନାଲି' ଆଉ 'ଗୋଟିଏ ହେଲା 'ପିଉ', ଆଉ ଗୋଟିଏ ସବୁଜ । ସବୁଜ ବର୍ଣ୍ଣ ସିଗନାଲ ଜଳୁଥିଲାବେଳେ ଯାନ ବାହାନ ଯାତାୟତ କରେ । ପୁଣି ପିଉ ଲାଇଟ ସିଗନାଲ ଆସିବାପରେ ଆସୁଥିବା ଗାଡ଼ି ତାର ଗତି ସ୍ଲୋ କରି ଜେବ୍ରା କ୍ରସିଂ ପାଖେ ରୁହେ, ଏବଂ ଆଗରୁ ରହିଥିବା ଗାଡ଼ି ଯିବାପାଇଁ ପ୍ରସ୍ତୁତ ହୁଏ । ନାଲି ଆଲୁଅ ଜଳିଲେ (ଯେଉଁ ଲାଇନରେ ଜଳେ), ସେ ଲାଇନର ସମସ୍ତ ଗାଡ଼ି ଜେବ୍ରା କ୍ରସିଂ ପାଖେ ରୁହେ ।

କିନ୍ତୁ ଏ.ଜି ଛକରେ ଅନ୍ୟ ପ୍ରକାର । ଏଠାରେ ବହୁ ସମୟରେ ପିଉ ଲାଇଟ ଜଳେନି । ତାଛଡ଼ା ନାଲି ଆଲୁଅର ସମୟ ଏତେ ବେଶୀ ଦିଆଯାଇଛି ଯେ, କୌଣସି ଲୋକର ଏତେ ସମୟ ଅପେକ୍ଷା କରିବାକୁ ଧୈର୍ଯ୍ୟ ରୁହେନି । ତେଣୁ ସମସ୍ତ ଗାଡ଼ି ଡ୍ରାଇଭର, ରିକ୍‌ସା, ସାଇକେଲ, ଜେବ୍ରା କ୍ରସିଂ ଛାଡ଼ି ଛକ ମଝିରେ ପହଞ୍ଚନ୍ତି । ତେଣୁ ଏହି ଛକ ଦୁର୍ଘଟଣା ରୋକିବା ପରିବର୍ତ୍ତେ ଦୁର୍ଘଟଣା ବଢ଼ାଉଛି ଏଥିରେ କିଛି ସନ୍ଦେହ ନାହିଁ ।

ତା'ଛଡ଼ା ନାଲି, ସବୁଜ ଆଲୁଅର ଟାଇମ ଠିକ୍ କରିବାପାଇଁ ଗୋଟେ ନିୟମ ଅଛି । ଏଠାରେ ସେ ନିୟମ ଫଲୋ କରାଯାଉ ନାହିଁ । ଏ ବିଷୟରେ ବହୁ-ବାର ଜନସାଧାରଣଙ୍କ ତରଫରୁ ଅନୁରୋଧ କରାଗଲେ ମଧ୍ୟ ତାର ପ୍ରତିକାର କିଛି ହେଉନି । ଏଇ ଛକବାଟେ ସହରର ସମସ୍ତ ବଡ଼ ବଡ଼ ଅଫିସର, ମନ୍ତ୍ରୀ, ଯାଉଛନ୍ତି ।

ସମସ୍ତେ ଅନୁଭବ କରୁଛନ୍ତି । କିନ୍ତୁ କେହି କାମଟା କରୁନାହାନ୍ତି, ସେଇଆ ଆଶ୍ଚର୍ଯ୍ୟ କଥା ।

ଇନ୍ଦ୍ର, ଏ.ଜି. ଛକ ପାଖରେ ଠିଆହୋଇ ସ୍ୱୟଂଚାଳିତ ବିଦ୍ୟୁତ୍ ଆଲୋକ ଯୋଗେ ଟ୍ରାଫିକ କଣ୍ଟ୍ରୋଲରେ ଅବ୍ୟବସ୍ଥା ଦେଖୁଥିବାବେଳେ, କେତେକ ବସ ଆଉ କାର ଡ୍ରାଇଭର କଟକ ଭୁବନେଶ୍ୱର ରାସ୍ତାରେ ଗୋଟିଏ ରାସ୍ତା ଦୁର୍ଘଟଣା ବିଷୟରେ କଥାବାର୍ତ୍ତା ହେଉଥିବା ତାଙ୍କ କାନରେ ପଡ଼ିଲା । ଅବଶ୍ୟ କେଉଁଠି ନା କେଉଁଠି ପ୍ରତ୍ୟେକ ଦିନ ରାସ୍ତା ଦୁର୍ଘଟଣାରେ ଲୋକ ମରୁଛନ୍ତି । ବହୁ ଲୋକ କ୍ଷତ ବିକ୍ଷତ ହେଉଛନ୍ତି । ଗାଡ଼ି ମଟର ଧ୍ୱସ୍ତ ବିଧ୍ୱସ୍ତ ହେଉଛି । ମାତ୍ର ଏହାର ପ୍ରତିକାର ଯେଉଁପରି ଭାବେ ହବାକଥା, ସେପରି ହେଉନାହିଁ ।

ପ୍ରଥମେ କଟକ ଭୁବନେଶ୍ୱର ରାସ୍ତା ବିଷୟରେ କୁହାଯାଉ । ଏହି ରାସ୍ତା ସାରା ଭାରତବର୍ଷରେ ଏକ ଜନଗହଳି ରାସ୍ତା । କଟକର ମଧୁପାଟଣା ଛକ ଠାରୁ ଭୁବନେଶ୍ୱରର ବାଣୀବିହାର ଛକ ପର୍ଯ୍ୟନ୍ତ ଜାତୀୟ ରାଜପଥରେ ୧୯୮୨ ମସିହାରେ ୬୮ ଗୋଟି ରାସ୍ତା ଦୁର୍ଘଟଣାରେ ୧୮ ଜଣ ବ୍ୟକ୍ତି ମୃତ୍ୟୁ ବରଣ କରିଥିଲେ ଏବଂ ୬୧ ଜଣ କ୍ଷତବିକ୍ଷତ ହୋଇଥିଲେ । ୧୯୮୩ ମସିହାରେ ୮୩ଟି ଦୁର୍ଘଟଣାରେ ୧୬ଜଣଙ୍କ ମୃତ୍ୟୁ ଏବଂ ୬୦ଜଣ ଆହତ ହେବାସ୍ଥଳେ ୧୯୮୪ ମସିହାରେ ୧୦୮ଟି ଦୁର୍ଘଟଣାରେ ୨୩ଜଣଙ୍କ ମୃତ୍ୟୁ ଏବଂ ୯୩ଜଣ ଆହତ ହୋଇଥିଲେ । ୧୯୮୫ ମସିହାରେ ଏହି ସମସ୍ତ ସଂଖ୍ୟା ବଢିଛି ।

ଏହି ରାସ୍ତାରେ ଦୁର୍ଘଟଣା ବଢ଼ୁଥିବା ଯୋଗୁ ୧୯୬୯-୭୦ ମସିହାରେ ରାମନାଥନ କମିଟି ବସି କେତେଗୁଡ଼ିଏ ସଜେସନ ରାସ୍ତା ଦୁର୍ଘଟଣା ରୋକିବା ପାଇଁ ଦେଇଥିଲେ । ସେ ସଜେସନ ମଧ୍ୟରେ ଏହି ରାସ୍ତାକୁ ଶୀଘ୍ର ଡ଼ବଲ ରାସ୍ତା କରାଯାଉ ବୋଲି ଥିଲା । କାରଣ ଏହି ରାସ୍ତାରେ ଘଣ୍ଟାକୁ ସର୍ବମୋଟ ୫୫୦ଟି ଯାନବାହାନ ଯିବାପାଇଁ ଉଦ୍ଦିଷ୍ଟ ଥିବାବେଳେ ବର୍ତ୍ତମାନ ଏହି ରାସ୍ତାରେ ୧୧୫୦ରୁ ଅଧିକ ଯାନ ବାହାନ ଘଣ୍ଟାକେ ଯିବା ଆସିବା କରୁଛି । ଯଦି ଗୋଟିଏ ଘର ୫୦ଜଣ ରହିବା ପାଇଁ ହୋଇଥାଏ, ସେଠାରେ ଯଦି ୧୦୦ଜଣ ଲୋକ ରୁହନ୍ତି ସେଠି ଯେଉଁ ପ୍ରକାର ଅସୁବିଧା ହୁଏ, ଏହି ରାସ୍ତାରେ ଅଧିକ ଯାନ ବାହାନ ଯାତାୟତ ଦୃଷ୍ଟିରୁ ସେହି ପ୍ରକାର ଅସୁବିଧା ସୃଷ୍ଟି ହେଉଛି । ଏହା ଏହି ରାସ୍ତାରେ ଦୁର୍ଘଟଣା ବଢିବାରେ ଏକ ମୁଖ୍ୟ କାରଣ ହେବାସ୍ଥଳେ, ରାସ୍ତା ଢାଞ୍ଚାରେ ଏବଂ ପାଖପାର୍ଶ୍ୱିକ ଅବସ୍ଥା ଯୋଗୁ ଦୁର୍ଘଟଣାମାନ ମଧ୍ୟ ବଢ଼ୁଛି । ଯଦିଓ ଏତେ ଶୀଘ୍ର ଏହି ରାସ୍ତାକୁ ଡ଼ବଲ କରି ହେବନି, ତେବେ ପାଖପାର୍ଶ୍ୱିକ ଅବସ୍ଥା ଏବଂ ରାସ୍ତା ଗଠନକୁ ଉନ୍ନତ ଏବଂ ପରିବର୍ତ୍ତନ କଲେ ଦୁର୍ଘଟଣାକୁ ରୋକା ଯାଇପାରନ୍ତା ।

ଉଦାହରଣ ସ୍ୱରୂପ, ରସୁଲଗଡ ଛକକୁ ବିଗ୍ରହକୁ ନିଆଯାଉ । ଏଠାରେ କଟକ ରାସ୍ତା ମୋଡ଼ ନେଇ ବାଣୀବିହାର ଆଡ଼କୁ ଯାଇଛି । ବାଣୀବିହାର ରାସ୍ତା ଉଚ୍ଚା । ଯେଉଁ ଜାଗାରେ ରାସ୍ତାବାଙ୍କ ବୁଲିଛି, ସେଇ ଯାଗାର ପଶ୍ଚିମପଟେ ବରଗଛ ଏବଂ ବିଭିନ୍ନ ପ୍ରକାର ଢ଼ାବା, ଦୋକାନ । ବାଣୀବିହାର ପଟୁ ଆସୁଥିବା ଗାଡ଼ି କଟକ ଆଡୁ ଆସୁଥିବା ଗାଡ଼ିକୁ ଦୂରରୁ ଦେଖିପାରେନି । ପୁଣି ରାତିରେ ଏହି ବାଙ୍କ ରାସ୍ତାକୁ ଦୂରରୁ ଦର୍ଶାଇଦେବା ପାଇଁ ରାସ୍ତା ଉପରେ କାଚ ବସେଇ ଆଖି (କ୍ୟାଟସ୍ ଆଇ) ନାହିଁ କି କିଛି ସିଗନାଲ୍ ନାହିଁ । ପୁଲିସ ରିପୋର୍ଟରୁ ଜଣାପଡ଼େ ଯେ ଏହି ତିନିବର୍ଷ ମଧ୍ୟରେ ଏଠାରେ ବହୁ ଦୁର୍ଘଟଣା ଘଟିଛି ।

ସେହିପରି ପଲାଶୁଣି ଛକ । ଏଠାରେ ରାସ୍ତା ସିଧା ହୋଇଥିଲେ ମଧ୍ୟ ଝିପସଡ଼ା । ରାଜଧାନୀର ଉପକଣ୍ଠରେ ଅକଟ୍ରୋଇ ଗେଟ, ପୁଣି ଆର: ଟି: ଓ:ଙ୍କ ଗେଟ ଯୋଗୁ ଗାଡ଼ି ରାସ୍ତାର ଏପଟ ସେପଟ ଠିଆହୋଇ ରାସ୍ତା ବନ୍ଦ କରୁଥିବା ଫଳରେ ଛୋଟବଡ଼ ଦୁର୍ଘଟଣା ଘଟୁଛି ।

କୁଆଖାଇ ପୋଲର ଦୁଇପାଖ ରାସ୍ତା ଦେଖନ୍ତୁ । କଟକଆଡୁ ଆସିଲେ, ପ୍ରଥମେ କେନାଲ ପୋଲ, ତାପରେ ଅନ୍ଧାମୋଡ଼, ପୁଣି ବ୍ରିଜ । ଏଠାରେ ଲୋକମାନଙ୍କ ପାଇଁ ବସ ଷ୍ଟପ ଏବଂ ରାସ୍ତା ସ୍ଲୋପ । ପୁଣି ଏ ଛକରେ ଯେଉଁ ହମ୍ପ କରାଯାଇଛି ତାହା ମଧ୍ୟ ଟ୍ରାଫିକ ନିୟମ ଅନୁଯାୟୀ ନୁହେଁ । ତେଣୁ ଏଠାରେ ମଧ୍ୟ ଭୟାବହ ଦୁର୍ଘଟଣାମାନ ଘଟୁଛି । ତାଛଡ଼ା ପାହାଲ, ଫୁଲନଖରା ଛକ, ଲକ୍ଷେଶ୍ୱର ମନ୍ଦିର ପାଖ ରାସ୍ତା, ତେଲଙ୍ଗା ପେଣ୍ଠ, ପ୍ରତାପ ନଗରୀ, ପୀରବଜାର ପାଖେ ମଧ୍ୟ ରାସ୍ତା ଗଠନ ପ୍ରଣାଳୀରେ ଦୋଷ ପରିଲକ୍ଷିତ ହୁଏ । ସାଧାରଣ ଖର୍ଚ୍ଚରେ ଏ ସମସ୍ତ ଅସୁବିଧାକୁ ଦୂରକରାଯାଇ ଦୁର୍ଘଟଣା ରୋକାଯାଇ ପାରନ୍ତା ।

ମାର୍ଚ୍ଚମାସ ପହିଲ ତାରିଖଦିନ, ରାଜଧାନୀ ଭୁବନେଶ୍ୱର ସହରର ପ୍ରାୟ ୧୭ଗୋଟି ହାଇସ୍କୁଲ ଏବଂ ମାଇନର ସ୍କୁଲର ଛାତ୍ର ଛାତ୍ରୀମାନେ ହାତରେ ଭିନ୍ନ ଭିନ୍ନ ପ୍ରକାରର ରଙ୍ଗୀନ ପ୍ଲାକେଡ଼ମାନ ଧରି ସହରର କେତେକ ମୁଖ୍ୟ ରାସ୍ତା ପରିକ୍ରମା କରିଥିଲେ । ସେମାନେ ସେମାନଙ୍କ ବାପା, ଭାଇ ଏବଂ ପରିବାରର ବୟସ୍କ ଲୋକମାନଙ୍କୁ ରାସ୍ତାରେ ଗାଡ଼ି, ମଟର ଇତ୍ୟାଦି ଚଳେଇ ଗଲାବେଳେ "ଟ୍ରାଫିକ" ନିୟମ ମାନିବାକୁ ଆହ୍ୱାନ ଦେଇଥିଲେ । ପ୍ଲାକେଡ଼ମାନଙ୍କରେ 'ରାସ୍ତାରେ ଗାଡ଼ି ଆସ୍ତେ ଚଲାନ୍ତୁ', 'ହେଲେମେଟ ବ୍ୟବହାର କରନ୍ତୁ', 'ନିର୍ଦ୍ଦେଶ ଦେଇ ଦିଗ ପରିବର୍ତ୍ତନ କରନ୍ତୁ' ଇତ୍ୟାଦି ସ୍ଲୋଗାନମାନ ଲେଖିଥିଲେ । ତା'ଛଡ଼ା ଏଇ ଛୋଟ ଛୋଟ ଛାତ୍ର ଛାତ୍ରୀମାନେ ମଧ୍ୟ ବିଭିନ୍ନ ମୁଖ୍ୟ ଛକମାନଙ୍କରେ ଖରାରେ ଘଣ୍ଟା ଘଣ୍ଟା ଧରି ଠିଆ

ହୋଇ, ରାସ୍ତାରେ ଯାତାୟତ କରୁଥିବା ଯାତ୍ରୀମାନଙ୍କୁ ଟ୍ରାଫିକ ନିୟମ ମାନି ଚାଲନ୍ତୁ, ଦୁର୍ଘଟଣା ବନ୍ଦ କରନ୍ତୁ ବୋଲି ମଧ୍ୟ ଅନୁରୋଧ କରିଥିଲେ ।

ଓଡ଼ିଆରେ ଗୋଟିଏ ଢଗ ଅଛି, "ବଡ ବଡ଼ ଗଲେ ଫସରଫାଟି, ପିଲାଏ ଉଠିଲେ ବେସରବାଟି" । ଏବେ ସେଇଆ ହେଲା । ରାସ୍ତା ଦୁର୍ଘଟଣା ଏବେ ଯେଉଁ ପରିମାଣରେ ବଢ଼ିଲାଣି, ଏଇ ଛୋଟ ଛୋଟ ପିଲାମାନେ ଭାବିଲେଣି, ସେମାନଙ୍କ ରୋଜଗାରିଆ ବାପ, ମା, ଭାଇ, ଦିନେନା ଦିନେ ଦୁର୍ଘଟଣା ରାକ୍ଷସର କବଳରେ ପଡ଼ିବେ ଏବଂ ସେମାନଙ୍କ ଭବିଷ୍ୟତ ଅନ୍ଧକାର ହୋଇ ଉଠିବ । ତେଣୁ ଏ ଅବୁଝା ବାପ, ମା, ଭାଇ ଯେତେବେଳେ ଏ କଥା ବୁଝିକରି ମଧ୍ୟ ଏହାର ପ୍ରତିକାର କରିବାକୁ ଆଗେଇ ଆସୁ ନାହାନ୍ତି, ସେମାନେ ବାଧ୍ୟ ହୋଇ ସ୍କୁଲରୁ ପାଠପଢ଼ା ଛାଡ଼ି ଏମାନଙ୍କୁ କିଛି ଶିକ୍ଷା ଦବାପାଇଁ ଆଗେଇ ଆସିଛନ୍ତି । ସେମାନେ ଯେତେ-ବେଳେ, ରାସ୍ତାରେ ବିନା ହେଲମେଟ ଦେଇ ଯାଉଥିବା ସ୍କୁଟରମାନଙ୍କୁ ହେଲେମେଟ ବ୍ୟବହାର କରନ୍ତୁ ବୋଲି ଅନୁରୋଧ କରୁଥାନ୍ତି, ସେମାନଙ୍କ ମଧ୍ୟରୁ ବହୁଜ୍ଞାନୀ, ବୟସ୍କ, ଶିକ୍ଷିତ ଲୋକ ମଧ୍ୟ, 'ଆମେ ଜାଣିଛୁ ଆମେ ଜାଣିଛୁ, ଅଧିକା କଅଣ କହୁଛ' ବୋଲି କହିବାର ଇନ୍ଦ୍ର ଶୁଣିଛନ୍ତି । ଆଉ କେତେକ ନିହାତି ବିରକ୍ତ ଭାବ ମୁହଁରେ ଫୁଟାଇ ପିଲାମାନଙ୍କ ଆଡ଼କୁ ଦୃଷ୍ଟି ନ ଦେଇ ଚାଲି ଯାଉଥାନ୍ତି । ମାତ୍ର ସେମାନଙ୍କ ମଧ୍ୟରୁ ଯେଉଁମାନେ ନିଜର ଭୁଲ୍ ଏବଂ ସମସ୍ୟାର ଗୁରୁତ୍ୱ ବୁଝୁଥିଲେ, ସେମାନେ ପିଲାମାନଙ୍କ ପିଠିରେ ହାତମାରି, ସେମାନଙ୍କୁ ଧନ୍ୟବାଦ ଦେଇ, ଆଉଦିନେ ସେମାନେ ଏ ଭୁଲ କରିବେନି ବୋଲି କହି ଯାଉଥାନ୍ତି ।

ସେ ଯାହାହେଉ, ପିଲାମାନେ ସେଦିନ ଭୁବନେଶ୍ୱର ସହର ବାସିନ୍ଦା ବୟସ୍କ ଲୋକମାନଙ୍କୁ ଗୋଟିଏ ଶିକ୍ଷା ଦେଲେ । ଏଥିରେ ଆମ୍ଭେମାନେ ଦୁଃଖ ପ୍ରକାଶ କରିବା କିମ୍ବା ବିରକ୍ତ ହେବା ଉଚିତ ନୁହେଁ । ବରଂ ପୁରାତନ କାଳରୁ ପିଲାମାନଙ୍କ ଠାରୁ ବୁଢ଼ାମାନେ ଶିକ୍ଷାଲାଭ କରିଛନ୍ତି ମନେ ପକାଇ, ବର୍ତ୍ତମାନ ରାସ୍ତାରେ ଦୁର୍ଘଟଣା କିପରି କମିବ, ସେ ବିଷୟରେ ଚିନ୍ତା କରିବା ଉଚିତ୍ । ବାହାର ଦୋଷକୁ ନ ଦେଖି ପ୍ରଥମେ ନିଜ ଦୋଷକୁ ଦେଖିବା ଉଚିତ୍ । ସେ ନିଜେ ଯେତେବେଳେ ରାସ୍ତାରେ ଯାଉଛନ୍ତି, ଟ୍ରାଫିକ ନିୟମ ମାନୁଛନ୍ତି କି ନାହିଁ, ଏଇତକ ମନେ ରଖିଲେ ଅନ୍ତତଃ ନିଜେ ବିପଦରୁ ରକ୍ଷା ପାଇ ପାରିବେ । ଦ୍ୱିତୀୟରେ ବହୁଲୋକ ଆମ ସମାଜରେ ଅଛନ୍ତି, ଯେଉଁମାନେ ଟ୍ରାଫିକ ନିୟମ କଅଣ ଜାଣନ୍ତି ନାହିଁ । ଏପରି ଲୋକମାନଙ୍କୁ ଦୋଷ ନଦେଇ ସେମାନଙ୍କୁ ଏ ବିଷୟରେ କିପରି ଶିକ୍ଷା ଦିଆଯାଇ ପାରିବ, ସେ ବିଷୟରେ ଚିନ୍ତା କରିବା ଉଚିତ୍ । ବର୍ତ୍ତମାନ ପ୍ରତ୍ୟେକ ରାସ୍ତା ବ୍ୟବହାରକାରୀମାନଙ୍କ ପକ୍ଷେ 'ଟ୍ରାଫିକ ନିୟମ କଅଣ' ଏ ବିଷୟ ଜାଣିବା ସଙ୍ଗେ

ସଙ୍ଗେ ଆମର ଡ୍ରାଇଭର ଭାଇମାନେ ଯଦି ଏ ବିଷୟ ଟିକେ ଶିଖିଲେ ଅନେକ ଭଲ ହୁଅନ୍ତା । କାରଣ ଡ୍ରାଇଭରମାନଙ୍କ ଯୋଗୁ ୧୦୦ରୁ ୬୦ ଭାଗ ଦୁର୍ଘଟଣା ଘଟୁଛି ।

( ୩୯ )

ମହାଶିବରାତ୍ରୀ ମହୋତ୍ସବ ମହାସମାରୋହରେ ମହାପ୍ରଭୁ ଲିଙ୍ଗରାଜଙ୍କ ମନ୍ଦିରରେ ପାଳନ କରାଯାଇ ଥିଲା । ଇନ୍ଦ୍ର ମର୍ତ୍ତ୍ୟ ଗସ୍ତରେ, ଭୁବନେଶ୍ୱର ମହା-ନଗରୀରେ ଉପସ୍ଥିତ ଥିବାଦୃଷ୍ଟିରୁ ଶିବରାତ୍ରୀ ମହୋତ୍ସବ ସ୍ୱଚକ୍ଷୁରେ ଦେଖିବାକୁ ମନ୍ଦିର ବେଢ଼ାକୁ ପ୍ରବେଶ କରିଥିଲେ । ଯିବା ବାଟରେ ଇନ୍ଦ୍ର ଦେଖିଲେ କେତେ ଜଣ ବିଦେଶୀ ପର୍ଯ୍ୟଟକ, ଲିଙ୍ଗରାଜ ମନ୍ଦିରର ଉତ୍ତରଦ୍ୱାର ପାଖେ ଥିବା ଉଚ୍ଚ-ସ୍ଥାନରୁ ମନ୍ଦିରର ଫଟୋ ଉତ୍ତୋଳନ କରୁଥାନ୍ତି । ବାଇନାକୁଲର ସାହାଯ୍ୟରେ ମନ୍ଦିରର ସୂକ୍ଷ୍ମ କାରୁକାର୍ଯ୍ୟକୁ ଲକ୍ଷ୍ୟ କରୁଥାନ୍ତି ।

ସେମାନଙ୍କ ସାଙ୍ଗେ ଜଣେ 'ଗାଇଡ୍' ଥିଲେ । ମଝିରେ ମଝିରେ ଏହି ପର୍ଯ୍ୟଟକମାନେ ଗାଇଡ୍‌ଙ୍କୁ ମନ୍ଦିରର ଇତିହାସ ବିଷୟରେ, ସୁନ୍ଦର ସୁନ୍ଦର ନାରୀ ମୂର୍ତ୍ତି ଉପରେ ବିଭିନ୍ନ ପ୍ରକାର ପ୍ରଶ୍ନ ପଚାରୁଥାନ୍ତି । ଗାଇଡ୍ ଯୁବକ ଯାହା ସବୁ ଉତ୍ତର ଦେଉଥାନ୍ତି ଏବଂ ସେମାନଙ୍କୁ ବୁଝାଉଥାନ୍ତି, ତାହା ପ୍ରାୟ ଭୁଲ୍ ତଥ୍ୟ ଉପରେ ପରିବେଷିତ । ଏପରିକି ପର୍ଯ୍ୟଟକମାନଙ୍କ ମଧ୍ୟରୁ ଗାଇଡ ଭୁଲ କହୁଛନ୍ତି ବୋଲି କହି, ସେମାନଙ୍କ ସାଙ୍ଗରେ ଆଣିଥିବା ଲିଙ୍ଗରାଜ ମନ୍ଦିର ଉପରେ ବିଭିନ୍ନ ଦେଶୀ ବିଦେଶୀ ଲେଖକଙ୍କ ପୁସ୍ତକ ଦେଖାଉଥାନ୍ତି ।

ଓଡ଼ିଶା ପ୍ରଦେଶ କଳା, ସ୍ଥାପତ୍ୟ ଏବଂ ପ୍ରାକୃତିକ ସୌନ୍ଦର୍ଯ୍ୟ ପାଇଁ ପୃଥିବୀ ପ୍ରସିଦ୍ଧ । ସେଇଥିପାଇଁ ବିଦେଶରୁ ହଜାର ହଜାର ପର୍ଯ୍ୟଟକ ଓଡ଼ିଶାକୁ ଆସିଥାନ୍ତି । ଯଦିଓ ବର୍ତ୍ତମାନ ଓଡ଼ିଶା ପ୍ରଦେଶକୁ ବର୍ଷକୁ ଯେତିକି ପର୍ଯ୍ୟଟକ ଆସୁଛନ୍ତି, ତା'ଠାରୁ ଯଥେଷ୍ଟ ବେଶୀ ପର୍ଯ୍ୟଟକ ଆସିବାର ସୁଯୋଗ ଓଡିଶାରେ ଅଛି । ଏହି ପ୍ରଦେଶରେ ୫୦୦ କିଲୋମିଟର ବେଳାଭୂମି, ବହୁ ପୁରାତନ ମନ୍ଦିର, ବୌଦ୍ଧ, ଜୈନପୀଠ, ଗୁମ୍ଫା, ପ୍ରାକୃତିକ ସୌନ୍ଦର୍ଯ୍ୟପୂର୍ଣ୍ଣ ବଣଜଙ୍ଗଲ, ନଦୀନାଳ, ଭିନ୍ନଭିନ୍ନ ପ୍ରକାର ବନ୍ୟ-ଜନ୍ତୁ, ଚିଲିକା ହ୍ରଦରେ ଜାତିଜାତି ପକ୍ଷୀ ଭରପୂର ଅଛନ୍ତି । ମାତ୍ର ପର୍ଯ୍ୟଟକମାନଙ୍କୁ ଯେଉଁପରି ଭାବେ ଆକୃଷ୍ଟ କରିବା କଥା, ସେପରି ଭାବେ କାର୍ଯ୍ୟ ଏପର୍ଯ୍ୟନ୍ତ କରାଯାଇ ପାରିନାହିଁ ।

ହରିଆନା ପରି କ୍ଷୁଦ୍ର ରାଜ୍ୟରେ ପର୍ଯ୍ୟଟକଙ୍କ ସଂଖ୍ୟା ଓଡ଼ିଶାଠାରୁ ବେଶୀ । ଏହି ରାଜ୍ୟରେ ମତ୍ସ୍ୟ ଉତ୍ପାଦନ ଓଡ଼ିଶା ପରି ସମୁଦ୍ର ଘେରା, ନଦୀନାଳପୂର୍ଣ୍ଣ ପ୍ରଦେଶଠାରୁ ବେଶୀ ବୋଲି ଜଣା ପଡ଼ୁଛି । ଭାରତ ସରକାରଙ୍କ ରିପୋର୍ଟରୁ ଜଣା-ପଡ଼େ, ଭାରତକୁ ବର୍ଷକୁ ଯେତେ ବିଦେଶୀ ପର୍ଯ୍ୟଟକ ଆସୁଛନ୍ତି, ସେମାନଙ୍କ ମଧ୍ୟରୁ ୧୬ ଭାଗ କେବଳ ଓଡ଼ିଶାକୁ ଆସିପାରନ୍ତି ।

ସେ ଯାହାହେଉ ବର୍ତ୍ତମାନ ଯେଉଁ ପର୍ଯ୍ୟଟକମାନେ ଆସୁଛନ୍ତି ସେମାନଙ୍କୁ ଯେଉଁ ଗାଇଡ଼ମାନେ ଏହି ସମସ୍ତ ଦର୍ଶନୀୟ ସ୍ଥାନ, ମନ୍ଦିର, ଗୁମ୍ଫା ବୁଲାଇ ଦେଖାଉଛନ୍ତି, ସେମାନଙ୍କର ସେତିକି ଯୋଗ୍ୟତା ଅଛି କି ? ଯଦି ଗାଇଡ଼ମାନେ ଭୁଲତଥ୍ୟ ପରିବେଷଣ କରନ୍ତି ତା'ହେଲେ ବିଦେଶୀ ପର୍ଯ୍ୟଟକ, ଆମ ଦେଶ ଓଡ଼ିଶା ପ୍ରଦେଶ ଏବଂ ଆମର ପୁରାତନ ଗୌରବ ବିଷୟରେ କି ପ୍ରକାର ଧାରଣା ନେଇ ଯିବେ ? ଆଜିକାଲିର ଏଇ 'ଗାଇଡ'ମାନଙ୍କ ଠାରୁ 'ମନ୍ଦିର ପଣ୍ଡା ବା ଯାତ୍ରୀ ପଣ୍ଡା' ବହୁଗୁଣରେ ଭଲ । ଆମେମାନେ ତାଙ୍କୁ ଏବେ ନାକ ଟେକୁଚେ, କାରଣ ସେମାନେ ଲୁଗା, ଗାମୁଛା ପକାଉଛନ୍ତି ବୋଲି । ମାତ୍ର ଟିକିଏ ଭିତରକୁ ଯାଇ ଦେଖିଲେ ବୁଝିବା ଏଇ ପଣ୍ଡାମାନେ ଯେଉଁ ଯାତ୍ରୀକୁ ଆଣନ୍ତି, ସେମାନେ ତାଙ୍କରି ଭାଷାରେ ପାଞ୍ଜଳ ଭାବରେ ସେମାନଙ୍କ ଯାତ୍ରୀଙ୍କୁ ତୀର୍ଥସ୍ଥାନ, ସେ ସ୍ଥାନର ମାହାତ୍ମ୍ୟ ବିଷୟରେ ବୁଝାଇଥାନ୍ତି । ସେମାନଙ୍କ ବୁଝାଇବା ଏବଂ କହିବା ଭାବଭଙ୍ଗି ଏପରି ଯେ ଯେଉଁ ଯାତ୍ରୀମାନେ ସେମାନଙ୍କ କଥା ଶୁଣନ୍ତି, ସେମାନେ ଭାବବିହ୍ୱଳ ହୋଇ ପଡ଼ନ୍ତି । ତା'ଛଡ଼ା ଏମାନେ ଏଇ ଯାତ୍ରୀମାନଙ୍କର ରହିବା, ଖାଇବା ଏବଂ ସେମାନଙ୍କ ନାମ ଠିକଣା ଯୁଗଯୁଗ ଧରି ଲେଖିରଖିଥାନ୍ତି । ଯଦି ଜଣେ ଯାତ୍ରୀ ରାଜସ୍ଥାନରୁ ଆସି ତା'ର ଜନ୍ମ ତା ଗାଁର ସାତପୁରୁଷ ଲୋକମାନଙ୍କ ନାଁ ପଣ୍ଡା ଖାତାରେ ଦେଖିପାରେ ସେ କେତେ ଆନନ୍ଦ ଅନୁଭବ ନକରିବ ? ଏବର ଗାଇଡ଼ଙ୍କୁ ଜଣେ ବିଦେଶୀ ପର୍ଯ୍ୟଟକ ଆଉ ଥରେ ବୁଲି ଆସି ଯଦି କହେ ଆପଣ ମୋର ଗାଇଡ଼ଥିଲେ, ଗାଇଡ୍ କହିବେ ହଁ, ହୋଇପାରେ । କେତେ ପର୍ଯ୍ୟଟକ ଆସୁଛନ୍ତି । କିଏ କାହାକୁ ମନେ ରଖୁଛି ?

ତେବେ କେଉଁମାନେ ଉପଯୁକ୍ତ 'ଗାଇଡ଼' ସେଇ ବିଷୟରେ ବିଚାର କରାଯାଉ । ଏପରି ଅଶିକ୍ଷିତ ଭୁଲ ତଥ୍ୟ ପରିବେଷଣ କରୁଥିବା ଗାଇଡ଼ଙ୍କୁ ଦେଇ ଓଡ଼ିଶାର ମାନ ମହତ ପଦାରେ ପକାଇବା ଉଚିତ୍ କି ? ଏମାନଙ୍କ ମଧ୍ୟରୁ କେତେ-ଜଣ କେତେପ୍ରକାର ବିଦେଶୀ ଭାଷା ଜାଣନ୍ତି ? ସବୁ ବିଦେଶୀ ପର୍ଯ୍ୟଟକ ଇଂରାଜୀ ବୁଝନ୍ତିନି । ଏ ଅସୁବିଧାକୁ ଦୂର କରିବା ପାଇଁ ସରକାରଙ୍କ ତରଫରୁ ସ୍ୱତନ୍ତ୍ର

'ଗାଇଡ' ନ୍ତ୍ରେନଂ ଦିଆଯାଉ । ପର୍ଯ୍ୟଟନ ଡ଼ିପାର୍ଟମେଣ୍ଟ ଏହାକୁ ପରିଚାଳନା କରନ୍ତୁ । ତାଛଡ଼ା ଏ 'ଗାଇଡ଼' ମାନଙ୍କ ମଧ୍ୟରେ ପାରମ୍ପରିକ 'ପଣ୍ଡା' ଶିକ୍ଷିତ ଯୁବକ-ମାନଙ୍କୁ ସୁବିଧା ଦିଆଯାଉ । କାରଣ ଏ ବୃତ୍ତିଟି ସେମାନଙ୍କର ମୌଳିକ ବ୍ୟବସାୟ । ହେତେ ଏଥିପାଇଁ ସେମାନେ ଆଗ୍ରହ ପ୍ରକାଶ କରିବେ, ଅନ୍ୟମାନେ ସେତକ ଆଗ୍ରହ ପ୍ରକାଶ କରିବେ ନାହିଁ ।

ଓଡ଼ିଶାରେ ବିଦେଶୀ ପର୍ଯ୍ୟଟକମାନଙ୍କ ପାଇଁ ପୁରୀ, କୋଣାର୍କ, ଭୁବନେଶ୍ୱର ମୁଖ୍ୟ ଆକର୍ଷଣୀୟ ସ୍ଥାନ । ଏହାଛଡ଼ା କେତେକ ବିଦେଶୀ ପର୍ଯ୍ୟଟକ ଚିଲିକା, ଗୋପାଳପୁର ପ୍ରଭୃତି ପ୍ରାକୃତିକ ସୌନ୍ଦର୍ଯ୍ୟ ପୂର୍ଣ୍ଣ ସ୍ଥାନ ଗୁଡ଼ିକୁ ଦେଖିବାକୁ ଯାଇଥାନ୍ତି ।

ଆଗେ ଓଡ଼ିଶାରେ ଭଲ ହୋଟେଲମାନ ନଥିବା ଦୃଷ୍ଟିରୁ ବିଦେଶୀ ପର୍ଯ୍ୟଟକମାନଙ୍କ ରହିବା ଖାଇବାରେ ଅସୁବିଧା ହେଉଥିଲା । ତେଣୁ ସେମାନେ ଏଠାରେ ବେଶୀଦିନ ରହି ଏ ସମସ୍ତ ସ୍ଥାନକୁ ଯିବାକୁ ଆଗ୍ରହ ପ୍ରକାଶ କରୁନଥିଲେ । ଏବେ କିନ୍ତୁ ସେ ଅସୁବିଧା ଦୂର ହେଲିଣି । ଭୁବନେଶ୍ୱରଠାରେ ଅତ୍ୟାଧୁନିକ ହୋଟେଲମାନ ନିର୍ମିତ ହୋଇ ସେମାନଙ୍କ ଚାହିଦା ଅନୁସାରେ ରହିବା, ଖାଇବାର ସୁବିଧା ଦେଇ ପାରୁଛି । ତେବେ କାହିଁକି ପର୍ଯ୍ୟଟନ କ୍ଷେତ୍ରରେ ଓଡ଼ିଶା ଅନ୍ୟ ପ୍ରଦେଶମାନଙ୍କଠାରୁ ଏତେ ପଛରେ ପଡ଼ିଛି ?

ବିଦେଶୀ ପର୍ଯ୍ୟଟକମାନଙ୍କ କଥାବାର୍ତ୍ତାରୁ ଇନ୍ଦ୍ର ବୁଝିପାରିଲେ ଯେ ସେମାନେ ଆମ ଦେଶରେ କେତେକ ଐତିହାସିକ ସ୍ଥାନ ଦେଖିବା ସଙ୍ଗେ ସଙ୍ଗେ ଶାନ୍ତିପୂର୍ଣ୍ଣ ପରିବେଶ ମଧ୍ୟରେ କିଛିଦିନ କଟାଇବାକୁ ଚାହାନ୍ତି । ତାଙ୍କ ଦେଶରେ ଆଧୁନିକତା ନାମରେ 'ବସ୍ତୁବାଦ'ର ଯେଉଁ ଘୋଡ଼ା ଦଉଡ଼ ଚାଲିଛି, ସେ ଦଉଡ଼ ଭିତରେ ସେମାନେ ହାଲିଆ ହୋଇପଡ଼ିଲେଣି । ସେମାନେ ଚାହାନ୍ତି ସୁନ୍ଦର, ଶାନ୍ତ, ପ୍ରାକୃତିକ ପରିବେଶ ଭିତରେ କେତେଟା ଦିନ କଟାଇ ଦେବେ । ପଇସା ଯେତେ ଖର୍ଚ୍ଚ ହେଉ ଚିନ୍ତା ନାହିଁ । ସେମାନଙ୍କୁ ଛାଡ଼ିଦେଲେ, ଆମ ଦେଶରେ ମଧ୍ୟ ବହୁ ଧନିକ ଶ୍ରେଣୀର ଲୋକଙ୍କଠାରୁ ମଧ୍ୟବିତ୍ତ ଶ୍ରେଣୀର ଲୋକପର୍ଯ୍ୟନ୍ତ ବର୍ଷକ ଭିତରୁ କେତେଟା ଦିନ ପିଲାଛୁଆଙ୍କୁ ଧରି ଏଭଳି ପରିବେଶ ଭିତରେ ସମୟ କଟାଇବାକୁ ଚାହାନ୍ତି । ଭାରତ ଭିତରେ ଓଡ଼ିଶାହିଁ ଗୋଟିଏ ରାଜ୍ୟ, ଯେଉଁଠାରେ ଏ ସମସ୍ତ ପରିବେଶ ଅତିକମ୍ ଖର୍ଚ୍ଚରେ ଜଣେ ପାଇପାରିବ ।

ଉଦାହରଣ ସ୍ୱରୂପ କୋଣାର୍କ ଅଞ୍ଚଳକୁ ଦେଖାଯାଉ । ଏଠାରେ ପ୍ରତ୍ୟେକ ପ୍ରକାର ବିଦେଶୀ, ଦେଶୀ ଧନୀ ଏବଂ ମଧ୍ୟବିତ୍ତ ପର୍ଯ୍ୟଟକମାନଙ୍କ ପାଇଁ ସେମାନଙ୍କ ଚାହିଦା ମୁତାବକ ଆକର୍ଷଣୀୟ ସ୍ଥାନମାନ ଅଛି । ସୁନ୍ଦର ବେଳାଭୂମି, ପ୍ରାଚୀ

ସୂର୍ଯ୍ୟୋଦୟ, ସନ୍ଧ୍ୟାର ସୂର୍ଯ୍ୟାସ୍ତ, ବେଳାଭୂମି ଗୃହପଟ୍ଟେ ଘଞ୍ଚ ଝାଉଁବଣ, ଝାଉଁବଣ ମଧ୍ୟରେ କୃଷ୍ଣସାର ମୃଗ, ବାଳହରିଣ, ଅଦୂରରେ ଶ୍ରେଷ୍ଠ ଶ୍ରେଷ୍ଠ ପକ୍ଷୀଙ୍ଗ । ସର୍ବୋପରି ପୃଥିବୀ ପ୍ରସିଦ୍ଧ କୋଣାର୍କ ମନ୍ଦିର । ଆଧୁନିକ ସହରି କୋଳାହଳଠାରୁ ବେଶ୍ ଦୂର । ଏପରି ସୁନ୍ଦର ପ୍ରାକୃତିକ ପରିବେଶ ଥାଇ ଏଠାରେ ଜଣେହେଲେ ବିଦେଶୀ ପର୍ଯ୍ୟଟକ ଗୋଟିଏ ରାତି କଟାନ୍ତିନ—କେବଳ କେତେକ ଗଞ୍ଜେଇ ଆଉ ଚରସ ଖିଆ ବିଦେଶୀ ଯୁବକ ଯୁବତୀଙ୍କୁ ଛାଡ଼ିଦେଲେ ।

ଏହାର କାରଣ ହେଲ, କୋଣାର୍କ ପାଖେ ସମୁଦ୍ର କୂଳରେ କୌଣସି ହୋଟେଲ ନାହିଁ । ବର୍ତ୍ତମାନର ପର୍ଯ୍ୟଟନ ବିଭାଗ ହୋଟେଲରେ କୌଣସି ଲୋକ ରହିବାକୁ ଇଚ୍ଛା ପ୍ରକାଶ କରିବେନ । ସେଠାରେ ରହିବା ଯାହା, ଭୁବନେଶ୍ୱର-ଠାରେ ଯେ କୌଣସି ଦ୍ୱିତୀୟ ଶ୍ରେଣୀ ହୋଟେଲରେ ରହିବା ସଙ୍ଗେ ସମାନ । ଏତେ ସୁନ୍ଦର ପ୍ରାକୃତିକ ସୌନ୍ଦର୍ଯ୍ୟ, ଝାଉଁବଣ, ସମୁଦ୍ରକୂଳକୁ ଲାଗିକରି ଥିଲେ ମଧ୍ୟ ଏଠାରେ ସ୍ୱଳ୍ପ ଖର୍ଚ୍ଚରେ ବି କିଛି ଉନ୍ନତ କରାଯାଇ ନାହିଁ । ବେଳାଭୂମିର ରାସ୍ତା ନାମକୁମାତ୍ର "ବେଳାଭୂମି ରାସ୍ତା" । ଏ ଅଞ୍ଚଳର ଜଙ୍ଗଲକୁ ଅଭୟାରଣ୍ୟ ବୋଲି ଘୋଷଣା କରାଯାଇଥିଲେ ମଧ୍ୟ, ଏଠାରେ ପର୍ଯ୍ୟଟକମାନଙ୍କ ଦେଖିବା ପାଇଁ କୌଣସି ଜନ୍ତୁ ଦେଖାଯାନ୍ତି ନାହିଁ । ରାମଚଣ୍ଡୀ ମୁହାଁଣ ପାଖେ ସମୁଦ୍ରରେ ଓ୍ୱାଟର ସ୍କେଟିଂ କରିବା ପାଇଁ ଯଥେଷ୍ଟ ସୁବିଧା ଥିଲେ ମଧ୍ୟ ସେ ବିଷୟରେ କୌଣସି କାର୍ଯ୍ୟ କରାଯାଇନାହିଁ ।

ଏ ସମସ୍ତ କାର୍ଯ୍ୟ ପାଇଁ ବିଶେଷ ଅର୍ଥର ଆବଶ୍ୟକତା ନାହିଁ, ମାତ୍ର ଉପଯୁକ୍ତ ପ୍ଲାନିଂ, ଦୂରଦୃଷ୍ଟି ଦରକାର । ଗୋଟିଏ ସ୍ଥାନକୁ ଠିକ୍ ଭାବେ ଉନ୍ନତ କରିପାରିଲେ ଏହା ଯେ କୌଣସି ଲୋକଙ୍କୁ ନିଶ୍ଚୟ ଆକୃଷ୍ଟ କରିବ । କିନ୍ତୁ ଓଡ଼ିଶା ସରକାର ଯଦି ଏଥିପ୍ରତି ଯତ୍ନ ତତ୍ପର ନହେବେ, ପର୍ଯ୍ୟଟକମାନେ କେଉଁ ଆଶା ଧରି ଏତେଦୂର ଧାଇଁ ଆସିବେ ? କୋଣାର୍କ ବୁଲିଆସିବା ପରେ ଅନୁଭୂତ ଏବଂ ମତାମତ କହୁଥାନ୍ତି ସେ ପର୍ଯ୍ୟଟକ ଜଣକ । ସେ ମଧ୍ୟ ଏଠାରେ ସପ୍ତାହକୁ ଥରେ ଏୟାର ସର୍ଭିସ୍, ମନ୍ଦିରରେ ସାଉଣ୍ଡ ଏବଂ ଲାଇଟର ବନ୍ଦୋବସ୍ତ କରିବାକୁ ମତ ଦେଉଥିଲେ ।

ବିଦେଶୀ ପର୍ଯ୍ୟଟକ ଯାହା କହିଲେ ତାହା ସତ । ଆମେ ଖାଲି ଆମ ଓଡ଼ିଶାରେ ସବୁ ପରିପୂର୍ଣ୍ଣ ଅଛି କହିଲେ କଅଣ ହେବ !!!

କଥାବାର୍ତ୍ତା ମଧ୍ୟରେ ଜଣେ ଭଦ୍ରଲୋକ କହିଲେ—"ଓଡ଼ିଶାରେ ପର୍ଯ୍ୟଟକ-ମାନଙ୍କ ପାଇଁ ଯେତେ ରମଣୀୟ, ଦର୍ଶନୀୟ ସ୍ଥାନ ଅଛି, ସେ ସମସ୍ତ ସ୍ଥାନମାନଙ୍କୁ ପର୍ଯ୍ୟଟକମାନଙ୍କ ପାଇଁ ଆକର୍ଷଣୀୟ କରିବାରେ ପର୍ଯ୍ୟଟନ ସଂସ୍ଥା ଏପର୍ଯ୍ୟନ୍ତ ସକ୍ଷମ ହୋଇ ପାରିନାହିଁ ।

କୋଣାର୍କ ପରେ ଚିଲିକା ହ୍ରଦକୁ ଦେଖିଲେ, ମନରେ ଦୁଃଖ ଆସେ । ଚିଲିକା ହ୍ରଦରେ ୪୦ କିଲୋମିଟର ଦୂରବର୍ତ୍ତୀ ଅତିଥିଭବନଠାରୁ ଲଞ୍ଚରେ ଗଲେ ଜଣେ ପର୍ଯ୍ୟଟକ ସମୁଦ୍ର ବେଳାଭୂମିରେ ପହଞ୍ଚି ପାରିବେ । ସେଠାରେ ସମୁଦ୍ର, ଆଉ ଚିଲିକା ମଧ୍ୟରେ ଅଧମାଇଲ ଏ ଲମ୍ବ ଝାଉଁବଣପୂର୍ଣ୍ଣ, ବାଲିପଡ଼ିଆର ବ୍ୟବଧାନ । ଏହି ଝାଉଁବଣ ମଧ୍ୟରେ ଅସଂଖ୍ୟ ବଣୁଆ ଗାଈଗୋରୁ, ବାଲିହରିଣ, କୃଷ୍ଣସାର ମୃଗ ଅଛନ୍ତି ।

ଜଣେ ପର୍ଯ୍ୟଟକଙ୍କୁ ଯଦି ଏଠାକୁ ନିଆଯାଇ ପାରନ୍ତା ଏବଂ ଏଇ ଝାଉଁବଣ ମଧ୍ୟରେ ଦୁଇ ତିନି ଗୋଟି ଛୋଟ ଛୋଟ ବଙ୍ଗଳା ଘର କରାଯାଇ ପାରନ୍ତା, ତାହେଲେ ପର୍ଯ୍ୟଟକମାନଙ୍କ ପାଇଁ ଏପରି ରମଣୀୟ ସ୍ଥାନ ସାରା ଭାରତବର୍ଷରେ ବିରଳ ହୋଇ ପଡ଼ନ୍ତା । ଗୋଟେ ପଟେ ନୀଳ ସମୁଦ୍ର, ମଝିରେ ସୁଉଚ୍ଚ ବାଲିପଡ଼ିଆ (ସ୍ୟାଣ୍ଡ ଡ଼ିଉନ), ପାଖରେ ଝାଉଁବଣ ଘେରା ଜଙ୍ଗଲ, ତା'ଭିତରେ କୃଷ୍ଣସାର ମୃଗମାନଙ୍କ ଖେଳ, ଆଉ ପଛକୁ ଆଖି ବୁଲେଇ ଦେଲେ ମାଇଲ ମାଇଲ ଧରି ନୀଳାମ୍ବୁ ଚିଲିକାର ବକ୍ଷ ଦେଶରେ ଲକ୍ଷ ଲକ୍ଷ ରଙ୍ଗ ବେରଙ୍ଗର ପକ୍ଷୀରାଜି, ମଝିରେ ଛୋଟ ଛୋଟ ମୁଣ୍ଡିଆ ପାହାଡ଼ ଆଉ ଶହ ଶହ ମାଛଧରା ଡ଼ଙ୍ଗା । ଏପରି ସୌନ୍ଦର୍ଯ୍ୟ-ପୂର୍ଣ୍ଣ ରମଣୀୟ ସ୍ଥାନ କେଉଁଠି ଅଛି ?

ଭଦ୍ରଲୋକଙ୍କ କଥା ଶୁଣି ଇନ୍ଦ୍ର କହିଲେ, "ଏ ସ୍ଥାନଟିକୁ କଅଣ ପର୍ଯ୍ୟଟନ ବିଭାଗର ଅଫିସରମାନେ ଜାଣନ୍ତିନି ?"

ଭଦ୍ରଲୋକ କହିଲେ—"ସେମାନେ ଯଦି ନଜାଣି ପାରିବେ ତାହେଲେ କଅଣ କରାଯିବ ? ମାତ୍ର ସେମାନେ ଏଇ ସ୍ଥାନ ବିଷୟ ଜାଣିବା ଉଚିତ । ସେଠାରେ ଯଦି କିଛି କରାଯାଇ ପାରନ୍ତା ତାହେଲେ ଟୁରିଷ୍ଟମାନେ ସକାଳୁ ବାରକୁଲ ଅତିଥି-ଶାଳାରୁ ବାହାରି, ଚିଲିକା ହ୍ରଦରେ ନୌବିହାର କରି, ସମୁଦ୍ରରେ ଗାଧୋଇ, ଜଙ୍ଗଲରେ ଜନ୍ତୁ ଦେଖି, ମଝିରେ ଲଞ୍ଚ ଖାଇ, ସନ୍ଧ୍ୟାବେଳକୁ ପୁଣି ଅତିଥିଶାଳାକୁ ଫେରି ପାରନ୍ତେ । କିନ୍ତୁ ଚିଲିକା ହ୍ରଦକୁ ଏପର୍ଯ୍ୟନ୍ତ ପର୍ଯ୍ୟଟକମାନଙ୍କ ପାଇଁ ଉପଯୁକ୍ତ ଭାବେ ବ୍ୟବହାର କରାଯାଇ ପାରନାହିଁ ।"

ସେ ପୁଣି କହିଲେ, "ଆଜିକାଲିର ଲୋକମାନେ ସାଧାରଣ ପଲିଉସନରୁ ରକ୍ଷା ପାଇବାପାଇଁ ମାସକୁ ଗୋଟେ ଦୁଇଟା ଦିନ ଶାନ୍ତିପୂର୍ଣ୍ଣ ପରିବେଶରେ କଟାଇବାକୁ ଚାହାନ୍ତି ।

ଓଡ଼ିଶାର ଫୁଲବାଣୀ ଜିଲ୍ଲାର 'ଦାରିଙ୍ଗବାଡ଼ି'କୁ ଦେଖନ୍ତୁ । ଏହି ଅଞ୍ଚଳ ଘନ ଜଙ୍ଗଲରେ ପୂର୍ଣ୍ଣ । ସମୁଦ୍ର ପତ୍ତନଠାରୁ ଏହାର ଉଚ୍ଚତା ୩୫୦୦ ଫୁଟ୍

ହେବ । ଏଠାରେ ଶୀତଦିନେ ଏବେ ବି ବରଫ ପଡୁଛି । ଏଇ ଯାଗାରେ ଯଦି ସରକାରଙ୍କ ତରଫରୁ ଗୋଟିଏ କି ଦୁଇଗୋଟି ଗ୍ରୀଷ୍ମ ନିବାସ ପାନ୍ଥଶାଳା ଖୋଲି ଯାଆନ୍ତା, ତାହେଲେ ବହୁ ଦେଶୀ, ବିଦେଶୀ ଲୋକ ଏଠାକୁ ଖରାଦିନେ, ବର୍ଷାଦିନେ ମଧ୍ୟ ଆସି ପାରନ୍ତେ । ଏଥିପାଇଁ ସରକାରଙ୍କର ବିଶେଷ କିଛି ଖର୍ଚ୍ଚ ହେବାରେ ନାହିଁ କିମ୍ବା ଏହାଦ୍ୱାରା ସେ ଅଞ୍ଚଳର ପାରିପାର୍ଶ୍ୱିକ ଅବସ୍ଥାର ପରିବର୍ତ୍ତନ ହେବ ନାହିଁ ।

ମାତ୍ର ଏ ବିଷୟରେ କିଏ ଚିନ୍ତା କଲେ ସିନା ହେବ ? ଖାଲି ଉତ୍କଳ ଦେଶ ଉତ୍କୃଷ୍ଟ କଳାରେ ପରିପୂର୍ଣ୍ଣ, ରମଣୀୟ ସ୍ଥାନରେ ପରିପୂର୍ଣ୍ଣ, ଭାଇମାନେ ଆସନ୍ତୁ, ଦେଖନ୍ତୁ, ଥରେ ମାତ୍ର ଆସନ୍ତୁ—ବୋଲି ଯେତେ କହିହେଲେ ବା ମାଇକ୍ ଲଗାଇ ଚିତ୍କାର କଲେ ଲାଭ କିଛି ମିଳିବ ନାହିଁ ।

( ୪୦ )

ଲେଖକ ସାମ୍ମୁଖ୍ୟ ଆନୁକୂଲ୍ୟରେ ଅନୁଷ୍ଠିତ ହେଉଥିବା ଜାତୀୟ ପୁସ୍ତକ ମେଳାର ଉଦ୍‌ଘାଟନ ଉତ୍ସବରେ ଇନ୍ଦ୍ର ଦିନେ ଉପସ୍ଥିତ ଥିଲେ । ମେଳାଟି ମାର୍ଚ୍ଚ ମାସ ୧୬ ତାରିଖ ସନ୍ଧ୍ୟାବେଳେ ଭୁବନେଶ୍ୱର ସହରର ଶୀତତାପ ନିୟନ୍ତ୍ରିତ ସୂଚନା ଭବନ ପ୍ରାଙ୍ଗଣରେ ଉଦ୍‌ଘାଟିତ ହେଲା । ଏହି ଉତ୍ସବଟିର ମୁଖ୍ୟ ଉଦ୍ଦେଶ୍ୟ ହେଲା ଓଡ଼ିଆ ଭାଷା ଏବଂ ଅନ୍ୟାନ୍ୟ ଭାଷାରେ ପ୍ରକାଶ ପାଉଥିବା ପୁସ୍ତକ ଗୁଡ଼ିକୁ କିପରି ପ୍ରକାଶକମାନେ ସୁଲଭ ଦାମରେ ପାଠକମାନଙ୍କ ପାଖେ ପହଞ୍ଚାଇ ପାରିବେ ଏବଂ ପାଠକମାନେ କିପରି ପୁସ୍ତକ ଆଡ଼କୁ ଆକୃଷ୍ଟ ହୋଇ ପାରିବେ । ଯେଉଁ ଦେଶରେ ପାଠକମାନଙ୍କ ସଂଖ୍ୟା ଯେତେ ଅଧିକ, ସେ ଦେଶର ଭାଷା,ସାହିତ୍ୟ ସେତେ ସମୃଦ୍ଧ । ପୁସ୍ତକ ବିକ୍ରି ହେଲେ ସିନା ଲେଖକ ଲେଖିବେ, ପ୍ରକାଶକ ପ୍ରକାଶ କରିବେ ? ନ ହେଲେ ପୁସ୍ତକ ଛପାଇ ଗୋଦାମଘରେ ରଖିଲେ ଲାଭ କଣ ହେବ !

ଏ ଦୃଷ୍ଟିରୁ ଯଦି ଏହି ମେଳାର ଆୟୋଜନକୁ ବିଚାର କରାଯାଏ, ତାହେଲେ ଦେଖାଯିବ ଯେ ଓଡ଼ିଆ ଭାଷାରେ ଲେଖା ପୁସ୍ତକ ଷ୍ଟଲ ମାତ୍ର ତିନି ଚାରିଗୋଟି । ପୁଣି ସେଇ ଷ୍ଟଲମାନଙ୍କରେ ଯେତିକି ପୁସ୍ତକ ପରିବେଷଣ କରାଯାଇଛି, ତାହା ପାଠକମାନଙ୍କ ଆଖିଦୃଷ୍ଟିଆ ନୁହଁ । ଓଡ଼ିଆ ସାହିତ୍ୟ ଏକାଡ଼େମୀ, କଲଚରାଲ ଡିପାର୍ଟମେଣ୍ଟ ତରଫରୁ ଯେଉଁ ଷ୍ଟଲ ଦୁଇଟି ଖୋଲା ଯାଇଛି, ସେ ଷ୍ଟଲ ଦୁଇଟିରେ ବହୁକାଳର ପୁରୁଣା ·କେତେଖଣ୍ଡ ବହି ସଜାହୋଇ ଥୁଆ ଯାଇଛି । ଏ ଜରାଜୀର୍ଣ୍ଣ ପୁସ୍ତକଗୁଡ଼ିକୁ ଯେଉଁମାନେ କିଣିବା ଲୋକ, ସେମାନେ ଖୋଜି ଖୋଜି ଏକାଡ଼େମୀ

ଅର୍ଫିସରୁ କିଣିବେ । ମାତ୍ର ଏ ସମସ୍ତ ପୁସ୍ତକ ପାଇଁ ସାଧାରଣ ଲୋକ କେତେଦୂର ଆଗ୍ରହ ପ୍ରକାଶ କରୁଥାନ୍ତି ତାହା ଇନ୍ଦ୍ର ନିଜ ଆଖିରେ ଦେଖିଲେ ।

ପୁସ୍ତକ ମେଳା ଯେତେବେଳେ ହେଉଛି, ପୁଣି ଓଡ଼ିଶାର ବହୁ କବି ଲେଖକମାନଙ୍କ ଆନୁକୂଲ୍ୟରେ, ସେତେବେଳେ ଏକାଡ଼େମୀ, କଲଚରାଲ ଡିପାର୍ଟ-ମେଣ୍ଟ ଷ୍ଟଲ ଦୁଇଟି ଖୋଲି, ସେମାନଙ୍କ ଅନୁରୋଧ ରକ୍ଷାକରି କେତେଖଣ୍ଡ ପୁସ୍ତକ ପ୍ରଦର୍ଶନ କଲେ । ସେହିପରି ଓଡ଼ିଆ ପ୍ରକାଶମାନେ ବୋଧେ ବାଧବାଧକତାରେ ସେମାନଙ୍କ ପ୍ରିୟ ଲେଖକମାନଙ୍କ ଅନୁରୋଧ ରକ୍ଷାକରି ପଳେଇ ଆସିଛନ୍ତି । ଆମ ଓଡ଼ିଆ ଭାଷା ପୁସ୍ତକ ଷ୍ଟଲ ତୁଳନାରେ ଇଂରାଜି ଭାଷା ପୁସ୍ତକ ଷ୍ଟଲଗୁଡ଼ିକ ବେଶ୍ ବଡ଼ ଏବଂ ଆକର୍ଷଣୀୟ ହୋଇଥିଲେ ମଧ୍ୟ ଏହା ମାତ୍ର ଦୁଇ ତିନିଗୋଟି ।

ତେବେ ଏ ପୁସ୍ତକମେଳା କାହାପାଇଁ ? ଯେଉଁ ପାଠକମାନେ ଇଂରାଜୀ ପୁସ୍ତକ କିଣିବେ, ସେମାନେ ଏ ମେଳାକୁ କାହିଁକି ଆସିବେ ?? ସେମାନେ ଦିଲ୍ଲୀ ଓ କଲିକତାଠାରେ ହେଉଥିବା ପୁସ୍ତକ ମେଳାରୁ ଏହାଠାରୁ ଆହୁରି ଶସ୍ତାରେ ସେ ବହିସବୁ ପାଇପାରିବେ । ଓଡ଼ିଆ ସାହିତ୍ୟ ଓ ଭାଷାର ପ୍ରସାର ପାଇଁ ଯଦି ଆମେ ପୁସ୍ତକମେଳା ଖୋଲିବା ଏବଂ ଜାତୀୟ ପୁସ୍ତକ ମେଳା ମାଧ୍ୟମରେ ଅନ୍ୟାନ୍ୟ ଭାଷାର ପୁସ୍ତକମାନ ପ୍ରସାର କରିବା, ତାହେଲେ ପୁସ୍ତକମେଳାକୁ ଏପରି ଭାବେ କରାଯାଉ ଆହୁରି ବୃହତ୍ତ ଧରଣରେ କରାଯାଉ । କେବଳ ଭୁବନେଶ୍ୱର ସହରରେ ନହୋଇ ରାଉରକେଲା, ବରହମପୁର, ସମ୍ବଲପୁର ଆଦିରେ କରାଯାଉ । ଗ୍ରାମାଞ୍ଚଳ ପାଠକମାନଙ୍କ ପାଇଁ ସେମାନଙ୍କ ରୁଚିବା ଅନୁଯାୟୀ 'ପୁସ୍ତକ' ମେଳାରେ ରଖାଯାଉ ।

ତାପୂର୍ବରୁ ଆମ ଓଡ଼ିଶାର ଗ୍ରାମ୍ୟାଞ୍ଚଳରେ ପାଠକମାନେ କେଉଁ ପ୍ରକାର ପୁସ୍ତକ ପଢ଼ିବାକୁ ଚାହାଁନ୍ତି, ତା'ଉପରେ କିଛି ଅନୁସନ୍ଧାନ କରାଯାଇ ନାହିଁ । ତେଣୁ ପ୍ରକାଶକମାନେ କେଉଁପରି ପୁସ୍ତକ, କେଉଁ ଲେଖକମାନଙ୍କ ପୁସ୍ତକ ଛାପିବେ, ତାହା ଜାଣିବାକୁ ସକ୍ଷମ ନୁହନ୍ତି । ଏହାର ମଧ୍ୟ ଗୋଟିଏ ଷ୍ଟଡ଼ି ସରକାରଙ୍କ ତରଫରୁ (ସାହିତ୍ୟ ଏକାଡ଼େମୀ) କରାଯାଉ । ତାହେଲେ ପ୍ରକାଶକ ମାନେ ଉପକୃତ ହେବେ । ପୁସ୍ତକ ବହୁ ସଂଖ୍ୟାରେ ବିକ୍ରୟ ହେଲେ ପାଠକମାନେ ଆକୃଷ୍ଟ ହେବେ । ତାଛଡ଼ା ଆମ ପ୍ରକାଶକମାନେ ପୁସ୍ତକ ଏଜେଣ୍ଟମାନଙ୍କୁ ଅଧିକ କମିଶନ ନଦେଇ, ସେମାନଙ୍କ ପୁସ୍ତକର ପ୍ରଚାରପାଇଁ କିଛି ଇଏସାର୍ଖର୍ଚ୍ଚ କରନ୍ତୁ । ତାହେଲେ ସାଧାରଣ ପାଠକମାନେ ପୁସ୍ତକ ବିଷୟ ଜାଣିବାକୁ ପାଇବେ । କମିଶନ କମ୍ ଦେଇ ପାଠକ-ମାନଙ୍କୁ ଶସ୍ତାରେ ବହି ବିକି କରିପାରିବେ । ଏହାକୁ ଖାଲି ଲେଖକ ସାମ୍ମୁଖ୍ୟ ନକରି ପ୍ରକାଶକ, ପାଠକ ସାମ୍ମୁଖ୍ୟ କରାଯାଉ । କଲିକତାଠାରେ ହୋଇଥିବା

ପୁସ୍ତକମେଳାକୁ ୧୧ଲକ୍ଷ ପାଠକ ଦର୍ଶକ ଯାଇଥିଲେ ଏବଂ ୨ କୋଟିରୁ ଅଧିକା ଟଙ୍କାର ବହି ବିକ୍ରୀ ହେଲା । ଦେଖାଯାଉ ଆମର ଏହି ପୁସ୍ତକ ମେଳାରେ କେତେ ଟଙ୍କାର ବହି ବିକ୍ରି ହେଉଛି !!!

(( ୪୧ ))

ପୁସ୍ତକମେଳା ଦେଖି ଫେରିବା ବାଟରେ, ଇନ୍ଦ୍ର ଦେଖିଲେ ଜଣେ ମଫସଲିଆ ଦରବୁଢ଼ା ଲୋକ, ଜଣେ ସହରୀ ବାବୁଙ୍କ ବେକରେ ତାଙ୍କ ଖୋର୍ଦ୍ଧା ନାଲିଗାମୁଛାକୁ ପକାଇ ଅମଣିଆ ବଳଦକୁ ଭିଡ଼ିଲା ପରି ରାସ୍ତାରେ ଘୋଷାରିଓଟାରି କରୁଥାନ୍ତି । ବାବୁଜଣଙ୍କ ବେକରୁ ଗାମୁଛା ଖସାଇବାକୁ ଯେତେ ଚେଷ୍ଟା କଲେ ମଧ୍ୟ ମଫସଲିଆ ଲୋକଟି ଛାଡ଼ୁ ନଥାଏ ।

ସେମାନଙ୍କ ଟଣାଓଟରା ଦେଖି ମେଳାରୁ ଫେରୁଥିବା ଲୋକମାନେ ଦେଖଣାହାରୀ ଭାବେ ଠିଆ ହୋଇଗଲେ । କିଛିସମୟ ପରେ, ସେ ଦୁଇଜଣ ମଝିରେ ଏବଂ ତାଙ୍କ ଚାରିପଟେ ଦର୍ଶକ ଘେରିଗଲେ । ସମସ୍ତଙ୍କୁ ମଜା ଲାଗୁଥାଏ । ଜଣେ ଫୁଙ୍ଗୁଳା ଦେହ ଧୋତି ପିନ୍ଧା ମଫସଲିଆ, ଆଉ ଜଣେ ଧୋବଧାବଲିଆ ଫୁଲପ୍ୟାଣ୍ଟ ଶାର୍ଟ ପିନ୍ଧା ସହରୀ ବାବୁଙ୍କୁ ଖୋଦ୍ ଓଡ଼ିଶାର ରାଜଧାନୀର ରାଜ-ଦାଣ୍ଡରେ ବେକରେ ଗାମୁଛା ପକାଇ ହାଲବୁଲାଇଲା ପରି କରୁଥାନ୍ତି । ମଝିରେ ମଝିରେ ଶୁଣିବାକୁ ମିଳୁଥାଏ "ଶଳା ଲୁଚି ଲୁଚି କେଉଁ ଯାଉଥିଲୁ । ଦୁ'ବର୍ଷ ହେଲା ମତେ ଏ ଗୋଧାରୁ ସେ ଗୋଧାରେ ବୁଲାଇ ଅଥାନ୍ତ କଲୁଣି, ଆଜି ପୁଅ ଯିବ କୁଆଡ଼େ" ?

କିଛି ସମୟ ପରେ କେତେଜଣ ଦର୍ଶକଙ୍କ ଅନୁରୋଧ କ୍ରମେ, ମଫସଲିଆ ଜଣଙ୍କ କହିଲେ ଯେ ଗଲା ଦୁ ବର୍ଷ ତଳେ ସେହି ଭୁବନେଶ୍ୱରିଆ ସହରୀବାବୁ ଜଣଙ୍କ ଜଣେ ମନ୍ତ୍ରୀଙ୍କ ସଙ୍ଗେ ଗସ୍ତରେ ତାଙ୍କ ଗାଁଆଡ଼େ ଯାଇଥିଲେ । ତାଙ୍କ ଗ୍ରାମ-ବାସୀଙ୍କ ଆଗେ ସେ ମନ୍ତ୍ରୀଙ୍କ ଅତି ବିଶ୍ୱସ୍ତ ଲୋକ ବୋଲି ପ୍ରଚାର କରିଥିଲେ । ସେମାନେ ମଫସଲ ଅଞ୍ଚଳର ଲୋକ ହୋଇଥିବା ଯୋଗୁ ଏତେ ଭିତରକୁ ପଶି ସେ ଭଦ୍ରଲୋକଙ୍କ ବିଷୟରେ ଯଥେଷ୍ଟ ଖବର ଜାଣିବାକୁ ଚେଷ୍ଟା କରିନଥିଲେ ।

ଅବସ୍ଥାଚକ୍ରରେ ପଡ଼ି, ତାଙ୍କର ଗୋଟିଏ ପୁଅ ବି.ଏ. ଫେଲ୍ ହୋଇ ଗାଁରେ ବସିଥିଲା । ଆଜିକାଲି ଯୁଗରେ ସମସ୍ତେ ବିଶ୍ୱାସ କରନ୍ତି, "ଉପରବାଲାଙ୍କୁ ନ ଧରିଲେ, ଆଉ କିଛି ତା ସହିତ ନ ଦେଲେ" ପ୍ରାର୍ଥୀ ଯେତେ ଭଲ କରିଥିଲେ ମଧ୍ୟ

ଗ୍ଣ୍ଣର ମିଳିବା ସମ୍ଭବ ନୁହେଁ । ଏ ଧାରଣା, ଏବେ ବି ସ୍ପଷ୍ଟଆଡ଼େ ବଳବତ୍ତର ହୋଇ ରହିଛି ।

ସହଗଣିବାବୁ ଜଣକ ମନ୍ତ୍ରୀଙ୍କ ପାଖଲୋକ ପରି ଦେଖାଯାଉଥିବା ହେତୁ ଗ୍ରାମବାସୀ ଜଣଙ୍କ ତାଙ୍କ ପୁଅ ଗ୍ଣ୍ଣକାମ ପାଇଁ ବ୍ୟାକୁଳ ହୋଇ ତାଙ୍କୁ ଅନୁରୋଧ କରିଥିଲା । ସହଗଣିବାବୁ ତାଙ୍କୁ 'ହଉ ଦେଖିବା, ଭୁବନେଶ୍ୱର ଆସ, ଗ୍ଣ୍ଣକରି କଅଣ ଏତେ ସୁବିଧାରେ ମିଳେ' କହି ତିନିଥରଥର ଭୁବନେଶ୍ୱର ଡ଼କାଇଲେ । ଲୋକଟି ବିଚରା ଖର୍ଚ୍ଚାନ୍ତ ହୋଇ ଆସୁଥାଏ । ସେ ମଧ୍ୟ ଦେଖୁଥାଏ ସହଗଣି ବାବୁ ଜଣଙ୍କ ବଡ଼ବଡ଼ ଅଫିସର, ମନ୍ତ୍ରୀଙ୍କ ଘର ଭିତରକୁ ଯିବା ଆସିବା କରେ । ଅବଶ୍ୟ କଅଣ କଥାବାର୍ତ୍ତା ହୁଏ, ସେ ବିଷୟରେ ତାଙ୍କୁ ଜଣା ନଥାଏ । କାରଣ ସବୁ ସମୟରେ ତାଙ୍କୁ ଗେଟ୍ ବାହାର ଗଛମୂଳେ ବସାଇ ଦେଇ ବାବୁ ଭିତରକୁ ଯାଆନ୍ତି ଆଉ ଆସନ୍ତି । ଶେଷକୁ ପାଞ୍ଚହଜାର ଟଙ୍କା ଦେଲେ ପିଅନ ପୋଷ୍ଟ କରିଦେବେ କହି ତାଙ୍କଠାରୁ ଆଜକୁ ଦୁଇବର୍ଷ ହେଲା ପାଞ୍ଚ ହଜାର ନେଇଛନ୍ତି । ଟଙ୍କା ନଥିବା ଯୋଗୁ ମଫସଲି ଜଣଙ୍କ ମାଣେ ଜମି ବିକି ଟଙ୍କା ଯୋଗାଡ଼ କରିଥିଲେ ।

ଟଙ୍କା ନେଲାପରେ କିନ୍ତୁ ସହଗଣିବାବୁଙ୍କ ଦେଖା ମିଳିଲାନି କି ପୁଅର ଗ୍ଣ୍ଣକାମ ହେଲାନି । ଥରେ ଦୁଇଥର ଏପଟ ସେପଟ ବୁଲିଲାପରେ, ବାବୁ ଦେଖାହେଲେ ଆଜି ହେବ, କାଲି ହେବ କହି ଠକୁଥାନ୍ତି । ସେ ଯେତେବେଳେ ଦେଖିଲେ, ଆଉ ଗ୍ଣ୍ଣର ତାଙ୍କ ପୁଅକୁ ମିଳିବାର ଆଶା ନାହିଁ, ସେ ତାଙ୍କ ଟଙ୍କା ଫେରସ୍ତ ଦବାକୁ ବାବୁଙ୍କୁ କହିଥିଲେ ।

ଟଙ୍କା ଫେରସ୍ତ ନାଁ ଶୁଣି ବାବୁ ଦୁଇବର୍ଷ ହେଲା ତାଙ୍କୁ ଦର୍ଶନ ଦଉ ନଥିଲେ । ଆଜି ଏତେଦିନ ପରେ ହାବୁଡ଼େ ପଡ଼ିଛନ୍ତି । ଟଙ୍କା ଆଦାୟ ନ କଲେ ବେକରୁ ଗାମୁଛା କାଢ଼ିବେନି, ତେଣିକି ଯାହାହେଉ ।

ସମସ୍ତେ ଏକଥା ଶୁଣି କହିଲେ—ଠିକ୍ କାମ କରିଛନ୍ତି । ଆଜିକାଲିର ଧୋବଧାବଳିଆ ସହଗଣି ଟାଉଟରମାନଙ୍କ ପାଇଁ ଏ ଠିକ୍ ପ୍ରେସ୍କ୍ରିପ୍ସନ ମେଡ଼ିସିନ୍ । ଯେଉଁମାନେ ଏହିପରି ସହଗଣି ବାବୁମାନଙ୍କୁ ଗ୍ଣ୍ଣକରିପାଇଁ ପଇସା ଦେଇଛନ୍ତି, ଏ ଔଷଧ ବ୍ୟବହାର କଲେ ସେ ଋଣରୁ ମୁକ୍ତ ହେବେ ।

ରାଜରାସ୍ତା ଉପରେ ଝଗଡ଼ା ହେଉଥିବାର ଖବର ପାଇ ପୁଲିସ ଗାଡ଼ି ଆସି ପହଞ୍ଚିଗଲା । ମଫସଲୀ ବାବୁ ଆଉ ସହଗଣିବାବୁ ଦୁଇଜଣଙ୍କୁ ଗାଡ଼ିରେ ବସାଇ ପୁଲିସବାଲା ଥାନାକୁ ବାହାରିଲେ । ଦର୍ଶକମାନେ ପୁଲିସ ବାବୁମାନଙ୍କୁ କହୁଥାନ୍ତି ଆଜ୍ଞା ଏ ମଫସଲି ଭାଇଟି ଏତେଦିନ ପରେ ସେ ବାବୁଙ୍କ ଲିଙ୍କ

ମେଡ଼ସିନ' ଦେଇଛନ୍ତି । ତାଙ୍କର କିଛି ଦୋଷ ନାହିଁ । ସହଯାତ୍ରୀବାବୁଙ୍କ କଥା ଭଲକରି ବୁଝନ୍ତୁ ।"

ପୁଲିସ ଗାଡ଼ି ଚାଲିଗଲା ପରେ, ରାସ୍ତାରୁ ଜନଗହଳି ଭାଙ୍ଗିଗଲା । ଦର୍ଶକ-ମାନେ ନିଜ ନିଜ ବାଟରେ ଚାଲିଲେ । ଇନ୍ଦ୍ର ସେମାନଙ୍କ ସଙ୍ଗେ ସାଙ୍ଗହୋଇ ଚାଲିଥାନ୍ତି । ଲୋକମାନେ କହୁଥାନ୍ତି, ଦେଖନ୍ତୁ ଏ ଯୁଗରେ 'ଠକେଇ' କେତେ ରୂପନେଇ ଆମ ସମାଜ ଭିତରକୁ ପ୍ରବେଶ କଲାଣି । ସମାଜର ସବୁଠାରୁ ଉପର ରାଜନୈତିକ ସ୍ତରରେ ଠକେଇ, ସେମାନଙ୍କ ପାଖରେ ଯେଉଁମାନେ ରହିଲେ, ସେମାନେ ଲୋକମାନଙ୍କୁ ଉପରବାଲାଙ୍କୁ କହି ଅମୁକ କରିଦେବୁ, ସମୁକ କରିଦେବୁ କଲେ ଠକେଇ । ଅଫିସରମାନେ ବ୍ୟାଙ୍କ, ଟ୍ରେଜେରି, ଅଫିସମାନଙ୍କରେ ଗରିବ ଚାକିରିଆମାନଙ୍କ ଜମା ଟଙ୍କାକୁ ଠକେଇ କରି ଲୁଟି ଖାଇଲେ । ବ୍ୟବସାୟୀମାନେ ଗୋଟିଏ ଜିନିଷ ଆଗରେ ଦେଖେଇ ପଛରେ ସେଇ ଜିନିଷ ମଧ୍ୟରେ 'ଭେଜାଲ' ପୁରାଇ "ଗରାଖମାନଙ୍କୁ ଠକିଲେ । ଏପରିକି ଖାଇବା ଜିନିଷମାନଙ୍କରେ ଏଇ 'ଠକେଇ' ପରିମାଣ ସବୁଠାରୁ ବେଶୀ ହେଲା । ଚା' ଟିକିଏ ପିଇଲେ, ଯେ ଗୁଣ୍ଡି ଚା' ପ୍ରକୃତରେ ଚା' କି ଚମଡ଼ାଗୁଣ୍ଡି ରଙ୍ଗ ଦିଆହୋଇ 'ଚା' ହୋଇଛି, କେହି ଠିକ୍ ଭାବେ କହିପାରିବେନି । ଅନ୍ୟାନ୍ୟ କଥାତ ଛାଡ଼ ।

ଜଣକ କଥା ଶୁଣି ଆଉ ଜଣେ କହିଲା—'ଭାଇ ଆପଣ ଯାହାସବୁ 'ଠକେଇ' ଉପରେ କହିଗଲେ, ଏ ସବୁତ ନିରାଟ ସତ୍ୟ । କିନ୍ତୁ ଏ ସମସ୍ତ 'ଠକେଇ' ସମାଜରେ ବଡ଼ ପଦାର୍ଥକୁ ନେଇ ହୋଇଗଲା । ମାତ୍ର ଆପଣ ଆମ ସମାଜରେ ବର୍ତ୍ତମାନ ଯେଉଁପରି ଭାବେ 'ନୈତିକ ଠକେଇ' ଚାଲିଛି, ସେ ବିଷୟରେ ସତର୍କ ହେବା ଉଚିତ୍ ।

ଆପଣ କହିଲେ ଆମ ସମାଜରେ 'ସତ' କିଏ କହୁଛି ? ରାଜ ଦରବାରରେ (କୋର୍ଟ କଚେରୀରେ) ଯେଉଁ ସତ୍ୟପାଠ କରାଯାଇ, ସାକ୍ଷୀ ପ୍ରମାଣ ଗ୍ରହଣ କରା-ଯାଉଛି, ସେ ସମସ୍ତ କେତେ ପରିମାଣରେ 'ସତ୍ୟ' ଏହା ସମସ୍ତେ ଜାଣନ୍ତି । ଏ ସମସ୍ତ ଜାଣି ମଧ୍ୟ,ଆମେ 'ଶପଥ ପାଠ' କରୁଚେ ଏବଂ ତାହାକୁ ଗ୍ରହଣ କରି ଆଗେଇ ଚାଲିଛେ । ଏହା ସାମାଜିକ ନ୍ୟାୟ ଏବଂ ସମାଜକୁ 'ଠକେଇ' କରାଗଲା ବୋଲି କୁହାଯିବନି ?

ଏ ତ ଗଲା ରାଜଦରବାର । ଏବେ ଘରକୁ ଆସନ୍ତୁ । ଘରେ ପୁଅ, ଝିଅ, ମା' ବାପାଙ୍କୁ ଠକି, ସ୍କୁଲ, କଲେଜକୁ ନଯାଇ, ସାଙ୍ଗସାଥିମାନଙ୍କ ସଙ୍ଗେ ସିନେମା ଦେଖି, ପାଠ ପଢୁଛନ୍ତି ବୋଲି କହୁଛନ୍ତି । ଅନ୍ୟାନ୍ୟ ଯାହାସବୁ କାମ କରୁଛନ୍ତି,

ବାପ ପଗ୍ଭରଲେ ସେମାନେ ନଦା ବଷ୍ଟୁ ବୋଲି କୁହନ୍ତି । ଏଣେ ବାପ, ମା'କୁ ଠକେଇ ବାହାରେ କାହାସଙ୍ଗେ ଗଲେଣି । ଘରେ ସ୍ତ୍ରୀ ପଗ୍ଭରିଲା ବେଳକୁ ମିଛସତ କହି ବଭିନ୍ନ ପ୍ରକାର ଜବାବ । ବାପ, ମା'କୁ ଠକୁଛନ୍ତି; 'ମା' ବାପାଙ୍କୁ; ଛୁଆମାନେ 'ବାପ ମା'ଙ୍କୁ ।

ଏଣେ ଶିକ୍ଷାନୁଷ୍ଠାନରେ ବ ଠକେଇ । ଶିକ୍ଷକମାନେ ପାଠପଢି ପିଲାମାନଙ୍କ କ୍ଲାସ ନେବା ଅତ କ୍ୱଚତ । କ୍ଳାସକୁ ଆସି, ର, ଠ କର ହପଦ କହି ସେ ପିଲା-ମାନଙ୍କୁ ଠକ ଗ୍ଭଲଲେ । ପିଲାମାନେ ବ ସେହିପର ବହି ପକେଇ କପିକର, ମାଷ୍ଟ୍ର-ମାନଙ୍କୁ ଠକଲେ । 'ଭଣ୍ଡ ଗୁରୁ'ମାନେ ଗାଁ ଗଣ୍ଡା, ସହର ବଜାର ବୁଲି ଏବେ ଭକ୍ତମାନଙ୍କୁ ଠକିଲେଣି । ସବୁଦନ ଖବରକାଗଜ, ପତ୍ର ପତ୍ରିକାରେ ଠକ ବାବା ମାନଙ୍କ ସମ୍ବାଦ ପରବେଷଣ କରାହାଉଛି । ଏ ଠକ ବାବାମାନେ ଏତେ ବଢ଼ି ଗଲେଣି ଯେ, ଆଉ ଭଲ ବାବା ଅଛନ୍ତି ବୋଲି ଜାଣିବା ବଡ଼ କଷ୍ଟକର ହେଲେଣି ।

ସମ୍ବାଦପତ୍ର, ପତ୍ରପତ୍ରିକାରେ ବ 'ଠକେଇ' । ପର ବହିକୁ ଚୌରରେ ଛାପି ବକ୍ରୀ କରବା, ମିଛ ସମ୍ବାଦ ପରବେଷଣ କର ପାଠକମାନଙ୍କୁ ଠକେଇବା, ଏହା ମଧ୍ୟ ଆମ ସମାଜରେ ବେଶ୍ ଯୋରରେ ଗ୍ଭଲଛି । ଆଦ୍ଭୁତ ମଧ୍ୟ ।

ଶ୍ରୋତା ବନ୍ଧୁ ଜଣକ କହିଲେ, "ଏବେ ଠକ ଦେବତାମାନେ ବ ଆବର୍ଭାବ ହେଲେଣି—ମଣିଷ ରୂପରେ, ପଥର ରୂପରେ, ଗଛ ରୂପରେ ମଧ୍ୟ । ଯୁଆଡେ ଯାଅ ଦେଖିବ, ରାସ୍ତା କଡ଼ରେ ଛକମୁଣ୍ଡରେ, ବରଗଛ ମୂଳ ଗୋଟେ ପଥର ମୁଣ୍ଡରେ ସିନ୍ଦୂର ବୋଳା ଗ୍ଭଲଛି, କୀର୍ତ୍ତନ ଗଞ୍ଜେଇ ସବୁ । ସଙ୍ଗେ ସଙ୍ଗେ ଠାକୁରଙ୍କ ଆବର୍ଭାବ । ତା'ଛଡ଼ା ତ ବନ୍ଧୁ 'ମାନବ' ଏବେ ଭଗବାନ ହେଲେଣି । ଆମଗାଁ 'ଚନ୍ଦର ଦାସ' ଏବେ ଭଗବାନ 'ଚନ୍ଦ୍ରଚୂଡ଼' ।"

ଇନ୍ଦ୍ର ଏତକଶୁଣି ଭାବଲେ ଯାହାହେଉ ଏତେ ଦନପରେ ଏ ଧରା ରୂପ ବଦଳାଉଛି ।

ଇନ୍ଦ୍ରଙ୍କ ସାଥିରେ ଆଉ କେତେଜଣ ସାଙ୍ଗ ହୋଇ ଆସୁଥିଲେ । ଖୋଦ୍ ରାଜଧାନୀର ରାଜଦାଣ୍ଡ ଉପରେ ଜଣେ ଧୋବଧାଉଳିଆ ଶିକ୍ଷିତ ଠକ ବେକରେ ଗାମୁଛା ପକେଇ ରାସ୍ତାରେ ଭଡ଼ିବା ସମସ୍ତଙ୍କ ପାଇଁ ଗୋଟିଏ ଉପଭୋଗ୍ୟ ଦୃଶ୍ୟ ହୋଇଥିଲା । ଦୃଶ୍ୟଟାକୁ ଉପଭୋଗ କରବା ସଙ୍ଗେ ସଙ୍ଗେ, ନଜେ ନଜେ କପର ଠକମାନଙ୍କ ଦ୍ୱାରା ଅତୀତରେ ନର୍ଯ୍ୟାତତ ହୋଇଥିଲେ, ସେଇ କଥା ମନେ ପକାଇ କିଏ ଅଶ୍ରାବ୍ୟ ଭାଷାରେ ସମ୍ବୋଧନ କରୁଥାଏ ତ କିଏ ପ୍ରଚଳିତ ଆଇନର ପରବର୍ତ୍ତନ ଉପରେ ଟିପ୍ପଣୀ ଦଉଥାଏ । ତାରଭିତରେ ଜଣେ ଗାଉଁଲି ଯୁବକ କହିଲେ,

"ଆଉ କଅଣ କହିବ, ଏଇ ଠକମାନଙ୍କ ପାଲରେ ପଡ଼ି ଗତବର୍ଷ ମୁଁ ମୋର ସ୍ତ୍ରୀକୁ ହରାଇଲି ।"

ତାଙ୍କ କଥା ଶୁଣି ସମସ୍ତେ କାନ ଡେରିଲେ । ଭାବିଲେ ଗୋଟେ ମଜା ଗପ ହୋଇପାରେ ।

ଯୁବକ ଜଣକ କହିଲେ, ତାଙ୍କ ସ୍ତ୍ରୀଙ୍କ ଦେହ ଅସୁସ୍ଥତା ଯୋଗୁ ସେ ତାଙ୍କୁ ମଫସଲ ଗାଁରୁ କଟକରେ ଚିକିତ୍ସା କରିବା ପାଇଁ ଆଣିଥିଲେ । କଟକ ବସଷ୍ଟାଣ୍ଡରେ ପହଞ୍ଚିଲା ବେଳକୁ ଜଣେ ଲୋକ ତାଙ୍କୁ ଭଲ ଡ଼ାକ୍ତରଙ୍କ ପାଖେ ଚିକିତ୍ସା କରାଇ ଦେବ କହି ରିକ୍ସାରେ ବଡ଼ ମେଡ଼ିକାଲକୁ ନେଲା । କିଛି ସମୟ ଡ଼ାକ୍ତରଖାନା ଗଛମୂଳେ ବସିଲା ପରେ, ସେ ଭଦ୍ରଲୋକ, ତାଙ୍କ ସ୍ତ୍ରୀଙ୍କ ମଳ, ମୂତ୍ର, ରକ୍ତ ପରୀକ୍ଷା ହେବ ବୋଲି କହି ତାଙ୍କୁ ସହର ଭିତରେ ଥିବା ପ୍ରାଇଭେଟ ଡାକ୍ତରଙ୍କ ଦ୍ୱାରା ପରୀକ୍ଷା କରିବାକୁ ନେଇଗଲା । ଡାକ୍ତରଖାନାରେ ଏସବୁ ପରୀକ୍ଷା କଲେ, ରିପୋର୍ଟ ଆସିବାକୁ ବହୁଦିନ ଲାଗିବ । ପୁଣି ସରକାରୀ ଡ଼ାକ୍ତରଖାନାରେ କାହା ମଳ, କାହା ମୂତ୍ର କୁଆଡ଼େଯାଏ କେହି ଜାଣିପାରନ୍ତିନି ।

ମଫସଲିଆ ଯୁବକ ଜଣକ ତା'କଥାରେ ସମର୍ଥନ ଦେଲେ । ସହରରେ ଦିନ ଦିନ ଧରି ରୋଗିଣୀ ସ୍ତ୍ରୀକୁ ଧରି ରହିବା ଅପେକ୍ଷା ବାହାର ଡାକ୍ତର ପଇସା ନିଅନ୍ତୁ ପଛେ, ଚିକିତ୍ସା ଜଲଦି ହେଉ ।

ଏ ସମସ୍ତ ପରୀକ୍ଷା ପାଇଁ ଲୋକଟି ତାଙ୍କଠାରୁ ବେଶି ପଇସା ଆଦାୟ କଲା । ରିପୋର୍ଟ ଆଣି, ଆଉଥରେ ଡ଼ାକ୍ତରଖାନାରେ ଲାଇନ ଦେଇ ଡ଼ାକ୍ତରଙ୍କ ପାଖକୁ ଗଲାବେଳକୁ, ସେ ଡ଼ାକ୍ତର କହିଲେ ତାଙ୍କ ସ୍ତ୍ରୀଙ୍କ ରୋଗ ଆଉ ଜଣେ ଡ଼ାକ୍ତର ଦେଖିବେ । ଜଣେ ଡାକ୍ତର ପାଖରୁ, ଆଉଜଣେ ଡ଼ାକ୍ତର ପାଖକୁ ଯିବା ଆସିବାରେ ଏବଂ ଭଦ୍ରଲୋକଙ୍କ ରିକ୍ସାଭଡ଼ା, ଜଳଖିଆ, ପାନ ଖର୍ଚ୍ଚରେ ସେ ସାଙ୍ଗରେ ଆଣିଥିବା ସମସ୍ତ ପଇସା ତିନି ଚାରିଦିନରେ ଶେଷ ହୋଇଗଲା । ସେ ପର୍ଯ୍ୟନ୍ତ ଚିକିତ୍ସକ ଦେଖା ନଥାଏ । ଚାରିଦିନ ପରେ, ତାଙ୍କ ପାଖେ ଖାଇବାକୁ ପଇସା ନଥାଏ । ପଇସା ସରିଗଲା ପରେ ସେ ମଧ୍ୟସ୍ଥ ଭଦ୍ର ଲୋକମଧ୍ୟ ମିଳିଲେନି । ରୋଗୀଣା ସ୍ତ୍ରୀ ବେକର ଦିଅଣା ଓଜନର ସୁନା ଜେନ୍‌କୁ କଟକ ସହରରେ ନକଡ଼ା ଛକଡ଼ାରେ ବିକି ଅଗତ୍ୟା ସେମାନେ ଗାଁକୁ ଫେରିଲେ । କିଛି ପଇସା ଯୋଗାଡ଼ କଲେ ସ୍ତ୍ରୀଙ୍କ ଅପରେସନ ହେବ । ମାତ୍ର ଅପରେସନ ପର୍ଯ୍ୟନ୍ତ ତାଙ୍କ ସ୍ତ୍ରୀ ଅପେକ୍ଷା କଲେନି । କଟକରୁ ଫେରିବାର ଆଠ ଦିନରେ ସେ ତାଙ୍କୁ ଛାଡ଼ି ସ୍ୱର୍ଗାରୋହଣ କଲେ । ସେଇ ଦିନରୁ ସେ ଗାଁ ଛାଡ଼ି ସହରରେ ବୁଲୁଛନ୍ତି । ଯେଉଁଦିନ ଯାହା କାମ ମିଳିଲା

କରୁଛନ୍ତି । ତାଙ୍କର ଅବଶୋଷ ରହିଗଲା, ସେ ଯଦି ସହରରେ ଥାନ୍ତେ କିମ୍ବା ସହର ବିଷୟରେ ଜାଣିଥାନ୍ତେ, ତା'ହେଲେ ସେ ସହସ୍ର ଡାକ୍ତରଙ୍କ ତାଙ୍କୁ ଠକି ପାରିନଥାନ୍ତା ।

ଇନ୍ଦ୍ର କହିଲେ, ''ଆପଣ ଯାହା କହିଲେ ଠିକ୍ । କଟକ, ବରହମପୁର, ସମ୍ବଲପୁର ସହରମାନଙ୍କରେ ଭଲ ଡ଼ାକ୍ତରମାନଙ୍କ ପାଖେ ଚିକିତ୍ସା କରାଇ ଦେବେ କହି ମଫସଲ ଲୋକମାନଙ୍କୁ ଏପରି ଠକିବାର ବହୁ ଦୃଷ୍ଟାନ୍ତ ଅଛି । ଏବେ ବି ଘଟୁଛି । ଏଥିପ୍ରତି ସମସ୍ତେ ସତର୍କ ହେବା ଉଚିତ । ଏଥିରେ ଡ଼ାକ୍ତରମାନେ ବଦନାମ ବେଶି ହେଉଛନ୍ତି । କାରଣ ରୋଗୀ ଠିକ୍ ଡାକ୍ତରଙ୍କ ପାଖକୁ ନ ଯାଇ ପାରିବାରୁ ଉପଯୁକ୍ତ ଚିକିତ୍ସା ପାଉନାହାନ୍ତି । ରୋଗୀ ମଲେ ଡ଼ାକ୍ତରର ବଦନାମ । ତେଣୁ ଏସବୁ ସହରରେ ଡ଼ାକ୍ତରମାନେ ଠକମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରନ୍ତୁ ।

## ( ୪୬ )

ଇନ୍ଦ୍ର ଫେରିବା ବାଟରେ ଦେଖିଲେ ଦୁଇଜଣ ଲୋକଙ୍କ ମଧ୍ୟରେ ଖୁବ୍ ଜୋରସୋରରେ ତର୍କବିତର୍କ ଚାଲିଛି । ଜଣେ ହାତରେ ଖବର କାଗଜ ଖଣ୍ଡେ ଧରି ଅନ୍ୟ ଜଣକୁ ଦେଖାଇ କହୁଥାଏ, ''ହେଇଟି ଦେଖ, ବାହାରିଛି, ପୁଲିସବାଲା ଥାନାରେ ଏଫ: ଆଇ: ଆର କପି ଅଭିଯୋଗକାରୀ ମାନଙ୍କୁ ଦଉନାହାନ୍ତି । ଯେଉଁ କ୍ଷେତ୍ରରେ ମିଳୁଚି, ସେଠାରେ ·ପଇସା ଦେଲାପରେ ମିଳୁଛି । ଏଇକଥା ଉପରେ ଜଣେ କହୁଛି ଏହା ସତ୍ୟ । ଅନ୍ୟ ଜଣେ କହୁଛି, ଯେଉଁମାନେ ଏପରି ଅଭିଯୋଗ କରୁଛନ୍ତି, ସେମାନେ ପ୍ରକୃତ ସତ୍ୟ ଜାଣି ନାହାନ୍ତି । ଜଣକଠାରୁ ଶୁଣି ଏପରି କହୁଛନ୍ତି ।

ଇନ୍ଦ୍ର ସେମାନଙ୍କ ତର୍କ ବିତର୍କ ଶୁଣି, ଦୁଇଜଣଙ୍କ ମଧ୍ୟରୁ କିଏ ସତ ଆଉ କିଏ ମିଛ କହୁଛି ଠିକ୍ କରିପାରିଲେ ନାହିଁ । ତେଣୁ ସେ ଭାବିଲେ ଗୋଟିଏ ଥାନାକୁ ଯାଇ ନିଜେ ଏ ଘଟଣାର ସତ୍ୟାସତ୍ୟ ବିଷୟରେ ବୁଝିଲେ, ସନ୍ଦେହ ଦୂର ହେବ । ତେଣୁ ସେ ତାଙ୍କର ସନ୍ଦେହ ମୋଚନାର୍ଥେ ଗୋଟିଏ ମଫସଲ ଥାନା ଭିତରକୁ ପ୍ରବେଶ କଲେ ।

ଥାନାରେ କିଛି ସମୟ ବସିଲା ପରେ, ଥାନା ବଡ଼ବାବୁ, ସାନବାବୁ ସମସ୍ତେ ତାଙ୍କ ଆଗମନ କଥା ପଚାରିଲେ । ଇନ୍ଦ୍ର ତାଙ୍କୁ ସମସ୍ତ କଥା କହିଲେ ଏବଂ ଏ ବିଷୟରେ ସତ ଘଟଣା କ'ଣ କହିବାକୁ ଅନୁରୋଧ କଲେ ।

ଥାନାବାବୁ ଇନ୍ଦ୍ରଙ୍କଠାରୁ ସମସ୍ତ ବୃତ୍ତାନ୍ତ ଜାଣିଲା ପରେ କହିଲେ, "ଦେଖନ୍ତୁ ଭାଇନା, ତୁମେ ବ୍ରାହ୍ମଣ ଲୋକ । ମୁଁ ଥାନାରେ ୨୦ ବର୍ଷ ହେଲା ଚାକିରି କଲିଣି । ଯାହା କହୁଛି ଆପଣ ବିଶ୍ୱାସ କରିବେ । ଫୌଜଦାରୀ କାର୍ଯ୍ୟବିଧି ଅଇନର (ସି ଆର ପି ସି.) ୧୫୪ (୨) ଧାରା ଅନୁସାରେ ଥାନାର ଅଫିସର, ଅଭିଯୋଗକାରୀଙ୍କୁ ଏକକପିତା ଏଫ. ଆଇ. ଆର କପି ମାଗଣାରେ ଯୋଗାଇ ଦବାକୁ ବାଧ୍ୟ । ମାତ୍ର ବହୁ କ୍ଷେତ୍ରରେ ଏହା ଦିଆଯାଉନାହିଁ । ଦିଆଯାଉନାହିଁର ଅର୍ଥ ନୁହେଁ ଯେ ପଇସା ନ ଦେଲାରୁ ଦିଆଯାଉନାହିଁ । ଏହାର କାରଣ ହେଲା, ଥାନାରେ ଏଫ. ଆଇ. ଆର. କେବଳ ଅଫିସର ଇନ୍‌ଚାର୍ଜ କରନ୍ତି । ତାଙ୍କ ଦସ୍ତଖତ୍ ପ୍ରତ୍ୟେକ ପ୍ରାଥମିକ ରିପୋର୍ଟରେ ଥାଏ । କିନ୍ତୁ ବିଭିନ୍ନ କାର୍ଯ୍ୟ ବ୍ୟସ୍ତଯୋଗୁ ଜଣେ ଅଫିସର ଯେତେ-ବେଳେ ବାହାର କାର୍ଯ୍ୟରେ ବ୍ୟସ୍ତ ରୁହେ, ସେତେବେଳେ ଅଭିଯୋଗକାରୀ ଯଦି ଗୋଟିଏ ଲିଖିତ ଦରଖାସ୍ତ ଦେଲେ, ସାଧାରଣ କ୍ଷେତ୍ରରେ ଥାନାରେ ଉପସ୍ଥିତ ଥିବା କନେଷ୍ଟବଲ, କିମ୍ବା ଏ: ଏସ: ଆଇ: ଦରଖାସ୍ତକୁ ରଖନ୍ତି ଏବଂ ଅଭିଯୋଗ-କାରୀଙ୍କୁ ପରେ ଅସିବାକୁ କୁହନ୍ତି । ତାର ଅର୍ଥହେଲା ବାବୁ ଅସିଲେ ଏଫ.ଆଇ.ଆର ବହିରେ ଚଢ଼ାଇ, ନମ୍ବର ପକାଇ ଦେବେ । ମାତ୍ର ଅଭିଯୋଗକାରୀ ଏହାକୁ ଅନ୍ୟ ଅର୍ଥରେ ବୁଝନ୍ତି ।

ଦ୍ୱିତୀୟ କାରଣ ହେଲା, ବର୍ତ୍ତମାନ ସରକାରୀ ଏଫ୍. ଅ.ଇ ଆର ବହି ଯାହା ଥାନାକୁ ଯୋଗାଇ ଦିଆହୋଇଛି, ତା'ଦେହରେ ଚାରିଗୋଟି ଫର୍ମଅଛି । ଥାନାବାବୁ F. I. R. କପି, ଗୋଟେ ଗୋଟେ ମାଜିଷ୍ଟ୍ରେଟଙ୍କୁ, ଏସ.ପି, ଏସ. ଡି.-ପି. ଓ, ସର୍କଲ ଇନସ୍‌ପେକ୍ଟରଙ୍କୁ ଦବାକୁ ବାଧ୍ୟ । ଅଉ ଗୋଟେ ତାଙ୍କ ବହିରେ ରହିବ । ଏଠାରେ ୫ଗୋଟି କପି ହେଲାଣି । ପୁଣି ଗୋଟେ କପି କରି ଅଭିଯୋଗ-କାରୀଙ୍କୁ ଦବାକୁ ହେବ । କାର୍ବନ୍ ପକାଇ କପିକଲେ ମଧ୍ୟ ଥରକେ ଚାରି କପିରୁ ଅଧିକା ହେବନି । ତେଣୁ ଗୋଟେ ଗୋଟେ F. I. R କରିବାକୁ ବା ଲେଖିବାକୁ ସମୟ ଦରକାର । ଏଥିପାଇଁ ଅଭିଯୋଗକାରୀ ଅପେକ୍ଷା କଲେ ହେବ ।

ତୃତୀୟରେ ହେଲା, ବହୁତ ସମୟରେ ବିଭିନ୍ନ ପ୍ରକାର ଟାଉଟର ଶ୍ରେଣୀର ଲୋକ, ଅନ୍ୟ ସରଳ ନିରୀହ ଲୋକମାନଙ୍କୁ ହଇରାଣ କରିବା ଉଦ୍ଦେଶ୍ୟରେ (ଲିଟିଗେସନ) ମିଛ ସତ କରି Cog-case ଫର୍ମରେ ରିପୋର୍ଟ କରନ୍ତି । ସେ ସବୁକୁ ଯଦି ଟିକିଏ ଭଲକରି ନଦେଖି ତାଙ୍କର ରିପୋର୍ଟ ଉପରେ F. I. R. କରାଯିବ, ତା'ହେଲେ ଝାମେଲା ଏତେ ବଢିବ ଯେ ତାକୁ ଥାନା କି କୋର୍ଟ ସମ୍ଭାଳିବା କଷ୍ଟ ହେବ । ପୁଣି ଭଲ ଲୋକମାନେ ଥାନାକୁ ଟଣାହେବେ । ଆଇନ ଉପରୁ ଲୋକମାନଙ୍କ ବିଶ୍ୱାସ ତୁଟିଯିବ ।

ଚତୁର୍ଥ କଥାହେଲା, କେତେ ଥାନାବାବୁ ଏଫ.ଆଇ.ଆର. କପି ଜାଣି ଜାଣି ଦିଅନ୍ତିନି । ସେମାନେ ଆଗ ଦରଖାସ୍ତ ରଖନ୍ତି । ଅଫିସରର ପଠାଇ ପରିଦର୍ଶନ କରନ୍ତି । ମାତ୍ର ଏଫ: ଆଇ: ଆର: ହୁଏନି । ସେମାନେ ଜାଣି ଜାଣି କେସ ବଢ଼ିଯିବ ବୋଲି ଏପରି କାମ କରନ୍ତି । ଏଠାରେ ସେମାନେ କେସ୍ "ସପ୍ରେସନ" କରନ୍ତି । ଅବଶ୍ୟ ତାହା ତାଙ୍କ ଚାକିରି ଉପରେ ବିପଦ ଆଣିପାରେ । ବହୁ କ୍ଷେତ୍ରରେ ଅଫିସରମାନେ ଏଥିଲାଗି ସସ୍ପେଣ୍ଡ, ଡିସ୍ମିସ୍ ମଧ୍ୟ ହୋଇଛନ୍ତି ।

ଶେଷ କଥାହେଲା, ବହୁ କ୍ଷେତ୍ରରେ ଅଭିଯୋଗକାରୀମାନଙ୍କ ଅଭିଯୋଗ ଧର୍ତ୍ତବ୍ୟ ଅପରାଧ ହୋଇ ନଥିବା ଯୋଗୁ, ତାଙ୍କ ଅଭିଯୋଗକୁ ଥାନା 'ଷ୍ଟେସନ ଡାଏରୀ'ରେ ଲେଖାଏ । ବହୁ ଅଭିଯୋଗକାରୀମାନେ ଧର୍ତ୍ତବ୍ୟ ଏବଂ ଅଧର୍ତ୍ତବ୍ୟ ଅପରାଧ ବିଷୟରେ ଜାଣି ନଥିବା ହେତୁ ସେମାନେ ଷ୍ଟେସନ ଡାଏରୀ କପି ମଧ୍ୟ ମାଗନ୍ତି । ପୁଲିସ ଏହାର କପି ଦେବାକୁ ବାଧ୍ୟ ନୁହଁ । ମନାକଲେ ସେମାନେ ଭାବନ୍ତି ଯେ, 'ପୁଲିସ' ପଇସା ନ ଦେଲେ କପି ଦେବନି । ଅବଶ୍ୟ କେଏ କପିଦେବା ପାଇଁ ପଇସା ନେଇ ପାରଥାନ୍ତି, ମାତ୍ର ଏହା ବହୁ କମ କ୍ଷେତ୍ରରେ ଘଟିଥାଏ । ତେଣୁ ପୁଲିସ ପଇସା ନନେଲେ ଏଫ ଆଇ ଆର. କପି ଦିଅନ୍ତି କହିବା କେତେଦୂର ଯୁକ୍ତିଯୁକ୍ତ ଆପଣ ବିଚାର କରନ୍ତୁ ।

## ( ୪୩ )

ସ୍ନାତକ ଯୁବକଟି ବେକାର ହୋଇ ସହରରେ ବୁଲୁଥିବା ଶୁଣି ସମସ୍ତେ ଆହା ଚୁ ଚୁ କଲେ । ସେମାନଙ୍କ କଥାଶୁଣି ଆଉ ଜଣେ କହିଲେ, "ଦେଖନ୍ତୁ ଖବର କାଗଜରେ ପ୍ରକାଶ ପାଇଥିବା ରିପୋର୍ଟ ଅନୁଯାୟୀ ଆମ ରାଜ୍ୟରେ ପଞ୍ଚମ ବାର୍ଷିକ ଯୋଜନା ଶେଷଶୁଦ୍ଧା ବେକାର ସଂଖ୍ୟା ଥିଲା ୨୨ଲକ୍ଷ ଛଅ ହଜାର । ଷଷ୍ଠ ଯୋଜନା କାଳରେ ଏହି ସଂଖ୍ୟା ବଢିକରି ୩୧ ଲକ୍ଷ ଏକହଜାରରେ ପହଞ୍ଚିଥିଲା । ସରକାରଙ୍କ ରିପୋର୍ଟ ଅନୁଯାୟୀ ଏ ଯୋଜନାକାଳ ମଧ୍ୟରେ ୧୭ଲକ୍ଷ ବେକାରଙ୍କୁ କର୍ମ ଯୋଗାଇ ଦିଆଯାଇଛି । ଆଶା କରାଯାଉଛି ଆସନ୍ତା ସପ୍ତମ ଯୋଜନା କାଳରେ, ଅନ୍ୟମାନଙ୍କୁ କର୍ମଯୋଗାଇ ଦିଆଯିବ ।"

ଆଉ ଜଣେ, ତାଙ୍କ କଥା ଶୁଣି କହିଲେ "ଭାଇ, ସେସବୁ ହିସାବ ଖବର କାଗଜ ପଢ଼ି, ତାର ଭିତରେ ଗୁଡ଼ି ଦିଅନ୍ତୁ । ବେକାରୀ ଯେଉଁ ହିସାବରେ ବଢ଼ୁଛି, ସେଇ ହିସାବରେ ବଢ଼ି ସପ୍ତମ ଯୋଜନାକୁ ଆହୁରି ବେଶି ହେବ, ଏଥିରେ ସନ୍ଦେହ ନାହିଁ । ବେକାରି ସମସ୍ୟାକୁ କେବଳ ଖବରକାଗଜ ମାଧ୍ୟମରେ ଚାପି, ସମାଧାନ

କରାଯାଇ ପାରିବ ନାହିଁ । ପ୍ରଥମ କଥା ହେଲାଣି, "ଆମ ରାଜ୍ୟର ବେକାର ସମସ୍ୟା" ବହୁ ପରିମାଣରେ ଆଞ୍ଚଳିକ ସମସ୍ୟା । ତା'ର ଅର୍ଥହେଲା କୌଣସିଠି ଅଞ୍ଚଳର ସାଧାରଣ ଲୋକମାନେ ସେଇ ଅଞ୍ଚଳରେ କର୍ମ ଯୋଗାଣ ଚାହାନ୍ତି କିମ୍ବା କଳା-ହାଣ୍ଡି ର ଲୋକ ସେଇ ଅଞ୍ଚଳରେ କାମ କରିବାକୁ ଇଚ୍ଛା କରନ୍ତି । କେବଳ ଶିକ୍ଷିତ ଲୋକମାନଙ୍କ ପାଇଁ ଏ ସମସ୍ୟା ଅଲଗା । ଦିନ ମଜୁରିଆ, ମେକାନିକ କିମ୍ବା ଗ୍ରେଡ ଗ୍ରେଡ ଟେକନିସିଆନ, ସେମାନେ ତାଙ୍କ ଘର ପାଖାପାଖି ଅଞ୍ଚଳରେ କାମ ପାଇଲେ, ଘରେ ପରିବାର ରଖି ସେମାନଙ୍କୁ ଚଳେଇ ପାରିବେ । ମାତ୍ର ସେତିକି ଟଙ୍କା ରୋଜଗାର ଭିତରେ ଦୂର ଅଞ୍ଚଳକୁ ପିଲାମାନଙ୍କୁ ନେଇ ଚଳି ପାରିବେନି କିମ୍ବା ଗାଁରେ ପିଲାମାନଙ୍କୁ ଛାଡ଼ି ବାହାରେ ଏକା ରହି ଚଳିପାରିବେନି । ତେଣୁ ବର୍ତ୍ତମାନ ଏହି ସମସ୍ୟାକୁ ସମାଧାନ ଦିଗରେ ଆଗେଇବାକୁ ଚେଷ୍ଟା କଲାବେଳେ ସାରା ରାଜ୍ୟକୁ କେତେଗୁଡ଼ିଏ 'ଜୋନ'ରେ ବିଭକ୍ତ କରି, ପ୍ରତ୍ୟେକ 'ଜୋନ'ରେ କି ପ୍ରକାର 'ବେକାର' ଅଛନ୍ତି, ଯଥା କେତେ ସଂଖ୍ୟାରେ କୃଷିଜୀବୀ, କେତେ ସଂଖ୍ୟାରେ ଶ୍ରମଜୀବୀ । କାରିଗରି ବିଦ୍ୟା ଜାଣିଥିବା ଲୋକ, ବୃଣାଳୀ ଶ୍ରେଣୀସ୍ଥ ଇତ୍ୟାଦିଙ୍କୁ ଚିହ୍ନଟ କରିବାକୁ ପଡ଼ିବ ଏବଂ ଆଗାମୀ ପାଞ୍ଚବର୍ଷ ମଧ୍ୟରେ ଆଉ କେତେ ସଂଖ୍ୟାରେ ସେହିପରି 'ବେକାର' ବଢ଼ିବେ, ସେମାନଙ୍କର ମଧ୍ୟ ହିସାବ ନବାକୁ ହେବ । ପରେ ସେମାନଙ୍କୁ ଚିହ୍ନଟ କଲାପରେ ସେଇ ଜୋନରେ ଏହି ବେକାରମାନଙ୍କୁ କି ପ୍ରକାର କର୍ମ ଯୋଜନା ସୃଷ୍ଟିକରି କାମ ଯୋଗାଇ ଦେଇ ହେବ, ଏବଂ ବର୍ତ୍ତମାନ ପରି-ସ୍ଥିତିରେ କେତେକଙ୍କୁ କାମଦେଇ ହେବ, ସେ ବିଷୟରେ ଦେଖିଲା ପରେ, ଯଦି ଗୋଟିଏ କର୍ମଯୋଗାଣରେ ବେକାର ସଂଖ୍ୟା ବଳକା ରହେ ତାହେଲେ ସେମାନଙ୍କୁ ନିକଟ 'ଜୋନ'ରେ କାମ ଯୋଗାଇ ଦିଆଯାଇ ପାରିବ ।

ତା'ଛଡ଼ା ପ୍ରତ୍ୟେକ ଜୋନରେ ଲୋକମାନଙ୍କର କାମକରିବା ଦକ୍ଷତାକୁ ନେଇ କର୍ମଯୋଗାଣ ପାଇଁ ଗ୍ରେଡ ଗ୍ରେଡ ଶିଳ୍ପାନୁଷ୍ଠାନ, କୃଷି, ଫଳଚାଷ ମାଧ୍ୟମରେ କରାଯାଇ ପାରିବ । ଏପରି କଲେ ବୈଜ୍ଞାନିକ ପଦ୍ଧତିରେ କର୍ମଯୋଗାଣ ହେବା ସଙ୍ଗେ କେଉଁ 'ଜୋନ'ରେ କେତେ ବେକାର ସଂଖ୍ୟା ବଢ଼ୁଛି ତା ମଧ୍ୟ ଜଣାପଡ଼ିବ ଏବଂ ସଠିକ ହିସାବ ରହି ପାରିବ ।

ବର୍ତ୍ତମାନ କେବଳ ଜିଲ୍ଲା 'କର୍ମଯୋଗାଣ' (ଏମ୍ପ୍ଲୟମେଣ୍ଟ ଏକ୍‌ସଚେଞ୍ଜ) ମାଧ୍ୟମରୁ ଏ ସମସ୍ତ ଖବର ସଂଗ୍ରହ କରାଯାଉଛି । କିନ୍ତୁ ପ୍ରତ୍ୟେକ ଲୋକ କାମପାଇଁ ଏଠାରେ ନାଁ ରେଜେଷ୍ଟ୍ରି କରନ୍ତି ନାହିଁ । ତେଣୁ ପ୍ରକୃତ 'ବେକାର' ମାନଙ୍କ ବିଷୟରେ ସଠିକ ତଥ୍ୟସଂଗ୍ରହ କରାଯାଉ ନାହିଁ । ଜୋନ ଏବଂ ସବଜୋନ କରା-ଗଲେ ତାର ମାଧ୍ୟମରେ ଗାଁ ଗାଁରୁ ସଠିକ ଖବର ସଂଗ୍ରହ କରାଯାଇ ପାରନ୍ତା ।

ଏଥିପାଇଁ ଅଧିକା ଟଙ୍କା ଖର୍ଚ୍ଚର ମଧ୍ୟ ଆବଶ୍ୟକ ନାହିଁ । ଜିଲ୍ଲା ଲେବରସେଲ କର୍ମ-ଯୋଗାଣସଂସ୍ଥା ଏବଂ ଅନ୍ୟ ସରକାରୀ ସଂସ୍ଥାକୁ ଡ଼ିସେଣ୍ଟ୍ରିଲାଇଜ୍ କରି 'ଜୋନ' ଅଫିସ ପରିଚାଳନା କରାଯାଇ ପାରିବ । ଥରେ ଗ୍ରାମାଞ୍ଚଳରେ ବେକାର ସମସ୍ୟାକୁ ଆୟତ୍ତା-ଧୀନ କରିନେଲେ, ଶିକ୍ଷିତ ବେକାର ଆସ୍ତେ ଆସ୍ତେ କମିଯିବେ ଏବଂ ସେମାନଙ୍କୁ କର୍ମ ଯୋଗାଇବାକୁ ଅସୁବିଧା ହେବନି ।

ତାଙ୍କ କଥା ଶୁଣି ଇନ୍ଦ୍ର କହିଲେ—ଆପଣଙ୍କ ପ୍ରସ୍ତାବ ଅଭିନନ୍ଦନୀୟ । ଯଦି ସରକାରଙ୍କ ଏପରି ବ୍ୟବସ୍ଥା ନାହିଁ, ଆପଣଙ୍କ ପ୍ରସ୍ତାବ ଉପରେ ଚିନ୍ତା କରିବାର ସମୟ ଆସିଛି ।

( ୪୪ )

ଏଇ କିଛିଦିନ ତଳେ କଟକ ମହାନଗରୀଠାରେ 'ଭାରତୀୟ ପେଶାଦାର ସାମ୍ବାଦିକ ମହାସଂଘ'ର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଅଧି-ବେଶନରେ ଭାରତର ବହୁ ପ୍ରତିଷ୍ଠିତ ପେଶାଦାର ସାମ୍ବାଦିକଙ୍କ ସମସ୍ୟା, ସେମାନଙ୍କ ବୃତ୍ତିଗତ ଆଚରଣବିଧି, ଗ୍ରାମାଞ୍ଚଳରେ କାର୍ଯ୍ୟ କରୁଥିବା ସାମ୍ବାଦିକମାନଙ୍କ ନିରାପତ୍ତା ଉପରେ ବିଶେଷ ଆଲୋଚନା କରିଥିଲେ । ଗୋଟିଏ ସୁସ୍ଥ ଗଣତନ୍ତ୍ର ଦେଶ ପାଇଁ ନିରପେକ୍ଷ, ନିର୍ଭିକ ସମାଲୋଚକ ସମ୍ବାଦପତ୍ରର ଭୂମିକା ଯେପରି ଗୁରୁତ୍ୱପୂର୍ଣ୍ଣ, ସେହିପରି ସାମ୍ବାଦିକମାନଙ୍କ ନିର୍ଭିକ ଉନ୍ନତ ରୁଚିବୋଧ, ଜାତୀୟତାବୋଧ, ଦୂରଦୃଷ୍ଟି, ଗଠନମୂଳକ ସମାଲୋଚନା ଏବଂ ସତ୍ୟ ସମ୍ବାଦ ପରିବେଷଣ ଉପରେ ସମ୍ବାଦପତ୍ରର ମାନମର୍ଯ୍ୟାଦା, ଖ୍ୟାତି, କାଟତି ଏବଂ ସମାଜରେ ଆଦୃତ ବଢିଥାଏ । ଭାରତ ପରି ଗୋଟିଏ ସମୃଦ୍ଧି ପଥରେ ଗତି କରୁଥିବା ଗଣତନ୍ତ୍ର ଦେଶରେ ସମ୍ବାଦପତ୍ର ଏବଂ ସାମ୍ବାଦିକମାନଙ୍କ ଭୂମିକା ଦେଶ ତଥା ଜନତାର ସ୍ୱାର୍ଥ ସହିତ ଓତଃପ୍ରୋତ ଭାବେ ଜଡ଼ିତ । କାରଣ ସମ୍ବାଦପତ୍ର ସ୍ୱାଧୀନ ଦେଶରେ ଲୋକମାନଙ୍କର ଚକ୍ଷୁ ପରି କାମକରେ ।

ପୁଣି ଆମ ଦେଶରେ ଯେଉଁଠି ଶହେଭାଗରୁ ଏବେ ବି ୬୦ ଭାଗରୁ ବେଶି ନାଗରିକ ଶିକ୍ଷାରୁ ବଞ୍ଚିତ ଅଛନ୍ତି ସେମାନଙ୍କୁ ଉପଯୁକ୍ତ ବାଟ ଦେଖାଇବା ପାଇଁ ଏମାନଙ୍କର ଦାୟିତ୍ୱ ସବୁଠାରୁ ବେଶି । କାରଣ ଅନ୍ୟ ଦେଶର ନାଗରିକମାନେ ଶିକ୍ଷିତ ହୋଇଥିବା ହେତୁ ସେମାନେ 'ପରିବେଶିତ ସମ୍ବାଦ' ଗୁଡ଼ିକୁ ନିଜେ ପଢ଼ି ବୁଝି, ସେମାନଙ୍କ ମତାମତ ଦେଇଥାନ୍ତି ।

କିନ୍ତୁ ଆମ ଦେଶରେ ୬୦ଭାଗ ଲୋକ ଏ ସୁବିଧାରୁ ବଞ୍ଚିତ ଥିବା ଦୃଷ୍ଟିରୁ

ଯେଉଁ ଖବରଗୁଡ଼ିକ ସମ୍ବାଦପତ୍ର ମାଧ୍ୟମରେ ପରିବେଷଣ କରାଯାଉଛି, ତାକୁ 'ସତ୍ୟ ଘଟଣା' ବୋଲି ଧରି ନିଅନ୍ତି ଏବଂ ପୂର୍ଣ୍ଣ ମାତ୍ରାରେ ବିଶ୍ୱାସ କରନ୍ତି । ଯେତେବେଳେ ଦେଶର ଲୋକମାନଙ୍କର ଆସ୍ଥା ଏବଂ ବିଶ୍ୱାସ ସମ୍ବାଦପତ୍ର ଏବଂ ସାମ୍ବାଦିକମାନଙ୍କ ପ୍ରତି ଏତେ ବେଶି, ସେ ଦେଶର ସାମ୍ବାଦିକମାନେ ସେହିପରି ଭାବେ ସେମାନଙ୍କ ଗୁରୁଦାୟିତ୍ୱ ତୁଲାଇବା ଉଚିତ । କାମଳ ସାମ୍ବାଦିକତା, ଅଶ୍ଳୀଳ ଭାଷାରେ ସମ୍ବାଦ, ଅତିରଞ୍ଜିତ ଏବଂ ଅସତ୍ୟ, ମନଗଢ଼ା ସମ୍ବାଦ, ରାଜନୈତିକ ପୃଷ୍ଠଭୂମିରେ ସାମ୍ବାଦିକତା, ଦେଶର ସ୍ୱାର୍ଥବିରୋଧୀ ସମ୍ବାଦ ପରିବେଷଣ ଇତ୍ୟାଦି ଭାରତ ପରି ଗୋଟିଏ ସମୃଦ୍ଧି ପଥରେ ଗତି କରୁଥିବା ଦେଶ ପକ୍ଷରେ ଯେ ବିଶେଷ ଭାବେ କ୍ଷତିକାରକ ତାହା ସମସ୍ତେ ବୁଝୁଥିବେ । ସାମ୍ବାଦିକତା ଗୋଟିଏ ମହନୀୟ ପେଷା ଏବଂ କେହି ଏହା ସହିତ ରାଜନୀତି ଖେଳିବା ଉଚିତ ନୁହେଁ ବୋଲି ଜଣେ ବିଶିଷ୍ଟ ନାଗରିକ କହିଥିଲେ ।

ତା'ଛଡ଼ା ବର୍ତ୍ତମାନ ଆମ ଦେଶରେ ମଫସଲଠାରୁ ସହର ପର୍ଯ୍ୟନ୍ତ, ଆପେ ଆପେ ଗଢ଼ି ଉଠିଥିବା ସାମ୍ବାଦିକଙ୍କ ସଂଖ୍ୟା ସବୁଠାରୁ ବେଶୀ । ସେମାନେ କୌଣସି ସମ୍ବାଦପତ୍ରର ସ୍ୱୀକୃତିପ୍ରାପ୍ତ ସାମ୍ବାଦିକ ନ ହୋଇ ମଧ୍ୟ ସେହି ସମ୍ବାଦପତ୍ରର ବିକ୍ରେତା, ଏଜେଣ୍ଟ ହିସାବରେ 'ସାମ୍ବାଦିକ' । ବହୁ କ୍ଷେତ୍ରରେ ଏମାନେ ନିଜର ସ୍ୱାର୍ଥ ଦୃଷ୍ଟିରୁ ବିଭିନ୍ନ ସମ୍ବାଦ ପରିବେଷଣ କରି ଗ୍ରାମାଞ୍ଚଳ ଏବଂ ଗ୍ରେଟ ଗ୍ରେଟ ଟାଉନରେ ଦୂଷିତ ପରିବେଶ ସୃଷ୍ଟି କରୁଛନ୍ତି ଏବଂ ବହୁ କ୍ଷେତ୍ରରେ ଏମାନଙ୍କୁ ସାମ୍ବାଦିକର ସାହିଆ ଭିତରକୁ ଟାଣି ନେଇ ବିଭିନ୍ନ ଅନର୍ଥ ସୃଷ୍ଟି ହେଉଛି । ପାକିସ୍ଥାନର ରାଷ୍ଟ୍ରପତି ଜେନେରାଲ ଜିଆ ଥରେ କହିଥିଲେ—'ଆପେ ଆପେ ସାମ୍ବାଦିକ ବୋଲଉଥିବା ବ୍ୟକ୍ତିଙ୍କ ପ୍ରତି ମୋର ସମ୍ମାନ ନାହିଁ । କେହି ଜଣେ ହତ୍ୟାକାରୀ ଆପଣାକୁ ସାମ୍ବାଦିକ କହି ଆଇନକୁ ଫାଙ୍କି ଦେଇ ନପାରେ । ମୁଁ ଏପରି ଜଣେ ସାମ୍ବାଦିକଙ୍କୁ ସମ୍ମାନ ଦିଏ ଯେ କି ବିଗ୍ରହବନ୍ତ ଓ ସତ୍ୟନିଷ୍ଠ ।'

ତାଙ୍କ କଥା ଶୁଣି ଇନ୍ଦ୍ର କହିଲେ—ପ୍ରେସିଡେଣ୍ଟ ଜିଆ ଯାହା କହିଲେ ସତ୍ୟ । ଏବେ ସଙ୍ଘ ପକ୍ଷରୁ ସାମ୍ବାଦିକମାନଙ୍କ ପାଇଁ 'ନିରାପତ୍ତା ସେଲ' ଗଠନ କରାଯାଉ ବୋଲି ଦାବୀ ହୋଇଛି । ଯଦି ସାମ୍ବାଦିକମାନେ ଦେଶ, ସମାଜର ଏବଂ ନାଗରିକ ମାନଙ୍କର ଉନ୍ନତି ଏବଂ ନ୍ୟାୟ ସଙ୍ଗତ ଦାବୀ ପାଇଁ ଉଦ୍ଦିଷ୍ଟ, ତାହେଲେ ତାଙ୍କୁ କିଏ ଆକ୍ରମଣ କରି ପାରିବ ? ସେ ତ ସମାଜ ଦ୍ୱାରା ସୁରକ୍ଷିତ ଆଉ ତାଙ୍କ ପାଇଁ ସ୍ୱତନ୍ତ୍ର ସେଲ କଅଣ ଦରକାର ?

ଏଥିରୁ ଜଣାପଡ଼ୁଛି, ଆମ ଦେଶରେ ପୁଲିସବାଲା ଯେପରି ଲୋକମାନଙ୍କ ବିଶ୍ୱାସଭାଜନ ହୋଇ ପାରିନାହାନ୍ତି, ସାମ୍ବାଦିକମାନେ ତାଙ୍କର ପ୍ରକୃତ କର୍ତ୍ତବ୍ୟ ନ

କରିବାରୁ ସେହିପରି ଆସ୍ଥା ଭଜନ ହୋଇପାରି ନାହାନ୍ତି । ସେଇଥିଯୋଗୁ 'ସେଲ ଗଠନ' କରିବାକୁ ଦାବୀ କଲେଣି ।

ତାଙ୍କ କଥାଶୁଣି ଆଉ ଜଣେ କହିଲେ—ଆପଣ ଦେଖୁନାହାନ୍ତି ପ୍ରତ୍ୟେକ ଦିନ କେଉଁଠି ନା କେଉଁଠି ଜଣେ ସାମ୍ବାଦିକ ମାଡ଼ ଖାଉଛନ୍ତି ! କଅଣ ପାଇଁ ଏମାନେ ମାଡ଼ ଖାଉଛନ୍ତି ? ମନ୍ଦର ତୋଳି ନା ଅନ୍ୟ କାମ କରି ?

ଇନ୍ଦ୍ର ଫେରିଲି ବାଟରେ ଶୁଣିଲେ, ଓଡ଼ିଶାର ବୟୋଜ୍ୟେଷ୍ଠ ପ୍ରବୀଣ ସାମ୍ବାଦିକ, ଲୋକସେବକ ମଣ୍ଡଳର ସଭାପତି ତଥା 'ସମାଜ' ସମ୍ପାଦକ ଡକ୍ଟର ରାଧାନାଥ ରଥ, ଗତ ୧୮।୩।୮୭ ମସିହା ସନ୍ଧ୍ୟାବେଳେ ପୁରୀଜିଲ୍ଲା ଖୋର୍ଦ୍ଧା ଅଞ୍ଚଳର ଗଡମାଣତର ଗ୍ରାମରୁ ସେହି ଗ୍ରାମରେ ଅବସ୍ଥିତ ଶ୍ରୀ ରାମଚଣ୍ଡୀ କଲେଜର ଏକ ଉତ୍ସବରେ ଯୋଗଦେଇ ଫେରୁଥିବା ବାଟରେ, ଦୁର୍ବୃତ୍ତମାନଙ୍କ ଆକ୍ରମଣର ଶୀକାର ହୋଇ, ରକ୍ତାକ୍ତ ଅବସ୍ଥାରେ ଖୋର୍ଦ୍ଧା ସରକାରୀ ହସ୍‌ପିଟାଲରେ ଚିକିତ୍ସା ନେଇ କଟକ ଫେରିଛନ୍ତି । ସେ ଆସୁଥିବା ଗାଡ଼ିର ଡ୍ରାଇଭର ଗୁରୁତର ଭାବେ ଆହତ ହେବା ସଙ୍ଗେ ସଙ୍ଗେ ଗାଡ଼ି ବହୁ ମାତ୍ରାରେ ଜଖମ ହୋଇଛି । ଡକ୍ଟର ରଥଙ୍କ ସଙ୍ଗେ ସେ ଅଞ୍ଚଳର ସୁନାମଧନ୍ୟ କମ୍ୟୁନିଷ୍ଟ ନେତା ଶ୍ରୀ ଗଙ୍ଗାଧର ପାଇକରାୟ ମଧ୍ୟ ଫେରୁଥିବା ସମୟରେ ଭୀଷଣ ଆଘାତ ପ୍ରାପ୍ତ ହୋଇ ବର୍ତ୍ତମାନ ଚିକିତ୍ସାଧୀନ ଅଛନ୍ତି ।

ଏ ସମସ୍ତ ଘଟଣା ଅତ୍ୟନ୍ତ ଅପ୍ରୀତିକର, ଦୁଃଖଦାୟକ ଏବଂ ଅତ୍ୟନ୍ତ ଅମାନୁଷିକ । ଯେଉଁ ଦୁର୍ବୃତ୍ତମାନେ ଏପରି କାର୍ଯ୍ୟ ଘଟାଇବାକୁ ସାହସ କଲେ, ସେମାନଙ୍କ ବିରୁଦ୍ଧରେ ତୁରନ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବା ଉଚିତ୍ ବୋଲି ଇନ୍ଦ୍ର ମତବ୍ୟକ୍ତ କରିଥିଲେ ।

ତାଙ୍କ କଥାଶୁଣି, ସେଇ ଅଞ୍ଚଳର ଜଣେ ଭଦ୍ରଲୋକ କହିଲେ—ଯେଉଁମାନେ ଏପରି କାର୍ଯ୍ୟରେ ଲିପ୍ତ ଅଛନ୍ତି, ସେମାନେ ଯେ ମାରାତ୍ମକ କ୍ରିମିନାଲ, ଏଥିରେ କିଛି କହିବାର ନାହିଁ । କିନ୍ତୁ ଏମାନେ ଯେଉଁ ଆକ୍ରମଣ କଲେ, ତାଙ୍କର ଉଦ୍ଦେଶ୍ୟ ବୋଧେ ଡକ୍ଟର ରଥଙ୍କୁ ଆକ୍ରମଣ କରିବାକୁ ନଥିଲା । ଡକ୍ଟର ରଥଙ୍କ ପରି ନିଃସ୍ୱାର୍ଥପର, ବର୍ଷୀୟାନ ସାମ୍ବାଦିକଙ୍କୁ ଆକ୍ରମଣ କରିବା ସେମାନଙ୍କର ଉଦ୍ଦେଶ୍ୟ ହୋଇଥିଲେ ସେମାନେ କଲେଜ ଉତ୍ସବ ପାଳନ ସମୟରେ ଗଣ୍ଡଗୋଳ ସୃଷ୍ଟି କରି ପାରିଥାନ୍ତେ । ମାତ୍ର ତାହା ହୋଇନଥିଲା । ଏଇ ଅଞ୍ଚଳରେ ବର୍ଷ ବର୍ଷ ଧରି ରାଜନୈତିକ ଭିଡ଼ା ଓଟରା ଚାଲିଥିବା ଦୃଷ୍ଟିରୁ, ଏଠାରେ ଦୁଇଦଳ ରାଜନୈତିକ କର୍ମୀମାନଙ୍କ ମଧ୍ୟରେ ମତାନ୍ତର, ଗଣ୍ଡଗୋଳ ବହୁଦିନ ଧରି ରହିଆସିଅଛି । ଏହା ପୂର୍ବରୁ ମଧ୍ୟ ଏଠାରେ ଏଇ ଦୁଇ ରାଜନୈତିକ ଦଳ ମଧ୍ୟରେ ଟଣା ଓଟରା,ପିଟାପିଟି,

ମୁଥ ମରାମର ହୋଇଥିଲା । ତା'ଛଡ଼ା ଏଇ 'କଲେଜ'ର ପରିଚାଳନା କମିଟିକୁ ନେଇ ମଧ୍ୟ ଅନ୍ତରାଳରେ ବିଭିନ୍ନ ପ୍ରକାର ରାଜନୈତିକ ଝଡ଼ଝଞ୍ଜା ବୋହି ଯାଇଛି । ପରିଚାଳନା କମିଟିର ସଭାପତି ବଦଳି ଏହାର ମୁଖ୍ୟ କାରଣ ହୋଇପାରେ । ତେଣୁ ଏ ଯେଉଁ ଆକ୍ରମଣ ହେଲା ଏହା ଡକ୍ଟର ରଥଙ୍କ ପାଇଁ ଉଦ୍ଦିଷ୍ଟ ନଥିଲା, ମାତ୍ର 'ବକ ମଧ୍ୟେ ହଂସ ଯଥା' ଦୃଷ୍ଟିରୁ ଡ଼କ୍ଟର ରଥଙ୍କ ଉପସ୍ଥିତି ହିଁ ତାଙ୍କୁ ଏ ବିପଦରେ ପକାଇଥିଲା ।

ସେ ଯାହାହେଉ, ଯେଉଁମାନେ ଏପରି ଜଘନ୍ୟ କାର୍ଯ୍ୟରେ ଲିପ୍ତ ହେଲେ ସେ ଯେଉଁ ରାଜନୈତିକ ଦଳର ଲୋକ ହୁଅନ୍ତୁ ବା ନହୁଅନ୍ତୁ, ସେମାନେ ପ୍ରକୃତରେ ମଣିଷ ନୁହନ୍ତି । ଲୁଚିଛପି ଗାଡ଼ି ଆକ୍ରମଣ କରିବା, ଚୋର ଡ଼କାୟତମାନଙ୍କ କାର୍ଯ୍ୟ-ଛଡ଼ା ଆଉ କିଏ କରିପାରନ୍ତି । ତେଣୁ ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଉ ଏବଂ ଆହତ ବ୍ୟକ୍ତିମାନେ ଶୀଘ୍ର ଆରୋଗ୍ୟ ହୁଅନ୍ତୁ ବୋଲି ଲୋକଜଣଙ୍କ ଭଗବାନଙ୍କ ଆଡ଼କୁ ହାତ ଉଠାଇଲେ । ତାସଙ୍ଗେ ସଙ୍ଗେ ସେ ମଧ୍ୟ କହିଲେ ଯେ ଏହି ଆକ୍ରମଣ ମୂଳରେ କି ଉଦ୍ଦେଶ୍ୟ ଥିଲା ଏବଂ ଏହା କାହାପାଇଁ ଉଦ୍ଦିଷ୍ଟ ଥିଲା ତାହା ମଧ୍ୟ ତଦନ୍ତ କରି ଲୋକମାନଙ୍କ ଗୋଚରାର୍ଥେ ଜଣାଇ ଦିଆଯାଉ । ନହେଲେ କଥାଟା ଗୋଟେ ଆଡ଼କୁ ଟାଣି ହୋଇ ଯାଉଛି ।

( ୪୪ )

ଯେଉଁଦିନ ଦୁର୍ବୃତ୍ତମାନେ ଡକ୍ଟର ରାଧାନାଥ ରଥଙ୍କ ଗାଡ଼ି ଉପରେ ଆକ୍ରମଣ କରିଥିଲେ, ସେଇଦିନ ସେଇ ଖୋର୍ଦ୍ଧା ଅଞ୍ଚଳର ନିରାକାରପୁରଠାରେ ଗୋଟିଏ ଟ୍ରକ ଚାପାରେ ଦୁଇଜଣ କଲେଜ ଛାତ୍ର ପ୍ରାଣ ହରାଇଲେ । ଏହି ଦୁର୍ଘଟଣାର ଖବର କଲେଜ ଛାତ୍ରମାନେ ପାଇଲା ପରେ, ସେମାନେ ଦୁର୍ଘଟଣା ସ୍ଥଳକୁ ଆସି ଦୁର୍ଘଟଣା ଘଟାଇଥିବା ଟ୍ରକଟିକୁ ପୋଡ଼ି ଦେଇଥିଲେ । ସେତେବେଳକୁ ଟ୍ରକର ଡ୍ରାଇଭର ବିକଳରେ ନିକଟସ୍ଥ ଫାଣ୍ଡିରେ ଆତ୍ମସମର୍ପଣ କରି ସାରିଥାନ୍ତି ।

ଇନ୍ଦ୍ର ତାଙ୍କ ମର୍ତ୍ତ୍ୟଗସ୍ତ ସମୟରେ ରାସ୍ତା ·ଦୁର୍ଘଟଣାରେ କେଉଁପରିଭାବେ ଏଇ ଦେଶର ଲୋକମାନେ ମୃତ୍ୟୁ ବରଣ କରି ଅଚିରେ ଯମାଳୟକୁ ଗମନ କରୁଛନ୍ତି ତାହା ସ୍ୱଚକ୍ଷୁରେ ଦେଖିଛନ୍ତି ଏବଂ ଥରେ ଗୋଟେ ମେଟାଡ଼ୋର ଗାଡ଼ିରେ ବସି ନିଆଳିମାଧବ ରାସ୍ତାରେ ଗଲାବେଳେ କିପରି ଅଳ୍ପକେ ରକ୍ଷା ପାଇଲେ ତାହା ଅଙ୍ଗେ ଲିଭେଇଛନ୍ତି । ନହେଲେ ସେ ମଧ୍ୟ ମରଦେହ ଛାଡ଼ି ଯମଙ୍କ ସଙ୍ଗେ ସାକ୍ଷାତ କରିଥାନ୍ତେ ।

ବର୍ତ୍ତମାନ ଆମ ଦେଶରେ ଯେଉଁପରିଭାବେ ଦୁର୍ଘଟଣା ବଢ଼ିଛି, ତାର ପ୍ରତିକାର ଚିନ୍ତା ନକରି ଅଧୈର୍ଯ୍ୟବଶତଃ ଗାଡ଼ିକୁ ନିଆଁ ଲଗାଇଦେଲେ ଲାଭ କଅଣ ହେବ ? ଏହାଦ୍ୱାରା ଗାଡ଼ି ମାଲିକ ପୁରୁଣା ଗାଡ଼ି ପରିବର୍ତ୍ତେ ଇନସୁରାନସ କମ୍ପାନୀରୁ ଟଙ୍କା ଉଠାଇ ନୂଆ ଗାଡ଼ି କରିବ । ଏ ଯେଉଁ ଲକ୍ଷଲକ୍ଷ ଟଙ୍କା ଅଯଥାରେ ମାଲିକଙ୍କୁ ଦିଆଗଲା ଏ ଟଙ୍କା କାହାର ? ଏଣେ ଦିଜଣ ଯୁବକଙ୍କ ପ୍ରାଣଗଲା, ତେଣେ ଗାଡ଼ି ମାଲିକ ଲାଭବାନ ହେଲା । ଅଯଥାରେ ଆଉ କେତେକ ଲୋକ ହଇରାଣ ହେଲେ । ଏପରି କରିବା ଦ୍ୱାରା କଅଣ ରାସ୍ତା ଦୁର୍ଘଟଣା କମିଯିବ ? କେବଳ ରାଗ ରୋଷର ବଶବର୍ତ୍ତୀ ହୋଇ ଏପରି ଅପକର୍ମ କରିବାରେ ସମାଜର କ୍ଷତି ଛଡ଼ା ଆଉ କିଛି ଲାଭ ହୁଏନାହିଁ ।

ତେଣୁ ବର୍ତ୍ତମାନ ସମୟ ଆସିଛି—ରାସ୍ତାରେ ଦୁର୍ଘଟଣା ରୋକିବାକୁ ହେଲେ ଗାଡ଼ି ଚାଳକ, ଗାଡ଼ି ମାଲିକ, ପଦଚାରୀ, ସାଇକେଲଆରୋହୀ, ଏ ସମସ୍ତଙ୍କୁ ରାସ୍ତାରେ ଯିବାବେଳେ କିପ୍ରକାର ନିୟମ ମାନିବାକୁ ହେବ ସେ ବିଷୟରେ ବୁଝାଇବା ଉଚିତ । ପ୍ରତ୍ୟେକ ଗାଡ଼ି ଚାଳକ ନିର୍ଭୁଲ ଗାଡିଚାଳନା, ରାସ୍ତାନିରାପତ୍ତା ବିଷୟ ଶିକ୍ଷା କରିବା ଉଚିତ୍ । ମାତ୍ର ଆମର ଏବେ ଯେତେ ଗାଡ଼ି ଚାଳକ ଅଛନ୍ତି ସେମାନେ ଏ ବିଷୟରେ କିଛି ଜାଣନ୍ତି ନାହିଁ । ସେହିପରି ସ୍କୁଲ ଛାତ୍ରଙ୍କ ଠାରୁ ଆରମ୍ଭ କରି ପ୍ରତ୍ୟେକ ପଦଚାରୀ, ଏମାନେ ମଧ୍ୟ ରାସ୍ତାକୁ ବ୍ୟବହାର କରିବା, ରାସ୍ତାର ନିୟମ, ରାସ୍ତାରେ କିପରି ନିରାପତ୍ତା ରକ୍ଷା କରିହେବ ସେ ବିଷୟରେ ଜାଣିବା ଉଚିତ୍ ।

ତେଣୁ ଆମ ଦେଶରେ ଯେତେ ରାସ୍ତା ଦୁର୍ଘଟଣା ଘଟୁଛି, ସେଥିରେ ୫୦ ଭାଗ ଘଟଣାରେ ଗାଡ଼ି ଚାଳକଙ୍କ ଭୁଲ ଏବଂ ୧୦ଭାଗ ଘଟଣାରେ ପଦଚାରୀମାନଙ୍କ ଦୋଷ ଥାଏ । ବର୍ତ୍ତମାନ ସମୟ ଆସିଛି କିପରି ଲୋକମାନଙ୍କୁ ଏ ବିଷୟରେ ସଚେତନ କରାଇ ଦୁର୍ଘଟଣା ବିରୁଦ୍ଧରେ ଜନଜାଗରଣ ସୃଷ୍ଟି କରିବା । ସେ କଥା ନକରି ଥରେ ଦିଥର ବର୍ଷକେ ଗୋଟେ ଦିଇଟା ଗାଡ଼ି ପୋଡ଼ିଦେଇ ଡ୍ରାଇଭରର ଭୁଲ ଥାଉ ବା ନଥାଉ ତାକୁ ବିଚାରକୁ ନନେଇ, ବାଡ଼େଇ ଦେଲେ ଏ ସମସ୍ୟାର ସମାଧାନ ହୋଇ ଯିବନି ।

ଜୟକାରପୁର କଲେଜର ଯେଉଁ ଦୁଇଜଣ ଛାତ୍ରଙ୍କର ଅକାଳ ବିୟୋଗ ଘଟିଲା, ଏହା ଅତ୍ୟନ୍ତ ଦୁଃଖଦାୟକ ଘଟଣା । ସେମାନଙ୍କ ଶୋକସନ୍ତପ୍ତ ପରିବାର-ବର୍ଗଙ୍କୁ ଭଗବାନ ସହାୟ ହୁଅନ୍ତୁ । ଯେଉଁ ଛାତ୍ରମାନେ ରାସ୍ତାକୁ ଆସି ଟ୍ରକ ପୋଡ଼ିଲେ ସେମାନେ ବର୍ତ୍ତମାନ ଚେଷ୍ଟା କରିବା ଉଚିତ୍ ଯେ ଏ ଦୁଇଜଣ ଛାତ୍ରଙ୍କ ପରିବାର ବର୍ଗ କିପରି ଉପଯୁକ୍ତ କମ୍ପେନସେସନ ପାଇପାରିବେ । ସେମାନେ ସମସ୍ତ କାଗଜ ପତ୍ର ଯୋଗାଡ଼ କରି ମୋଟର ଭେଇକଲ ଟ୍ରିବ୍ୟୁନାଲରେ କେସ ଦାୟର କରନ୍ତୁ ।

ବର୍ତ୍ତମାନ ମୋଟର ଭେଇକାଲ ଆକ୍ଟ ଏହିପରି ଦୁର୍ଘଟଣାଗ୍ରସ୍ତ ପରିବାରଙ୍କୁ ଏବଂ ଆହତ ବ୍ୟକ୍ତିମାନଙ୍କୁ କ୍ଷତିପୂରଣ ଦେବାପାଇଁ ଏହି ଆକଟକୁ ଆମେଣ୍ଡମେଣ୍ଟ କରିଛନ୍ତି । ଜଣେ ଦୁର୍ଘଟଣାଗ୍ରସ୍ତ ବ୍ୟକ୍ତି କ୍ଷତିପୂରଣ ଅତି ସହଜରେ ପାଇ ପାରିବ । ତା'ଛଡା ଲୋକ ଅଦାଲତ, ଲିଗାଲ ଏଡ୍ ସଂସ୍ଥା ମଧ୍ୟ ସାହାଯ୍ୟ କରୁଛନ୍ତି । ଏସବୁ ବିଷୟରେ ଧ୍ୟାନ ଦବା ପରିବର୍ତ୍ତେ ରାସ୍ତାରେ ଘଣ୍ଟାକ ପାଇଁ ଗାଡ଼ି ବନ୍ଦ କରି ନିଆଁ ଲଗାଇ ଦେଶର କ୍ଷତି କରିବା ଉଚିତ ହେଉନାହିଁ ।

ପ୍ରତ୍ୟେକ ଦିନ ସମ୍ବାଦପତ୍ର ପୃଷ୍ଠାରେ କୌଣସି ନା କୌଣସି ସ୍ଥାନରେ ରାସ୍ତା ଦୁର୍ଘଟଣାରେ ମୃତ୍ୟୁ ସମ୍ବାଦ ପ୍ରକାଶ ପାଉଛି । ରାସ୍ତାରେ ଦୁର୍ଘଟଣାକୁ କିପରି ରୋକାଯାଇ ପାରିବ, ସେଥିପାଇଁ କେତେଗୁଡ଼ିଏ ପଦକ୍ଷେପ ନିଆଯାଉଥିବା ସ୍ଥଳେ, ଯେଉଁ ବ୍ୟକ୍ତିମାନେ ଦୁର୍ଘଟଣାରେ ମୃତ୍ୟୁ ବରଣ କଲେ କିମ୍ବା କ୍ଷତ ବିକ୍ଷତ ହେଲେ, ସେମାନଙ୍କୁ ଉପଯୁକ୍ତ କ୍ଷତିପୂରଣ ଦେବାପାଇଁ ବିହିତ ପଦକ୍ଷେପ ନିଆ-ଯିବାର ଦୃଷ୍ଟାନ୍ତ ସେତେ ଦୃଷ୍ଟିଗୋଚର ହେଉନାହିଁ । ଓଡ଼ିଶାରେ ବର୍ଷକୁ ଯେତେ ଦୁର୍ଘଟଣା ଘଟୁଛି, (ପ୍ରାୟ ୫,୫୦୦) ସେଇ ତୁଳନାରେ କ୍ଷତିପୂରଣ ମକଦ୍ଦମା ମଧ୍ୟ କୋର୍ଟ କଚେରୀକୁ ଆସୁନାହିଁ ।

ତାହାର ମୂଳକାରଣ ହେଲା, ଦୁର୍ଘଟଣାରେ କ୍ଷତିଗ୍ରସ୍ତ ହେଉଥିବା ବ୍ୟକ୍ତି-ମାନେ ସାଧାରଣତଃ ଗରିବ, ନିରିହ ଏବଂ ଅଶିକ୍ଷିତ ହୋଇଥିବା ଯୋଗୁ ସେମାନେ ଦେଶରେ ପ୍ରଚଳିତ ଥିବା ଆଇନର ସହାୟତା ନେଇପାରୁ ନାହାନ୍ତି । ଯେଉଁ କେତେଗୋଟି ସ୍ଥଳରେ କ୍ଷତି ପୂରଣ ମକଦ୍ଦମା କରାଯାଉଛି, ସେ ସମସ୍ତ କ୍ଷେତ୍ରରେ ମଧ୍ୟସ୍ଥ ବ୍ୟକ୍ତି, କ୍ଷତିଗ୍ରସ୍ତ ପରିବାର କିମ୍ବା ବ୍ୟକ୍ତିଙ୍କଠାରୁ ଅଧିକ ଲାଭବାନ ହୋଇଛି ।

ରାସ୍ତା ଦୁର୍ଘଟଣାକୁ ରୋକିବା ଏବଂ ଯାନବାହାନ ନିୟନ୍ତ୍ରଣ କରିବା କାର୍ଯ୍ୟ ମୁଖ୍ୟତଃ ପୋଲିସ ଏବଂ ଆର୍. ଟି. ଓ. ସଂସ୍ଥାର । ଟ୍ରାନସ୍‌ପୋର୍ଟ କମିଶନର ଏବଂ ତାଙ୍କ ଅଧୀନରେ ପ୍ରତ୍ୟେକ ଜିଲ୍ଲାରେ ଥିବା ଆର୍. ଟି. ଓ ଅଫିସ, ଗାଡ଼ିଚାଳକ ଏବଂ ମାଲିକମାନଙ୍କ ଠାରୁ ଟିକସ ଆଦାୟ କରନ୍ତି । ସେହିପରି ପୋଲିସ ବିଭାଗ ନିୟମ ଅନୁଯାୟୀ ରାସ୍ତାରେ ଆଇନ୍ ଶୃଙ୍ଖଳା ରକ୍ଷା କରିବା,ଯାନବାହାନର ସୁଚାଳନା କରିବାପାଇଁ ଦାୟୀ । ତେଣୁ ରାସ୍ତାରେ ଯେତେବେଳେ ଦୁର୍ଘଟଣା ଘଟି, ଲୋକ-ମାନେ ମୃତ୍ୟୁବରଣ କରୁଛନ୍ତି ଏବଂ କ୍ଷତିଗ୍ରସ୍ତ ହେଉଛନ୍ତି, ସେମାନଙ୍କୁ ଆଇନ ଅନୁଯାୟୀ ଏବଂ ନୈତିକ ଦୃଷ୍ଟିରୁ ସମସ୍ତ ସାହାଯ୍ୟ କରିବାର ଦାୟିତ୍ୱ ଏହି ଦୁଇ ସଂସ୍ଥାର ।

ଆମ ଦେଶରେ ନିରିହ ଅଶିକ୍ଷିତ ବ୍ୟକ୍ତି ଆଇନ୍ ଜାଣି ନାହାନ୍ତି ବୋଲି ସେମାନେ ସେମାନଙ୍କ ନ୍ୟାଯ୍ୟ ଦାବୀରୁ ବଞ୍ଚିତ ହେବେ ଏହା କେବେହେଲେ

ସ୍ପୃହଣୀୟ ନୁହଁ । ସେମାନଙ୍କୁ ଏ ବିଷୟରେ ସଚେତନ କରାଇବା ସମସ୍ତଙ୍କର କର୍ତ୍ତବ୍ୟ । ପ୍ରତ୍ୟେକବର୍ଷ ଟ୍ରାନସପୋର୍ଟ୍ ସଂସ୍ଥା, କୋଟି କୋଟି ଟଙ୍କା ଟିକସ ବାବଦକୁ ଆଦାୟ କରୁଛନ୍ତି । ନିୟମ ଅନୁସାରେ ଏହି ଆଦାୟ ଟିକସ ଟଙ୍କାରୁ 'କିଛିଅଂଶ' ଗାଡ଼ିଚାଳକ, ପଦାଚାରୀ ଏବଂ ସାଧାରଣ ଲୋକଙ୍କ ରାସ୍ତା ନିରାପତ୍ତା ଶିକ୍ଷା ବାବଦରେ ଖର୍ଚ୍ଚ ହେବା କଥା । ଏହି ପ୍ରକାର ବ୍ୟବସ୍ଥା ଅନ୍ୟ ସମସ୍ତ ଉନ୍ନତ ଦେଶମାନଙ୍କରେ ଅଛି । କିନ୍ତୁ ଆମ ଟ୍ରାନସପୋର୍ଟ ଡିପାର୍ଟମେଣ୍ଟ, ଲୋକମାନଙ୍କୁ ଏବଂ ଗାଡ଼ିଚାଳକ-ମାନଙ୍କୁ ଶିକ୍ଷାଦେବା ବିଷୟରେ, କେତେ ଟଙ୍କା ଖର୍ଚ୍ଚ କରୁଛନ୍ତି ସମସ୍ତେ ଜାଣିବା ଉଚିତ୍ ।

ତା'ଛଡ଼ା ଯେଉଁ ଲୋକମାନେ ରାସ୍ତାରେ ଦୁର୍ଘଟଣାଗ୍ରସ୍ତ ହେଲେ, ସେମାନଙ୍କ ପରିବାରକୁ ଉପଯୁକ୍ତ କ୍ଷତିପୂରଣ ପାଇବା ଦିଗରେ ଏହି ଦୁଇଗୋଟି ସଂସ୍ଥା ପୂର୍ଣ୍ଣ-ମାତ୍ରାରେ ସାହାଯ୍ୟ କରିବା ଦରକାର । ମାତ୍ର ଏମାନଙ୍କ ସାହାଯ୍ୟ ବୋଧେ ଏତେ ନଗଣ୍ୟ ଯେ, ଆମ ଓଡ଼ିଶାରେ ପାଞ୍ଚ, ଛଅ ହଜାର ଦୁର୍ଘଟଣା ଘଟୁଥିବା ସମୟରେ ବର୍ଷକୁ ୫୦, ୬୦ ଗୋଟି କ୍ଷତିପୂରଣ ମକଦ୍ଦମା ହେଲେ ବହୁତ ହୋଇଗଲା ।

ଇନ୍ଦ୍ର ଏ ସମସ୍ତ କଥା ଶୁଣିଲା ପରେ କହିଲେ,—"ଜନସାଧାରଣଙ୍କୁ ସଚେତନ କରାଇବାର ପୂର୍ଣ୍ଣ ଦାୟିତ୍ୱ ଏ ଦୁଇ ସଂସ୍ଥାର । ଏଥିପାଇଁ ଟ୍ରାନସପୋର୍ଟ ଡିପାର୍ଟମେଣ୍ଟ, ଯେ ଟିକସ ଆଦାୟ କରୁଛନ୍ତି, ସେ ସଂସ୍ଥା ପ୍ରତ୍ୟେକ ବର୍ଷ ରାସ୍ତା ନିରାପତ୍ତା ଶିକ୍ଷା ବାବଦକୁ କିଛି ଅଂଶ ସେମାନଙ୍କ ବାର୍ଷିକ ବଜେଟରେ ରଖିବା ଉଚିତ । ଖାଲି ଜନସାଧାରଣଙ୍କଠାରୁ ଟିକସ ଆଦାୟ କଲେ ହେବନି, ସେମାନଙ୍କୁ ଉପଯୁକ୍ତ ଶିକ୍ଷାଦେବା ମଧ୍ୟ ସେଇ ସଂସ୍ଥାର କର୍ତ୍ତବ୍ୟ ଏବଂ ଦାୟିତ୍ୱ ।"

ଇନ୍ଦ୍ରଙ୍କ ମନ୍ତବ୍ୟ ଶୁଣି ଜଣେ ଶ୍ରୋତାବନ୍ଧୁ କହିଲେ—"ଆଜ୍ଞା ଅଶିକ୍ଷିତ ବ୍ୟକ୍ତିଙ୍କ କଥା ଛାଡ଼ନ୍ତୁ । ମୁଁ ଜଣେ ଶିକ୍ଷିତ ବ୍ୟକ୍ତି । ଓଡ଼ିଶା ସେକ୍ରେଟାରିଏଟରେ କାମ କରେ । ମୁଁ ମଧ୍ୟ "ମଟରଗାଡ଼ି ଆକ୍ଟ" ଏବଂ କ୍ଷତିପୂରଣ ଆଇନ ବିଷୟରେ ଜାଣେ ନାହିଁ । ମୋର ମଟର ସାଇକେଲ ଅଛି ଏବଂ ଆଜକୁ ଦଶବର୍ଷ ହେଲା ଗାଡ଼ି ଚଲାଉଛି । କେବଳ, ଟିକସ ଦେବା ଆଉ ମୁଣ୍ଡ ହେଲମେଣ୍ଟ୍ ପିନ୍ଧି ଗାଡ଼ି ଚଲେଇବା ଛଡ଼ା ଅଧିକା କିଛି ଜାଣେନି କିମ୍ବା ଜାଣିବା ପାଇଁ ସେପରି କିଛି ସୁବିଧା ନାହିଁ ।"

ତାଙ୍କକଥା ଶୁଣି ଇନ୍ଦ୍ର କହିଲେ "ଶୁଣନ୍ତୁ; ମଟରଗାଡ଼ି ଆକ୍ଟର ସପ୍ତମ ପରିଚ୍ଛେଦ ଅନୁଯାରେ ପ୍ରତ୍ୟେକ ଗାଡ଼ି ମାଲିକ ଗାଡ଼ି ରାସ୍ତାରେ ଚଳେଇବା ପୂର୍ବରୁ "ତୃତୀୟପକ୍ଷ" ପାଇଁ ଇନସୁରାନସ କରିବାକୁ ବାଧ୍ୟ । (ଧାରା ୯୪,୯୫) ଯାହାକୁ

ଅଛେ "ଥାର୍ଡପାର୍ଟି ଇନସ୍ୟୁରାନସ" କହନ୍ତି । ଏହାର ଉଦ୍ଦେଶ୍ୟ ହେଲା, ଗାଡ଼ି ଚାଳକ କିମ୍ବା ଗାଡ଼ିର ଯାନ୍ତ୍ରିକ ତ୍ରୁଟିଯୋଗୁ ଯଦି ଦୁର୍ଘଟଣା ଘଟେ, ତା'ହେଲେ ଚାଳକର ଆର୍ଥିକ ଅବସ୍ଥା ଥାଉ ବା ନଥାଉ, ଦୁର୍ଘଟଣା ଗ୍ରସ୍ତ ବ୍ୟକ୍ତି ଇନସ୍ୟୁରାନସ କମ୍ପାନୀର କ୍ଷତିପୂରଣ ପାଇବାକୁ ହକଦାର । ସେଥିଲାଗି ଦୁର୍ଘଟଣାଗ୍ରସ୍ତ ବ୍ୟକ୍ତି ବା ପରିବାର, ଦୁର୍ଘଟଣା ଘଟିବାର ୬ମାସ ମଧ୍ୟରେ ସେହି ଆଇନର ୧୧୦ କ (୩) ଧାରା ଅନୁଯାୟୀ ସମସ୍ତ ବିବରଣୀ ସହ ଆକସିଡ଼େଣ୍ଟ ଟ୍ରିବ୍ୟୁନାଲ ପାଖରେ ମକଦ୍ଦମା ଦାଏର କରିବେ । ମଟର ଗାଡ଼ି ଆଇନର ୧୦୮ ଧାରା ଅନୁସାରେ ଥାନା ଅଫିସର ଇନଚାର୍ଜ ଦୁର୍ଘଟଣା ସମ୍ବନ୍ଧୀୟ ସମସ୍ତ ବିବରଣୀ ଇନସ୍ୟୁରାନସ କମ୍ପାନୀ କିମ୍ବା ଆହତ ବ୍ୟକ୍ତିଙ୍କୁ ଦେବାକୁ ବାଧ୍ୟ ।

କିନ୍ତୁ ଦୁଃଖର କଥା, ଦେଶରେ ଦୁର୍ଘଟଣା ପ୍ରତ୍ୟେକଦିନ ଘଟୁଥିଲେ ମଧ୍ୟ, ଥାନାର ଭାରପ୍ରାପ୍ତ ଅଫିସର, ଇନ୍‌ସ୍ୟୁରାନସ କମ୍ପାନୀ, ଆର. ଟି. ଓ କମ୍ପାନୀ, କେହି ଦୁର୍ଘଟଣାଗ୍ରସ୍ତ ବ୍ୟକ୍ତିମାନଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସୁନାହାନ୍ତି । ଏପରିକି "କ୍ଷତିପୂରଣ" ମକଦ୍ଦମା କରିବାକୁ ଯେଉଁସବୁ କାଗଜପତ୍ର ଦରକାର, ତାକୁ ସଂଗ୍ରହ କରିବାକୁ ବହୁ ସମୟରେ ଆହତ ବ୍ୟକ୍ତି ଥାନାକୁ ଦଉଡ଼ି ଦଉଡ଼ି ନିରାଶ ହେବାର ଏବଂ ବହୁ ସମୟରେ ଏଥିପାଇଁ ଆର୍ଥିକ କ୍ଷତିଗ୍ରସ୍ତ ହେବାର ଖବର ମଧ୍ୟ ମିଳେ । ଯେଉଁ ପୁଲିସ ଅଫିସର ଏପରି କାର୍ଯ୍ୟ କରୁଛନ୍ତି, ତାହା ଯେ ବେଆଇନ ଏବଂ ତାଙ୍କ କର୍ତ୍ତବ୍ୟ ବାହାରେ, ତାହା ସେ ଭଲଭାବେ ଜାଣନ୍ତି । ଏପରି ବ୍ୟକ୍ତିଙ୍କ ମୁହଁକୁ ସମସ୍ତଙ୍କ ଆଗରେ ଖୋଲି ଦେବା ଉଚିତ । କାରଣ ମୋଟର ଗାଡ଼ି ଆଇନର ୧୧୦ କ (୧) ଧାରା ଅନୁସାରେ, ଦୁର୍ଘଟଣାଗ୍ରସ୍ତ ପରିବାରକୁ ଦୁର୍ଘଟଣା ଘଟିଲାପରେ, ଥାନାର ଭାରପ୍ରାପ୍ତ ଅଫିସର ନିଜେ କିମ୍ବା ତାଙ୍କର ସହକର୍ମୀମାନଙ୍କ ହସ୍ତରେ ଜଣାଇଦେବେ ଯେ, ସେମାନେ "କ୍ଷତିପୂରଣ" ପାଇଁ ଆଇନର ସହାୟତା ନବାକୁ ଯାଇପାରନ୍ତି । ଏହି ଆଇନ ଗରିବ, ନିରିହ ଲୋକମାନଙ୍କୁ ସାହାଯ୍ୟ କରିବା ପାଇଁ ପୁଲିସକୁ ଏହି ଦାୟିତ୍ୱ ଦେଇଛି । ତାହାଛଡ଼ା ଥାନାବାଲା ଏ ସମସ୍ତ ଖବର ଆହତ ବା ମୃତ ବ୍ୟକ୍ତିର ପରିବାରକୁ ଜଣାଇଛନ୍ତି ବୋଲି, ଥାନାର ଷ୍ଟେସନ ଡ଼ାଏରୀରେ ମଧ୍ୟ ଉଲ୍ଲିଖିତ କରିବାକୁ ନିର୍ଦ୍ଦେଶ ଦିଆଯାଇଛି ।

ମାତ୍ର ଏ ସମସ୍ତ କାର୍ଯ୍ୟ ସେମାନେ କେତେଦୂର କରୁଛନ୍ତି, ସମସ୍ତେ ଜାଣନ୍ତି । ଯଦି ନ କରୁଛନ୍ତି, କାହିଁକି କରୁନାହାନ୍ତି ସେଥିପାଇଁ ସେମାନଙ୍କୁ ସମସ୍ତେ ପଚାରିବା କଥା ।

ଏହାଛଡ଼ା ଏବେ ମଟରଗାଡ଼ି ଆଇନରେ ପରିବର୍ତ୍ତନ କରାଯାଇ ସେକସନ ୯୨ (ଏ) ଏବଂ ସେକସନ ୯୨ (କ) ଯୋଡ଼ାଯାଇଅଛି । ଏହି ଧାରା ଅନୁଯାୟୀ

ଆହତବ୍ୟକ୍ତି, ମୃତ ବ୍ୟକ୍ତିଙ୍କ ପରିବାର 'ନ୍ୟୁବଲ୍‌ଟି ଭିକ୍‌ଟିମ୍ସ ଫଣ୍ଡ' ନିୟମରେ କ୍ଷତିପୂରଣ ପାଇବାକୁ ହକଦାର ।

ଏସବୁ ସୁବିଧା ସତ୍ତ୍ୱେ ଦୁର୍ଘଟଣା ବଢ଼ୁଥିବା ହେତୁ ଏବଂ ଆହତ ବ୍ୟକ୍ତି କ୍ଷତିପୂରଣ ପାଇଁ ଆଗେଇ ଆସୁନଥିବା ହେତୁ ସରକାର ପୁଣି ଏହି ଆଇନରେ ପରିବର୍ତ୍ତନ କରି ୧୦୯ (ଏ)ରୁ ୧୦୯ (ସି) ପର୍ଯ୍ୟନ୍ତ ଯୋଡ଼ିଛନ୍ତି । ଏହି ପରିବର୍ତ୍ତିତ ଆଇନରେ ସରକାର ଗୋଟିଏ 'ସୋଲାସିୟମ ଫଣ୍ଡ' ସୃଷ୍ଟି କରିଛନ୍ତି । ୧୦୯ ଏ (୪) ଧାରା ଅନୁସାରେ ଯେଉଁ ବ୍ୟକ୍ତି ରାସ୍ତା ଦୁର୍ଘଟଣାରେ ମୃତ୍ୟୁବରଣ କରିବ, ସେ ଏହି ଫଣ୍ଡରୁ ୫୦୦୦ ଟଙ୍କା ଏବଂ ଆହତ ହେଲେ ୧୦୦୦ ଟଙ୍କା (ଗ୍ରୀଭିୟସ) ପାଇବେ । ଏହି କ୍ଷତି ପୂରଣ ପାଇବାକୁ ହକଦାର ବ୍ୟକ୍ତି ଆଇନର ୧୧୦ (ଏ) ଧାରା ଅନୁସାରେ ଜିଲ୍ଲା କଲେକ୍ଟରଙ୍କୁ ଦରଖାସ୍ତ ଦେବେ ।

ଏ ସମସ୍ତ ସୁବିଧା ସରକାର ଦେବା ସତ୍ତ୍ୱେ ମଧ୍ୟ 'କ୍ଷତିପୂରଣ' ମକଦ୍ଦମା ବହୁତ କମ୍ । ଏଥିପାଇଁ ପ୍ରତ୍ୟେକ ଶିକ୍ଷିତ ଯୁବକ ଗରିବ ନିରାହ ଲୋକଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସିବା ଉଚିତ୍ ।

( ୪୭ )

ଏଇ କେତେଦିନ ତଳେ ଭାରତର ରାଜଧାନୀ ଦିଲ୍ଲୀ ନଗରୀରେ ଅବସ୍ଥିତ ସବୁଠାରୁ ଅଧିକ ସୁରକ୍ଷ 'ତିହାର ଜେଲ' ମଧ୍ୟରୁ ଆନ୍ତଃକୁଖ୍ୟାତ ସମ୍ପନ୍ନ ବିଶ୍ୱର ଅତି ଧୂର୍ତ୍ତ ଦାଗୀ ଚାର୍ଲସ ଶୋଭରାଜ ଆଉ ପାଞ୍ଚଜଣ ଦାଗୀଙ୍କ ସହିତ ଦିନବେଳେ ସମସ୍ତଙ୍କ ଆଖିରେ ଧୂଳି ଦେଇ ଜେଲ କର୍ମଚାରୀମାନଙ୍କୁ ମାଦକ ଦ୍ରବ୍ୟ ଖୁଆଇ ପଳାୟନ କଲେ । ଏ ପର୍ଯ୍ୟନ୍ତ ଶୋଭରାଜଙ୍କୁ ଧରିବାରେ ପୁଲିସ ସଫଳ ହୋଇ ପାରିନାହାନ୍ତି ।

ସାରା ଦେଶରେ ଏଇ ଚମକପ୍ରଦ ଘଟଣା ପ୍ରଚାର ହେଲାପରେ ସମସ୍ତେ ଜେଲ କର୍ମଚାରୀଙ୍କୁ ଦୋଷ ଦେଲାବେଳେ ଆଉ କେତେଜଣ ଶୋଭରାଜଙ୍କ ହିରୋ-ଇଜମକୁ ପ୍ରଶଂସା କରିବାରେ ଲାଗିଛନ୍ତି । ବହୁ ପତ୍ରପତ୍ରିକାରେ ଏଇ ବିଷୟରେ ଏବଂ ଶୋଭରାଜଙ୍କ ଜୀବନୀ ମଧ୍ୟ ପ୍ରକାଶ ପାଇଲାଣି । ଭବିଷ୍ୟତରେ ଆହୁରି ଚମକପ୍ରଦ ଘଟଣାମାନ ପ୍ରକାଶ ପାଇବ ।

ପ୍ରକାଶ ପାଇଥିବା ଘଟଣାରୁ ଜଣାପଡ଼ୁଛି ଯେ ଜେଲ କର୍ମଚାରୀମାନଙ୍କ ସହାୟତା ଯୋଗୁ ଏପରି କୁଖ୍ୟାତ ଦାଗି ଜେଲରୁ ପଳାୟନ କଲେ । ଏଥିପାଇଁ କେବଳ ତଳିଆ ଜେଲ କର୍ମଚାରୀ ଯେ ଦୋଷୀ ସେ କଥା ନୁହେଁ । ଜେଲର ଉଚ୍ଚ

କର୍ମଚାରୀ, ଏପରିକି କର୍ମଚାରୀମାନଙ୍କ କାର୍ଯ୍ୟକୁ ତଦାରଖ କରୁଥିବା ଉଚ୍ଚପଦସ୍ଥ କର୍ମଚାରୀମାନଙ୍କୁ ଦାୟୀ କରିବା ଉଚିତ । କାରଣ ତଦାରଖରେ ଖିଲାପ ହେଲେ ନିମ୍ନ କର୍ମଚାରୀମାନେ ଏହାର ସୁବିଧା ନେଇଥାନ୍ତି ଏବଂ ଏଠାରେ ତାହାହିଁ ଘଟିଲା ।

ଇନ୍ଦ୍ରଙ୍କ କଥା ଶୁଣି ଜଣେ ଶ୍ରୋତା ବନ୍ଧୁ କହିଲେ, ଏଇ କେତେବର୍ଷ ତଳେ ଓଡ଼ିଶାର ବହୁ ଜେଲରୁ ବନ୍ଦୀମାନେ ଖସି ପଳାଇ ଯାଉଥିଲେ । ଜେଲରୁ ଖସିଯିବା ସେତେବେଳେ ଏକ ପ୍ରକାର ସାଧାରଣ ଘଟଣାରେ ପରିଣତ ହେଲା । ପୁରୀ ଜିଲ୍ଲାର ନୟାଗଡ଼ ଜେଲରୁ ସେ ଅଞ୍ଚଳରେ କୋକୁଆ ଭୟ ସୃଷ୍ଟି କରିଥିବା ଶ୍ୟାମ ପାଇକରାଏ ଦଳର ସମସ୍ତ କୁଖ୍ୟାତ ଡକାୟତ ଜେଲରୁ ଖସି ପଳାୟନ କରିଥିଲେ । ଥରେ ନୁହେଁ, ଦୁଇଥର ସେମାନେ ଜେଲରୁ ଗଲାପରେ ବହୁ ଡକାୟତି ମର୍ଡ଼ର ପ୍ରଭୃତି କେସରେ ସମ୍ପୃକ୍ତ ହେଲେ । ବହୁ ଲୋକ କ୍ଷତିଗ୍ରସ୍ତ ହେବାପରେ ପୁଲିସ ବହୁ କଷ୍ଟ ସ୍ୱୀକାର କରି ଏମାନଙ୍କୁ ବହୁଦିନ ପରେ ଧରିବାକୁ ସକ୍ଷମ ହେଲେ ।

ସେହିପରି ଗଞ୍ଜାମ ଜିଲ୍ଲାର ବରହମପୁର ଜେଲ ମଧ୍ୟରେ ସେତେବେଳର ବରହମପୁର ଅଞ୍ଚଳର ପ୍ରବଳ ପ୍ରତାପୀ ଗୁଣ୍ଡାରାଜା ପ୍ରତାପ ସ୍ୱାଇଁ ଏବଂ ତାଙ୍କ ଦଳର ଅନ୍ୟମାନେ ମହାଆନନ୍ଦରେ ରହିଥିଲେ । ଏପରିକି ତାଙ୍କ ଜେଲ କୋଠରୀ ମଧ୍ୟରୁ ଜେଲ ପ୍ରକୋଷ୍ଠ ମଧ୍ୟକୁ ମନାଥିବା ଜିନିଷମାନ ବାହାରିଥିବା ସମ୍ବାଦପତ୍ର ପତ୍ରିକାରେ ପ୍ରକାଶ ପାଇଥିଲା । ଏହାଛଡ଼ା ଓଡ଼ିଶା ଓ ଆଉ କେତେକ ଜେଲରୁ ମଧ୍ୟ ବନ୍ଦୀ ଖସିଯିବାର ଦୃଷ୍ଟାନ୍ତ କମ୍ ନଥିଲା । ମାତ୍ର ଏପରି ଦୃଷ୍ଟାନ୍ତ ଲୋକ ଲୋଚନକୁ ଆସିନାହିଁ ।

ଏହାର କାରଣ ଦର୍ଶାଇ ଉକ୍ତ ବ୍ୟକ୍ତି ଜଣକ କହିଲେ ଯେ ଜେଲର ଶାସନରେ ଏବେ ବହୁ ପରିବର୍ତ୍ତନ ଘଟିଛି । ଜେଲ ବିଭାଗର ମୁଖ୍ୟ ଜଣେ ସିନିୟର ଭାରତୀୟ ପୁଲିସ ସେବାର ଅଫିସର ଥିବା ଯୋଗୁ, ଜେଲର ପରିଚାଳନା କର୍ମଚାରୀ-ମାନଙ୍କ ଉନ୍ନତି କଳ୍ପେ ବିଭିନ୍ନ ଯୋଜନା, ସେମାନଙ୍କ ପାଇଁ ପରିବାର କଲ୍ୟାଣ ପାଣ୍ଠି, କର୍ମଚାରୀମାନଙ୍କ ପାଇଁ ଟ୍ରେନିଂ ସ୍କୁଲ ଇତ୍ୟାଦି ଖୋଲିବା ସଙ୍ଗେ ସଙ୍ଗେ, ଦୁର୍ନୀତିଗ୍ରସ୍ତ କର୍ମଚାରୀମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଜେଲ ଶାସନର ମାନଦଣ୍ଡ ଯଥେଷ୍ଟ ବଢ଼ାଉଛି ଏବଂ ଚଳି ଆସୁଥିବା ଶାସନରେ ପରିବର୍ତ୍ତନ ଆଣିଛି । ସେଥିଲାଗି ଜେଲ କର୍ମଚାରୀ ସଂଘ ଅଳ୍ପଦିନ ତଳେ ଜେଲର ମୁଖ୍ୟ, ଡାକ୍ତରମାନଙ୍କ ହାତକୁ ଫେରି ଆସିଥିବା ଦାବୀ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଏପରିକି ଯଦି ପୁଣି ଡାକ୍ତରଙ୍କ ହାତକୁ ଆଇ.ଜି. ପ୍ରିଜନସ ପଦ ଫେରିଯାଏ ତାହେଲେ ସେମାନେ 'ଇସ୍ତଫା' ଦେବେ ବୋଲି ଘୋଷଣା କରିଥିଲେ । ଏଇଥିରୁ ଜଣାପଡେ ବିଗତ

କେତେବର୍ଷ ଧରି ଜେଲ ଶାସନ କେଉଁ ପ୍ରକାର ଭାବେ ଚାଲୁଥିଲା । ନହେଲେ କର୍ମଚାରୀମାନେ ଏପରି ମନୋଭାବ ପ୍ରକାଶ କରିନଥାନ୍ତେ । ସେଇଥିଲାଗି ବର୍ତ୍ତମାନ ତିହାର ଜେଲର ମୁଖ୍ୟ ଜଣେ ଆଇ: ପି. ଏସ ଅଫିସର ହେବେ ବୋଲି ସମ୍ବାଦ ପ୍ରକାଶ ପାଇଛି । ଉପଯୁକ୍ତ ଅଫିସରଙ୍କୁ ଉପଯୁକ୍ତ ସ୍ଥାନରେ ନରଖିଲେ ଅବସ୍ଥା ଏଇଆ ହୁଏ !!!

ଇନ୍ଦ୍ରଙ୍କ ମନ୍ତବ୍ୟ ଶୁଣି ଭଦ୍ରବ୍ୟକ୍ତି ଜଣକ କହିଲେ ବର୍ତ୍ତମାନ ଆମ ଓଡ଼ିଶା ପ୍ରଦେଶରେ ସର୍ବମୋଟ ୭୩ ଗୋଟି ଜେଲ ଅଛି । ତନ୍ମଧ୍ୟରୁ ୧୩ ଗୋଟି ଜିଲ୍ଲା ସ୍ତରୀୟ ଜେଲ । ଏହି ଜିଲ୍ଲାସ୍ତରୀୟ ଜେଲ ଭିତରେ ଚାରିଗୋଟି ସର୍କଲ ଜେଲ କଟକ, ବରହମପୁର, ସମ୍ବଲପୁର ଏବଂ ବାଲେଶ୍ୱରଠାରେ ଅଛି । ତାହାଛଡ଼ା ରାଉରକେଲା, ଭୁବନେଶ୍ୱରରେ ଦୁଇଗୋଟି ସ୍ପେସାଲ ଜେଲ ଗଠନ କରାଯାଇ ଅଛି । ଅଳ୍ପ ବୟସ ବାଳକ ବାଳିକାମାନଙ୍କ ପାଇଁ, ଯେଉଁମାନେ ବାଳଅପରାଧରେ ଦଣ୍ଡିତ ହୁଅନ୍ତି, ଅନୁଗୁଳଠାରେ ଥିବା 'ବାଳଅପରାଧୀ ଜେଲ' ସେମାନଙ୍କ ପାଇଁ ଉଦ୍ଦିଷ୍ଟ । ଏ ସମସ୍ତ ଜେଲର ତଦାରଖ ପାଇଁ ବର୍ତ୍ତମାନ ୧୬ଜଣ ସୁପରିନଟେଣ୍ଡେଣ୍ଟ୍, ୪୧ ଜଣ ମେଡ଼ିକାଲ ଅଫିସର, ୧୬ଜଣ ଆସିଷ୍ଟାଣ୍ଟ ସରଜନ, ୨୨ ଜଣ ଜେଲର, ୭୨ ଜଣ ସହକାରୀ ଜେଲର, ୧୨୨ ଜଣ ସବ୍ ଆସିଷ୍ଟାଣ୍ଟ ଜେଲର୍, ୧୫ ଜଣ ଚିଫ୍ ହେଡ୍ ଓ୍ୟାଡ଼ର, ୧୪୮ ଜଣ ହେଡ୍ ଓ୍ୟାଡ଼ର, ୮୮୭ ଜଣ ମେଲ ଓ୍ୟାଡ଼ର, ୨୨ ଜଣ ଫିମେଲ, ୫୭ ଜଣ ଫରମାସିଷ୍ଟ, ୫ ଜଣ ମେଲ ନର୍ସିଂ ଷ୍ଟାଫ ଅଛନ୍ତି । ବର୍ତ୍ତମାନ ଏହି ୭୩ ଗୋଟି ଜେଲରେ ହାରାହାରି କୋଡ଼ିଏ ହଜାରରୁ ଊର୍ଦ୍ଧ୍ୱ କଏଦୀମାନେ ରହୁଛନ୍ତି ।

ବର୍ତ୍ତମାନର ଏହି ୭୩ ଗୋଟି ଜେଲ ମଧ୍ୟରୁ କେବଳ ଭୁବନେଶ୍ୱର, ରାଉରକେଲା ଏବଂ ସେହିପରି ଆଉ ଗୋଟିଏ ଦୁଇଟି ଜେଲକୁ ଛାଡ଼ି ଦେଲେ, ପ୍ରାୟ ସମସ୍ତ ଜେଲ ବହୁ ବର୍ଷର ପୁରୁଣା ଜେଲ । ଯଦିଓ କଟକ, ପୁରୀ, ବରହମପୁର ଜେଲ ବହୁ ପୁରୁଣା, ମାତ୍ର ଏହାର ଗଠନ ପ୍ରଣାଳୀ ଅନ୍ୟ ଦେଶୀୟ ରାଜ୍ୟ ଜେଲ ତୁଳନାରେ ଯଥେଷ୍ଟ ଭଲ । ସ୍ୱାଧୀନତା ପରେପରେ ଯେଉଁସବୁ ଗଡ଼ଜାତ ଓଡ଼ିଶାରେ ମିଶିଗଲା, ସେମାନଙ୍କ ଜେଲ ମଧ୍ୟ ସରକାରୀ ଜେଲ ହିସାବରେ ପରିଗଣିତ ହେଲା । ଏ ସମସ୍ତ ଜେଲର ଗଠନ ପ୍ରଣାଳୀରେ ଯଥେଷ୍ଟ ଦୋଷ ତ୍ରୁଟି ପରିଲକ୍ଷିତ ହୁଏ ।

ସେସବୁ ଛାଡ଼ । ଏଇ ଜେଲ ଗୁଡ଼ିକ ସେତେବେଳେ ନିର୍ଦ୍ଦିଷ୍ଟ ସଂଖ୍ୟକ କଏଦୀମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲାବେଳେ, ବର୍ତ୍ତମାନ କଏଦୀଙ୍କ ସଂଖ୍ୟା ଯଥେଷ୍ଟ ପରିମାଣରେ ବଢିଯାଇଛି । ଯେଉଁ ଜେଲରେ ଶହେଜଣ କଏଦୀ ରହିପାରିବେ,

ସେଠାରେ ବେଳେବେଳେ ଦୁଇଶହ କଏଦୀରୁ ଅଧିକା ରହୁଛନ୍ତି । କଟକ, ରାଉରକେଲା, ବରହମପୁର ଜେଲରେ ସବୁ ସମୟରେ ଅଧିକ ମାତ୍ରାରେ କଏଦୀ ରହିବା କଥା ଶୁଣାଯାଏ ।

ତା'ଛଡ଼ା ଜେଲ ପରିଚାଳନା ପାଇଁ, ବ୍ରିଟିଶ ସରକାର ବହୁବର୍ଷ ତଳେ ଜେଲ ମାନୁଆଲ ତିଆରି କରିଥିଲେ । ସେମାନେ ଏହି ଆଇନ ଏବଂ ମାନୁଆଲକୁ ତାଙ୍କ ଦୃଷ୍ଟିଭଙ୍ଗି, ଏବଂ ସେମାନେ କିପରି କଏଦୀମାନଙ୍କୁ ଦମନ କରି ରଖି ପାରିବେ, ତାକୁ ଆଖିଆଗରେ ରଖି ତିଆରି କରିଯାଇଛନ୍ତି । ବର୍ତ୍ତମାନ ଦେଶ ସ୍ୱାଧୀନ ହେବାର ୩୬ ବର୍ଷ ହୋଇଥିଲେ ମଧ୍ୟ ସେହି ମାନୁଆଲ ଅନୁଯାୟୀ ଜେଲ କାର୍ଯ୍ୟ ପରିଚାଳନା ହେଉଛି ।

ଏହାଦ୍ୱାରା ବର୍ତ୍ତମାନର ଜେଲ କର୍ମଚାରୀ ପରିଚାଳନା ଦାୟିତ୍ୱରେ ଥିବା ବ୍ୟକ୍ତି ବିଶେଷ, ସର୍ବୋପରି ବର୍ତ୍ତମାନ ସମୟ ପରିପ୍ରେକ୍ଷୀରେ ଜେଲକୁ ଆସୁଥିବା କଏଦୀମାନେ ହଇରାଣ ହେଉଛନ୍ତି । ତେଣୁ ସମଗ୍ର ଦେଶରେ ଜେଲରୁ କଏଦୀମାନେ ଖସି ପଳାଇବାର ଖବର ପ୍ରତ୍ୟେକ ଦିନ ସମ୍ବାଦପତ୍ରରେ ବାହାରୁଛି । ଦିଲ୍ଲୀର ତିହାର ଜେଲରୁ ଶୋଭରାଜ ଖସିଥିଲା, ଓଡ଼ିଶାର ନୟାଗଡ଼ ଜେଲରୁ ଡକାଏତ ଦଳ ବାହାରି ପଳେଇଲେ, ଏପରି କେତେ ଜେଲରୁ ପଳାୟନ କରୁଛନ୍ତି । ଭବିଷ୍ୟତରେ ଏପରି ଘଟଣା ବହୁ ପରିମାଣରେ ଘଟିପାରେ ।

ତେଣୁ ଆଜିଠାରୁ ଏ ସମସ୍ତ ବିଷୟରେ ସତର୍କତା ଅବଲମ୍ବନ କରିବାକୁ ପଡ଼ିବ । ପୁରୁଣା ଜେଲଗୁଡ଼ିକର ଉନ୍ନତି, ଜେଲ ଷ୍ଟାଫ୍‌ର ସଂଖ୍ୟା ବୃଦ୍ଧି, ଜେଲ କର୍ମଚାରୀମାନଙ୍କୁ ଉପଯୁକ୍ତ ଟ୍ରେନିଂ, ଜେଲ ମାନୁଆଲର ପରିବର୍ତ୍ତନ, କଏଦୀମାନଙ୍କର ରହିବା, ଖାଇବା ଏବଂ ସ୍ୱାସ୍ଥ୍ୟରକ୍ଷାର ଉନ୍ନତି ପରିକଳ୍ପିତ ଯୋଜନା, ମୁକ୍ତ ଆକାଶ ଜେଲଦ୍ୱାରା ଅପରାଧୀଙ୍କୁ ଭଲ ବାଟକୁ ଆଣିବାର ବ୍ୟବସ୍ଥା ବିଷୟ ଚିନ୍ତା କରିବାର ସମୟ ଆସିଛି । ଏତିକିବେଳୁ ଏ ସମସ୍ତର ବ୍ୟବସ୍ଥା ନକଲେ, ଭବିଷ୍ୟତରେ ଜେଲ ବ୍ରେକ୍ ହେଲାବେଳେ ଦୁଃଖ ଆଉ କ୍ଷୋଭ ପ୍ରକାଶର ମୂଲ୍ୟ କିଛି ହୁଏନା ।

ପରାଧୀନ ଭାରତ ସ୍ୱାଧୀନ ହେଲାପରେ, ଦେଶର ରାଜନୈତିକ କ୍ଷେତ୍ରରେ ସମ୍ପୂର୍ଣ୍ଣ ପରିବର୍ତ୍ତନ ଘଟିଥିଲେ ମଧ୍ୟ, ଦେଶର ଶାସନ କଳକୁ ଚଳାଉଥିବା ଅମଲା-ତନ୍ତ୍ରରେ କିଛି ପରିବର୍ତ୍ତନ ଘଟି ନଥିଲା । ଅତି ନଗଣ୍ୟ କେତେକ ବ୍ରିଟିଶ ଅଫିସର କିମ୍ବା ଆଙ୍ଗ୍ଲୋଇଣ୍ଡିଆନ ଅଫିସର ମାନଙ୍କୁ ଛୁଟିଦେଲେ, ପରାଧୀନ ଭାରତର ସମସ୍ତ ଅମଲାତନ୍ତ୍ର ସ୍ୱାଧୀନ ଭାରତର ଶାସନକଳ ଚଳେଇବାର ଦାୟିତ୍ୱ ନେଲେ । ସେମାନେ ଦାୟିତ୍ୱ ନେଲାପରେ ମଧ୍ୟ ଏହି କଳର କିଛି ପରିବର୍ତ୍ତନ ଘଟିନଥିଲା । ଯେଉଁପରି

ଭାବେ ଏହା ସେତେବେଳେ ଚାଲୁଥିଲା, ପରେ ପରେ ମଧ୍ୟ ସେହିପରିଭାବେ ଚାଲିବାକୁ ଲାଗିଲା । ଅବଶ୍ୟ ଯେତେବେଳେ ଶାସନ କଳରେ ଆଇ: ସି: ଏସ: ଅଫିସର ମାନଙ୍କ ଜାଗାରେ ଆଇ: ଏ: ଏସ:, ଆଇ: ପି: ଜାଗାରେ ଆଇ: ପି: ଏସ: ନାମ ପରିବର୍ତ୍ତନ କରି ଲେଖା ହେଲା । କିନ୍ତୁ ସେମାନଙ୍କର କାର୍ଯ୍ୟ କରିବା ପଦ୍ଧତିରେ କୌଣସି ପରିବର୍ତ୍ତନ ହେଲା ନାହିଁ ।

ମାତ୍ର ସ୍ୱାଧୀନ ଭାରତରେ ରାଜନୈତିକ ପରିବର୍ତ୍ତନ ସମ୍ପୂର୍ଣ୍ଣ ବୈପ୍ଳବାତ୍ମକ ଥିଲା । ଦେଶର ନାଗରିକମାନେ ହଠାତ୍ ସାମ୍ରାଜ୍ୟବାଦୀ ରାଜତନ୍ତ୍ରରୁ ଗଣତନ୍ତ୍ରର ସ୍ୱାଦ ପାଇଲେ । ଗଣତନ୍ତ୍ରରେ ନିଜର ଅଧିକାର ପାଇବାର ଦାବୀ ହାସଲ କଲେ । ତାଛଡ଼ା ଯେଉଁମାନେ ଶାସନ କଳର ମୁଖ୍ୟ ଭାବେ ଦାୟିତ୍ୱ ନେଲେ, ସେମାନେ ସମ୍ପୂର୍ଣ୍ଣ ଅଲଗା ପଦ୍ଧତିରେ ନିର୍ବାଚିତ ହୋଇ ଆସିଲେ । ହଠାତ୍ 'ଅମଲାତନ୍ତ୍ର ଶାସନର ମୁଖ୍ୟ ହିସାବରେ ଗଣତନ୍ତ୍ର ପଦ୍ଧତିରେ ନିର୍ବାଚିତ ବ୍ୟକ୍ତିଙ୍କୁ ଦେଖିବାକୁ ପାଇଲେ । ଏହି ବ୍ୟକ୍ତିଙ୍କର ସାମାଜିକ ପ୍ରତିପତ୍ତି ନଥାଇ ପାରେ, ମାତ୍ର ନିର୍ବାଚିତ ପ୍ରତିନିଧି, ଶାସନର ମୁଖ୍ୟ, ଅଫିସର ଆଉ ଅମଲାତନ୍ତ୍ର ଚିନ୍ତାଧାରା ସମାନ ସ୍ତରର ହେଲେ ଯାଇ ଶାସନକଳ ଠିକ୍ ଚାଲିବ । ଗୋଟିଏ କଳର ଯଦି କୌଣସି ଅଂଶ ଅନ୍ୟ ଅଂଶ ସହିତ ତାଳ ରକ୍ଷା କରି ନଚାଲେ ତାହେଲେ ସେଇ କଳ କେବେ ହେଲେ ସୁଚାରୁ ରୂପେ ଚାଲିପାରିବ ନାହିଁ । ତେଣୁ ମୁଖ୍ୟ ଶାସକ, ଅମଲାତନ୍ତ୍ର ସମସ୍ତେ ଏକମନ ଏବଂ ଏକ ଆଦର୍ଶ ନେଇ ଚାଲିବା ଉଚିତ ।

ସ୍ୱାଧୀନୋତ୍ତର ଶାସନ କାର୍ଯ୍ୟରେ ବିଶେଷ କିଛି ଅଭାବର ପରିଲକ୍ଷିତ ହୋଇନଥିଲା । ଏହାର ମୂଳ କାରଣ ଥିଲା, ସେତେବେଳର ଶାସନ ମୁଖ୍ୟମାନେ ଅମଲାତନ୍ତ୍ର ଏବଂ ଅଫିସର ଏକା ମନନେଇ କାମ କରୁଥିଲେ । ସେମାନଙ୍କର ଦେଶ ସ୍ୱାଧୀନତା ପାଇଁ ଅବଦାନ ଥିଲା । ମାତ୍ର ଏହା ପରେ ପରେ ଯେଉଁମାନେ ଦାୟିତ୍ୱ ନେଲେ, ନିର୍ବାଚିତ ପ୍ରତିନିଧିଭାବେ ସେମାନେ ଶାସନ କଳ ଏବଂ ଅମଲାତନ୍ତ୍ରକୁ ଏପରିଭାବେ ଚଳେଇବାକୁ ଚାହିଁଲେ ଯେ, ସେଥିରେ ସେମାନେ ପୁରା ଅମଲାତନ୍ତ୍ରକୁ ସାଙ୍ଗରେ ନେଇ ପାରିଲେନି କି ତାକୁ ବଦଳାଇ ନିଜ ଆଭିମୁଖ୍ୟାଭିମୁଖି କରିପାରିଲେନି । ଏହାଦ୍ୱାରା କେତେକ ନିର୍ବାଚିତ ପ୍ରତିନିଧି ନିଜର ଫାଇଦା ଏଇ ଅମଲାତନ୍ତ୍ରର ସାହାଯ୍ୟରେ ଉଠାଇବାକୁ ବସିଲେ । 'କଳ' ଭିତରେ 'ଫାଇଦା' ଥରେ ପଶିଲା ପରେ ଏହା ଆସ୍ତେ ଆସ୍ତେ ଏପରି ଭାବେ ବ୍ୟାପିଲା ଯେ, ଏହା ସମସ୍ତ କଳକୁ ଖୋଲ କରିବାକୁ ବସିଲାଣି ।

ଇନ୍ଦ୍ର କହିଲେ, ବର୍ତ୍ତମାନ ଜେଲ କାହିଁକି, ପ୍ରତ୍ୟେକ ସଂସ୍ଥାରେ ଏଇ 'ଫାଇଦା' ଲାଗି ଅସୁବିଧା ସୃଷ୍ଟି ହେଉଛି । ଫାଇଲ କଚ୍ଛପଗତିରେ ଗତି କରୁଛି ।

ସାଧାରଣ ଲୋକ ଥରକୁ ଥର ଦଉଡ଼ି ମଧ୍ୟ ନ୍ୟାୟ ପାଉନ । ଅମଲାତନ୍ତ୍ର ତା'ବାଟରେ ଚାଲୁଛି—ସାଧାରଣ ଲୋକ ହଇରାଣ ହେବା କଥା । ତେଣୁ ବର୍ତ୍ତମାନର ଅମଲାତନ୍ତ୍ରର ଆଭିମୁଖ୍ୟକୁ ବଦଳାଇବାକୁ ପଡ଼ିବ । ନହେଲେ ଲୋକେ ଯେଉଁଥିପାଇଁ ରକ୍ତ ଦେଇ ଲଢ଼ିଥିଲେ, ସେଇ ନ୍ୟାୟ ଟିକକ ପାଇବେ ନାହିଁ ।

( ୪୭ )

ଇନ୍ଦ୍ରଙ୍କ ମନ୍ତବ୍ୟ ଉପରେ କହିବାକୁଯାଇ ଭଦ୍ରବ୍ୟକ୍ତି ଜଣଙ୍କ କହିଲେ, ସ୍ୱାଧୀନତା ପରେ ଅମଲାତନ୍ତ୍ର କିମ୍ବା ପ୍ରଶାସନ ପ୍ରଣାଳୀରେ ପ୍ରକୃତରେ କିଛି ପରିବର୍ତ୍ତନ ହୋଇନାହିଁ । ନାଲିଫିତାର କାରସାଦି ଏପର୍ଯ୍ୟନ୍ତ ଚାଲିଛି । ସବୁ କ୍ଷେତ୍ରରେ ଏହି ପରିବର୍ତ୍ତନର ଆବଶ୍ୟକତା ଅନୁଭବ କରାଯାଉଥିବାରୁ, ଏହି କେତେବର୍ଷ ମଧ୍ୟରେ ବିଭିନ୍ନ ପ୍ରକାର କମିଶନ ବସି ସାରିଲେଣି । ପ୍ରଶାସନ ପ୍ରଣାଳୀରେ ପରିବର୍ତ୍ତନ ପାଇଁ କମିଶନ ବସିଥିଲା । ପୁଲିସ ସଂସ୍ଥାରେ ଉନ୍ନତି ଆଣିବାପାଇଁ ଜାତୀୟ ପୁଲିସ କମିଶନ ବସିଲା । ଶିକ୍ଷା କ୍ଷେତ୍ରରେ ପରିବର୍ତ୍ତନ ଆଣି କର୍ମାଭିମୁଖୀ ଶିକ୍ଷା ପ୍ରଚଳନ କରି ଦେଶରୁ ବେକାରି ନିରାକରଣ ପାଇଁ ଶିକ୍ଷା କମିଶନ ବସିଲା । ପ୍ରଚଳିତ ବିଚାର ସଂସ୍ଥାରେ ଦରିଦ୍ର, ନିଃସହ ଜନସାଧାରଣ ନ୍ୟାୟ ପାଇବାରୁ ବଞ୍ଚିତ ହେଉଥିବାରୁ ପ୍ରଚଳିତ ବିଚାର ପଦ୍ଧତିରେ କି ପ୍ରକାର ପରିବର୍ତ୍ତନ ଅଣାଯାଇ ପାରିବ ସେଥିପାଇଁ ଆଇନ କମିଶନ ବସିଲା । ଜେଲ ବିଭାଗରେ ପରିବର୍ତ୍ତନ ପାଇଁ ଜେଲ କମିଶନ ଇତ୍ୟାଦି ବହୁ କମିଶନ ବସି ସାରିଲଣି ।

ପ୍ରତ୍ୟେକ କମିଶନ ଦେଶର ବହୁ ବିଜ୍ଞ, ବିଭିନ୍ନ କ୍ଷେତ୍ରରେ ପାରଦର୍ଶିତା ପ୍ରଦର୍ଶନ କରିଥିବା ବ୍ୟକ୍ତି ବିଶେଷଙ୍କୁ ନେଇ ଗଠିତ ହୋଇଥିଲା । ସେମାନେ ପ୍ରତ୍ୟେକ ସଂସ୍ଥାର ପ୍ରଚଳିତ କାର୍ଯ୍ୟକ୍ରମକୁ ପୁଙ୍ଖାନୁପୁଙ୍ଖ ତଦନ୍ତ କରି ଏବଂ ଯେଉଁ କ୍ଷେତ୍ରରେ ଦରକାର ହେଲା, ଜନସାଧାରଣଙ୍କ ମତାମତ ସଂଗ୍ରହ କରି ସେମାନଙ୍କ ରିପୋର୍ଟ ପ୍ରସ୍ତୁତ କରି ସରକାରଙ୍କ ପାଖେ ପେଶ କରିଛନ୍ତି । ମାତ୍ର ଏ ସମସ୍ତ ରିପୋର୍ଟ ଉପରେ ଯେତେଦୂର କାର୍ଯ୍ୟାନୁଷ୍ଠାନ ହେବା କଥା ତାହା ହୋଇ ପାରିନାହିଁ । କାରଣ ଅର୍ଥାଭାବ ଏହି ପ୍ରଗତିରେ ଅନ୍ତରାୟ ସୃଷ୍ଟି କରୁଛି ।

ଭଦ୍ରବ୍ୟକ୍ତିଙ୍କ କଥା ଶୁଣି ଇନ୍ଦ୍ର କହିଲେ, ଏ ସମସ୍ତସତ୍ତ୍ୱେ ଯଦି ଲୋକମାନଙ୍କର ନୈତିକ ପରିବର୍ତ୍ତନ ନଘଟେ ତାହେଲେ କମିଟିମାନ ହଜାରେ ରିପୋର୍ଟ ପ୍ରସ୍ତୁତ କରିଦେଲେ ତାହାର ଫଳ କିଛି ହେବନି । ତାହା ପୁଣି କେବଳ ପୁରୁଣା ମଦ ନୂଆ ବୋତଲରେ ରଖିଲା ସଦୃଶ ହେବ ।

ବର୍ତ୍ତମାନ ଦେଖାଯାଉଛି ଜଣେ ଶିକ୍ଷିତ ବେକାର ଯୁବକ, ଗୃହକରି ଖଣ୍ଡେ

ଯୋଗାଡ଼ କରିବା ପର୍ଯ୍ୟନ୍ତ ତା'ମନରେ ଯାହା କିଛି ନୈତିକବୋଧ ଥିଲ, ତାହା ଚାକିରି ଖଣ୍ଡେ କଲପରେ ଆସ୍ତେ ଆସ୍ତେ ଉଭାନ ହୋଇଯାଉଛି । ଚାକିରି ପାଇବାର ଦ୍ୱିତୀୟ ଦିନରେ ଅଫିସକୁ ଆସିବାର ଡେରି, ତାପରେ କାମ ନକରି ବୁଲିବା, ମିଛ କହି ଛୁଟି ନେବା, ଫାଇଲ ନାମରେ ଡେରିକରି ଅନ୍ୟକୁ ହଇରାଣ କରି ନିଜର କ୍ଷମତାର ଅପବ୍ୟବହାର କରିବା, ସର୍ବୋପରି ଉତ୍କୋଚ ଗ୍ରହଣ କରିବାକୁ ଚାହିଁବ ମୋଟା ଉତ୍କୋଚ ନେଲାପରେ କାର୍ଯ୍ୟ କରିବା, କେତେକ ସ୍ଥାନରେ ଗରିବ ଲୋକଙ୍କଠାରୁ ଉତ୍କୋଚ ନେଇ ମଧ୍ୟ କାମ ନକରି ଠକିବା, ଏହା ସେମାନଙ୍କର ନୈତିକହୀନତାର ପରିଚୟ ଦେଉଛି । ପ୍ରାୟ ସମସ୍ତ ପ୍ରକାର କର୍ମଚାରୀ, ତଳ ଶ୍ରେଣୀର ହେଉ କିମ୍ବା ଉପର ଶ୍ରେଣୀର ହେଉ ଏହି ପ୍ରକାର କାର୍ଯ୍ୟ କରିଛନ୍ତି ।

ଅବଶ୍ୟ କର୍ମଚାରୀମାନଙ୍କ ଭିତରେ କେତେକ ସଚ୍ଚୋଟ ନ୍ୟାୟପରାୟଣ ନୀତିବାନ କର୍ମଚାରୀ ଯେ ନାହାନ୍ତି, ସେକଥା କହୁନାହିଁ । ସେମାନେ ଥିବା ଯୋଗୁଁ ଦେଶର ଶାସନକଳ ମନ୍ଥର ଗତିରେ ଚାଲିଲେ ମଧ୍ୟ ଚାଲିଛି । ନହେଲେ ଏହା କେବେ ଠାରୁ ବନ୍ଦ ହୋଇ ଯାଆନ୍ତାଣି ।

କମିଶନ ବସାଇ ସିନା ଆମେ ଦେଶର ଶାସନ ପ୍ରଣାଳୀର ପରିବର୍ତ୍ତନ କରିପାରିବା, ମାତ୍ର କର୍ମଚାରୀ ତଥା ଜନସାଧାରଣଙ୍କର ନୈତିକ ମାନଦଣ୍ଡକୁ ପରିବର୍ତ୍ତନ କରିବା ସମ୍ଭବ ନୁହେଁ । ବର୍ତ୍ତମାନ ଦେଶର ପ୍ରତ୍ୟେକ କ୍ଷେତ୍ରରେ, ସେ ଘର ହେଉ କିମ୍ବା ଅଫିସ ହେଉ—ଏହାର କୁପ୍ରଭାବ ପରିଲକ୍ଷିତ ହେଉଛି । ଦେବଭୂମି ଭାରତବର୍ଷରେ ଏହି ଆସୁରୀ ପ୍ରବୃତ୍ତି ଦିନକୁ ଦିନ ବଢି ବଢି ଚାଲିଛି । ଏହାକୁ ରୋକାଯାଇ ନ ପାରିଲେ ଆମ ଦେଶର ପ୍ରଗତି ଅସମ୍ଭବ ହୋଇପଡ଼ିବ ।

ଇନ୍ଦ୍ର କହିଲେ ଆପଣ ସମ୍ବାଦ ପତ୍ରରୁ ପଢ଼ିଥିବେ ଏଇ କେତେଦିନ ତଳେ ଓଡ଼ିଶାର ମୁଖ୍ୟ ଶାସନ ସଚୀବ ପ୍ରଜାତନ୍ତ୍ରର ସାମ୍ବାଦିକଙ୍କ ସଙ୍ଗେ ସାକ୍ଷାତକାର ସମୟରେ କହିଥିଲେ ଯେ, ପ୍ରଶାସନିକ ଅଫିସର ଏବଂ ଜନସାଧାରଣଙ୍କ ମଧ୍ୟରେ ବ୍ୟବଧାନ କ୍ରମଶଃ ବୃଦ୍ଧି ପାଉଛି ।

ସେ ପୁଣି କହିଥିଲେ, ଜଣେ କର୍ମଚାରୀ ନିଜ ଚାକିରିକାଳ ମଧ୍ୟରେ କେତେ-ଗୁଡ଼ିଏ ଫାଇଲ ଡିସ୍ପୋଜ କଲେ ତାହା ବଡ଼କଥା ନୁହେଁ । ସବୁଠାରୁ ବଡକଥା ହେଲ, ସେହି ସମୟ ମଧ୍ୟରେ ଆମେ କେତେ ଲୋକଙ୍କୁ ସାହାଯ୍ୟ କରିପାରିଛେ । ସେବା ମନୋବୃତ୍ତି ପ୍ରତ୍ୟେକ ସରକାରୀ କର୍ମଚାରୀମାନଙ୍କ ଧ୍ୟେୟ ହେବା ଉଚିତ୍ । ଓଡ଼ିଶା ପରି ପ୍ରଦେଶରେ ଓଡ଼ିଆମାନେ ଦେଶର ଅର୍ଥନୈତିକ ସୋପାନର ନିମ୍ନତମ ସ୍ତରରେ ରହିଛନ୍ତି । ମହାତ୍ମାଗାନ୍ଧୀ ଥରେ କହିଥିଲେ ଓଡ଼ିଶା ହେଉଛି ଭାରତର ଦାରିଦ୍ର୍ୟର ପ୍ରତୀକ । ରାଜ୍ୟର ଦୁଇକୋଟି ୭୫ଲକ୍ଷ ଲୋକମାନଙ୍କ ମଧ୍ୟରୁ ପ୍ରାୟ ଦୁଇ ତୃତୀୟାଂଶ ଲୋକ ଦାରିଦ୍ର୍ୟର କଷଣ ଭୋଗ କରୁଛନ୍ତି ।

କିନ୍ତୁ ଓଡ଼ିଶା ଗୋଟିଏ ପ୍ରଦେଶ—ଏଠାରେ ନାହିଁ କଅଣ ? ଏହାର ଖଣିଜ ସମ୍ପଦ, ନଦୀଜଳ ସମ୍ପଦ, ଦିଗନ୍ତ ବିସ୍ତୃତ ସମୁଦ୍ରର ବେଳାଭୂମି, ଘନ ଅରଣ୍ୟାନୀ ଏବଂ ବନ୍ୟଜାତ ସମ୍ପଦ ସମସ୍ତ ଥାଇ ଓଡ଼ିଆ ଆଜି ଗରିବ । ଭାରତବର୍ଷରେ ଜଣକର ବାର୍ଷିକ ମୁଣ୍ଡପିଛା ଆୟର ହାର ୧୬୦୦ ଟଙ୍କା ହୋଇଥିବା ସ୍ଥଳେ ଓଡ଼ିଶାରେ ଜଣକର ବାର୍ଷିକ ଆୟ ମାତ୍ର ୫୦୦ ଟଙ୍କା ।

ଅର୍ଥନୈତିକ କ୍ଷେତ୍ରରେ ଯେପରି ଓଡ଼ିଶା ପ୍ରଦେଶ ପଛରେ ପଡ଼ିଛି, ଶିକ୍ଷା କ୍ଷେତ୍ରରେ ମଧ୍ୟ ତଦ୍ରୂପ । ଓଡ଼ିଶାରେ ସାକ୍ଷର ସଂଖ୍ୟା ମୋଟେ ଆଶାନୁରୂପ ନୁହେଁ । ଏହାର ହାର ମାତ୍ର ୩୮ ଭାଗ । ଉପକୂଳ ଅଞ୍ଚଳରେ ସାକ୍ଷର ସଂଖ୍ୟା ବଢ଼ିଥିଲେ ମଧ୍ୟ କୋରାପୁଟ, କଳାହାଣ୍ଡି, ଫୁଲବାଣୀ ଆଦିବାସୀ ବହୁଳ ଅଞ୍ଚଳରେ ଶିକ୍ଷାର ପ୍ରସାର ଅତ୍ୟନ୍ତ ସୀମାବଦ୍ଧ । କୋରାପୁଟ ଜିଲ୍ଲାରେ ପ୍ରଦେଶର ସବୁଠାରୁ କମ୍ ସଂଖ୍ୟକ ସାକ୍ଷର ଅଛନ୍ତି । ଏଠାରେ ଶତକଡ଼ା ୪ ଲୋକ ସାକ୍ଷର ବୋଲି କୁହାଯାଉଛି ।

ଖଣିଜ ସମ୍ପଦ ଥାଇ ମଧ୍ୟ ଓଡ଼ିଶା ଶିଳ୍ପ ସମୃଦ୍ଧ ହୋଇପାରିନାହିଁ । ବିଗତ ପାଞ୍ଚବର୍ଷ ମଧ୍ୟରେ ଓଡ଼ିଶାରେ ଶିଳ୍ପର ବିକାଶ ଘଟିଛି, ମାତ୍ର ବହୁ କ୍ଷେତ୍ରରେ ବାହାର ଶିଳ୍ପୋଦ୍ୟୋଗୀମାନେ ଆସି ଏଠାରେ ଶିଳ୍ପ ପ୍ରତିଷ୍ଠାନ କରିଛନ୍ତି । ଏହା ସ୍ୱାଗତ ଯୋଗ୍ୟ । ମାତ୍ର ଯେଉଁସବୁ ଶିଳ୍ପାନୁଷ୍ଠାନ ଗଢ଼ି ଉଠିଲା ସେ ସମସ୍ତ ଶିଳ୍ପ କିପରି ଚାଲିବ ସେଥିଲାଗି ଓଡ଼ିଶା ସରକାର ତଥା ଓଡ଼ିଆ ସରକାରୀ ଅଫିସରମାନଙ୍କ ନୈତିକ ମନୋବଳ ଉପରେ ନିର୍ଭର କରେ । ଯଦି ଏ ସମସ୍ତ ଶିଳ୍ପ ଠିକଭାବେ ଚାଲିପାରିବ ତାହେଲେ ବହୁ ଓଡ଼ିଆ ଦେଶ ଭିତରେ କାମ କରିବାକୁ ସୁବିଧା ପାଇବେ ।

ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ଏହାର ଶିକ୍ଷିତ ଜନତା, ସରକାର ଏବଂ ମୁଖ୍ୟତଃ ସରକାରୀ ଅଫିସର କର୍ମଚାରୀମାନଙ୍କ ଉପରେ ନିର୍ଭର କରେ । ସରକାରୀ କର୍ମଚାରୀମାନଙ୍କ ନୈତିକ ମୂଲ୍ୟବୋଧ ବଢ଼ିଲେ ସରକାରକୁ ଚଳାଉଥିବା ରାଜନୈତିକ ନେତାମାନଙ୍କର ମଧ୍ୟ ନୈତିକବୋଧ ବଢ଼ିବ ।

ଏହି କେତେଦିନ ତଳେ ନିର୍ବାଚିତ ପ୍ରତିନିଧିଙ୍କୁ ଆଖି ଆଗରେ ରଖି ଓଡ଼ିଶାର ଜଣେ ଲବ୍ଧପ୍ରତିଷ୍ଠ ପ୍ରଶାସକ ରାଜନୈତିକ ନେତା ଲେଖିଥିଲେ ଯେ ଗଣତନ୍ତ୍ର ପଦ୍ଧତିରେ ଯେଉଁ ଶ୍ରେଣୀର ଲୋକ ନିର୍ବାଚିତ ହେଉଛନ୍ତି, ସେମାନଙ୍କଠାରୁ ଦୃଢ଼ତା ଆଶା ନକରି ଅଫିସରମାନେ ଯଦି ସଦୁଦ୍ଦେଶ୍ୟରେ ନିଜର କର୍ତ୍ତବ୍ୟ କରିଯାଆନ୍ତେ ତାହେଲେ ସମସ୍ତେ ଉପକୃତ ହୁଅନ୍ତେ ।

ତାଙ୍କର ଉକ୍ତିଟି ପ୍ରକୃତରେ ସତ୍ୟ । ଇଉରୋପ ମହାଦେଶରେ ଫ୍ରାନ୍ସ

ପରି ଶିକ୍ଷିତ, ସମୃଦ୍ଧ ଦେଶରେ ଦ୍ୱିତୀୟ ମହାଯୁଦ୍ଧ ପରେ ଘୋର ରାଜନୈତିକ ଅସ୍ଥିରତା ଦେଖା ଦେଇଥିଲା । ତାହାସତ୍ତ୍ୱେ ଫ୍ରାନ୍ସର ପ୍ରଶାସନିକ ଦୃଢ଼ତା ଯୋଗୁ ସେ ଦେଶରେ କୌଣସି ପ୍ରକାର ଅରାଜକତା ସୃଷ୍ଟି ହୋଇ ପାରିନଥିଲା । ଏହା ସେ ଦେଶର କର୍ମଚାରୀମାନଙ୍କ ଉଚ୍ଚ ନୈତିକବୋଧ, ଦେଶ ପ୍ରୀତିର ସୂଚନା ଦିଏ ।

ମାତ୍ର ଓଡ଼ିଶା ପରି ଗରିବ ଦେଶରେ ଯଦି ପ୍ରଶାସନିକ ଅଫିସର, କର୍ମଚାରୀ, ଯନ୍ତ୍ରୀ, ମନ୍ତ୍ରୀ ସମସ୍ତେ ଅମିତ କରିବେ, ଦୁର୍ନୀତିରେ ବୁଡ଼ି ରହିବେ, ପ୍ରିୟାପ୍ରୀତି ତୋଷଣ ଦୈନନ୍ଦିନ କାର୍ଯ୍ୟର ମାନଦଣ୍ଡ ହେବ, ସର୍ବୋପରି ଜଣେ ଓଡ଼ିଆ ଆଉ ଜଣେ ଓଡ଼ିଆର ଗୋଡ ଟାଣିଧରିବ, ତାହେଲେ ଏ ଦେଶର ଉନ୍ନତ ହେବା ସମ୍ଭବ ନୁହେଁ ।

ଓଡ଼ିଶା ପ୍ରଦେଶ ଏବେ ସୁବର୍ଣ୍ଣ ଜୟନ୍ତୀ ପାଳନ କରୁଛି । ଏହି ମହାନ ଅବସରେ ପ୍ରତ୍ୟେକ କର୍ମଚାରୀ ଶପଥ ନେବା ଉଚିତ ଯେ, ଦୁର୍ନୀତି ଅମିତକୁ ଛାଡ଼ି ଅନୁନ୍ନତ ଓଡ଼ିଶାକୁ କିପରି ପ୍ରଗତି ପଥରେ ଆଗେଇ ନେବେ ସେଥିରେ ମନୋନିବେଶ କରିବେ ।

( ୪୮ )

ବାଟୋଇ ବନ୍ଧୁଙ୍କ ସହିତ କଥାବାର୍ତ୍ତା ହୋଇ ଫେରିବା ବାଟରେ, ଇନ୍ଦ୍ର ଦେଖିଲେ ଜାତୀୟ ରାଜପଥ କଡ଼ରେ ଥିବା ଭୁବନେଶ୍ୱର ଏସ ପି ଙ୍କ ଅଫିସ ପ୍ରାଙ୍ଗଣରେ ବେଶ ଭିଡ଼ ଜମିଛି । ଶାମିଆନା ଟଣାଯାଇ, ମାଇକ ପ୍ରସ୍ତୁତ ଲାଗିଛି । ବୁମ୍ ବୁମ୍, ଓଡ଼ିଶା ପୁଲିସର ସୁବର୍ଣ୍ଣ ଜୟନ୍ତୀ ଉପଲକ୍ଷ୍ୟେ, ମୁଖ୍ୟମନ୍ତ୍ରୀ ମହୋଦୟ ଓଡ଼ିଶାର ପ୍ରଥମ ପୁଲିସ କଣ୍ଟ୍ରୋଲ ରୁମ୍ ଭୁବନେଶ୍ୱରଠାରେ ଉଦ୍‌ଘାଟନ କରିବାକୁ ଆସିଛନ୍ତି । ଘଟଣାଟି ଦେଖିବା ପାଇଁ ଇନ୍ଦ୍ର ମଧ୍ୟ ଏସ. ପି· ଅଫିସ ପ୍ରାଙ୍ଗଣ ମଧ୍ୟକୁ ପ୍ରବେଶ କଲେ ।

ମୁଖ୍ୟମନ୍ତ୍ରୀ ଉଦ୍‌ଘାଟନ ଉତ୍ସବ ଉପଲକ୍ଷେ ତାଙ୍କ ଭାଷଣରେ କହିଲେ ଯେ, ପୁଲିସ ସମାଜରେ ଜନସାଧାରଣଙ୍କ ନିରାପତ୍ତା ରକ୍ଷା କରିବା ସଙ୍ଗେ ସଙ୍ଗେ ଗାଁଗହଳି ଠାରୁ ସହରବଜାର ପର୍ଯ୍ୟନ୍ତ ପ୍ରତ୍ୟେକ ଜନସାଧାରଣ ଯେପରି ପୁଲିସଠାରୁ ନ୍ୟାୟ ପାଇବେ, ସେଥିପ୍ରତି ଯତ୍ନବାନ ହେବା ଉଚିତ୍ । ଇନ୍ଦ୍ର ଭାବିଲେ, ଏହା ସତ୍ୟ । ଯଦି ପୁଲିସ ସଂସ୍ଥା, ଯାହାର ପ୍ରଥମ କର୍ତ୍ତବ୍ୟ ଜନସାଧାରଣଙ୍କୁ 'ନିରାପତ୍ତା' ଦେବା, ଏବଂ ପ୍ରତ୍ୟେକ ବ୍ୟକ୍ତିଙ୍କ ଆପତ୍ତି ଅଭିଯୋଗ ଶୁଣି ନ୍ୟାୟ ସଙ୍ଗତ କାର୍ଯ୍ୟ କରିବା , ସେଥିକି ଯଦି ଏହି ସଂସ୍ଥା ଠିକ୍‌ଭାବେ ଏବଂ ଠିକ୍ ସମୟରେ ନ କରେ ତାହେଲେ

ସେମାନେ ଲୋକମାନଙ୍କର ବିଶ୍ୱାସ ଭାଜନ ହୋଇ ପାରିବେନି । ଖାଲି ସେତିକି ନୁହେଁ, ସେମାନଙ୍କ ଅବହେଳା ପାଇଁ ଆଭ୍ୟନ୍ତରୀଣ ବିଭ୍ରାଟ ଲାଗି ଦେଶରେ ଶାନ୍ତି, ଶୃଙ୍ଖଳା ବ୍ୟାଘାତ ପ୍ରାପ୍ତ ହେବ । ଶାନ୍ତି ଶୃଙ୍ଖଳା ନ ରହିଲେ ସମାଜର ପ୍ରଗତି ପଥ ଅବରୁଦ୍ଧ ହୋଇ ରହିଯିବ ।

ତାଙ୍କ ପାଖରେ ଠିଆ ହୋଇଥିବା, ଆଉ ଜଣେ ପୁରୁଣା ପୋଲିସ ଅଫିସର କହିଲେ ୧୯୭୨ ମସିହାରେ କଟକ ସିଡି ଡ଼: ଏସ୍.: ସିଂଙ୍କ ଅଫିସ୍ ପ୍ରାଙ୍ଗଣରେ ସେତେବେଳେ ଆଇ· ଜି ଶ୍ରୀ ବି. ବି. ମିଶ୍ର ଏହିପରି ଗୋଟିଏ କଣ୍ଟ୍ରୋଲ ରୁମ ଉଦ୍‌ଘାଟନ କରି, ଗୃରିଗୋଟି ବେତାର ଯନ୍ତ୍ର ଗାଡ଼ି ଏବଂ ଆବଶ୍ୟକୀୟ ପୁଲିସ ଅଫିସର ଦେଇଥିଲେ । ପ୍ରଥମେ ପ୍ରଥମେ ଏହା ଅତି ଆଖିଦୃଷ୍ଟିଆ କାର୍ଯ୍ୟକଲା । କଟକ ଜନସାଧାରଣଙ୍କ ମନରେ ନିରାପତ୍ତା ଭାବ ସୃଷ୍ଟି ହେଲା । ଗୁଣ୍ଡା ମଦୁଆଙ୍କ ଦାଉରୁ ଲୋକମାନେ ନିସ୍ତାର ପାଇଲେ । ସ୍କୁଲ, କଲେଜ ଛାତ୍ରୀମାନେ ରାସ୍ତାରେ କମ୍ପା ଗୃଲି ଗୃଲି ଯିବାକୁ ଭୟ କଲେନି । କଳାବଜାରୀ ସିନେମା ଟିକେଟ ବାଲା ନଣ୍ଡା ହୋଇ ବୁଲିଲେ । ସମସ୍ତେ ଶାନ୍ତିରେ ନିଦ୍ରାଯାଇ ପାରିଲେ ।

କିନ୍ତୁ ଠିକ୍ ଦୁଇମାସ ପରେ, ସବୁ ପରିବର୍ତ୍ତନ ହୋଇଗଲା । ମଦ ବ୍ୟବସାୟୀ, ଜୁଆଡ଼ିମାନେ ସମସ୍ତେ ବ୍ୟସ୍ତ ହୋଇପଡ଼ିଲେ । ସିନେମା ଟିକେଟ କଳାବଜାରୀମାନଙ୍କ ଲଣ୍ଡା ମୁଣ୍ଡରେ 'ରୁପି' ହୋଇଗଲା । ଠିକ୍ ସେତିକିବେଳକୁ କଣ୍ଟ୍ରୋଲ ରୁମ୍ ଗାଡ଼ି ପାଇଁ ତେଲ ମିଳିଲାନି । ତେଲ ଅଭାବରୁ କଣ୍ଟ୍ରୋଲ ରୁମ୍‌ର ଗୃରିଟା ଗାଡ଼ି ପରିବର୍ତ୍ତେ ତିନିଟା ଗୃଲିଲା । କିଛିଦିନ ପରେ ଦୁଇଟା ଗୃଲିଲା । ବୁଝୁ ବୁଝୁ କେତେଜଣ କହିଲେ କଣ୍ଟ୍ରୋଲ ଗାଡ଼ି ଉପରେ କଣ୍ଟ୍ରୋଲ ରହିଲାନି । ଲୋକମାନଙ୍କ ଡ଼ାକ ନଶୁଣି, ସେ ଗାଡ଼ି ଗୁଡ଼ାକ ଜାତୀୟ ରାଜପଥରେ ଚକର ମାଇଲା । ସନ୍ଧ୍ୟାବେଳେ ଯାତାୟତ ସମସ୍ୟା କଣ୍ଟ୍ରୋଲ ନକରି ଗୈ୍ରମଦ ଦୋକାନ ଧରିବାକୁ ଗଲେ ବୋଲି କହିଲେ । ତା'ପରେ ସବୁଗାଡ଼ି ବନ୍ଦ ହୋଇଗଲା । କଣ୍ଟ୍ରୋଲ ରୁମ୍ ଯେଉଁପରି ଭାବେ କାମ କରିବା କଥା, ତା କରିପାରିଲାନି । କିଛି-ଦିନ ପରେ ଏହା ବନ୍ଦ୍ ହୋଇଗଲା ।

ଯାହାହେଉ, ଏଥର କଣ୍ଟ୍ରୋଲ ରୁମ ଖୋଦ ଏସ: ପିଂଙ୍କ ତତ୍ତ୍ୱାବଧାନରେ ରହିବ । ଯେଉଁ ଅଫିସରମାନେ ଏଠାରେ କାମ କରିବେ ସେମାନେ ଦାୟିତ୍ୱ-ପୂର୍ଣ୍ଣ ଭାବେ କର୍ତ୍ତବ୍ୟ କରିବେ । ଅଯଥା ଗାଡ଼ି ବୁଲେଇ ତେଲ ନଷ୍ଟ ନକରି, ଜରୁରୀ ଘଟଣାମାନ କମ୍ ସମୟ ଭିତରେ ଆଟେଣ୍ଡ କରିବେ ବୋଲି ଆଶା କରା-ଯାଉଛି । କଣ୍ଟ୍ରୋଲ ରୁମ୍ ଠିକ୍‌ଭାବେ କାମକଲେ, ପୁଲିସ ନିଶ୍ଚୟ ଜନସାଧାରଣଙ୍କ

ପାଖକୁ ପାଖେଇ ଯିବେ, ଏଥିରେ କିଛି ସନ୍ଦେହ ନାହିଁ । କେବଳ ଯେଉଁ ଅଫିସର-ମାନେ ଏଠାରେ କାମକଲେ, ସେମାନଙ୍କ କର୍ତ୍ତବ୍ୟବୋଧ ଉପରେ ସବୁକିଛି ନିର୍ଭର କରୁଛି ।

ଇନ୍ଦ୍ର କହିଲେ, ଆପଣ ଯାହା କହିଲେ ସବୁ ଠିକ୍ । ଜନସାଧାରଣ ମଧ୍ୟ ପୁଲିସକୁ ସହଯୋଗ କରନ୍ତୁ । କଣ୍ଟ୍ରୋଲ ରୁମ୍ ଯଦି ଭୁଲ୍ କରେ, ତା'ହେଲେ ଏସ: ପି:ଙ୍କ ଦୃଷ୍ଟିକୁ ସେ ଭୁଲ୍ ଭଟକାକୁ ଆଣନ୍ତୁ । ତାହେଲେ ଛୋଟ ଛୋଟ ଭୁଲକୁ ସୁଧାରିହେବ ।

( ୪୯ )

ସୁବର୍ଣ୍ଣ ଜୟନ୍ତୀ ଉପଲକ୍ଷ୍ୟେ ଏପ୍ରିଲ ପହିଲାଦିନ ରାଜଧାନୀର ବହୁ ସରକାରୀ ଅଫିସଗୃହ ଭିନ୍ନଭିନ୍ନ ରଙ୍ଗବେରଙ୍ଗ ନାଲିନେଳି ଆଲୁଅରେ ସଜା ହୋଇଥିଲା । ସନ୍ଧ୍ୟାବେଳକୁ ପ୍ୟାରେଡ୍ ପଡ଼ିଆରେ ଆକର୍ଷଣୀୟ ସାଂସ୍କୃତିକ କାର୍ଯ୍ୟକ୍ରମ ।

ଇନ୍ଦ୍ର ପଥପ୍ରାନ୍ତ ତେଲିଙ୍ଗୀ ଚା ଦୋକାନରୁ ଗୋଟିଏ କପ୍ ଚା ପିଇ ତରବରରେ ପ୍ୟାରେଡ୍‌ପଡ଼ିଆ ଆଡ଼କୁ ଧାଉଁଥିବା ସମୟରେ ତାଙ୍କର ଗୋଟିଏ ଅଦ୍‌ଭୁତ ଦୃଶ୍ୟ ଉପରେ ଆଖି ପଡ଼ିଲା । ରାଜଧାନୀର ରାଜପଥ କଡ଼ର ପାଦଚଲା ରାସ୍ତା ଉପରେ ତିନିଜଣ ବ୍ୟକ୍ତି ଆସ୍ଥାନ ଜମାଇଥାନ୍ତି । ସେମାନଙ୍କ ଭିତରୁ ଦୁଇଜଣ ବୟସ୍କ ବୃଦ୍ଧ । ବୟସ ୮୦ପରେ । ଅନ୍ୟ ଜଣକ ସୁନ୍ଦର ସ୍ୱାସ୍ଥ୍ୟବାନ ଯୁବକ । ବୟସ କୋଡ଼ିଏ ତିରିଶ ମଧ୍ୟରେ । ସମସ୍ତଙ୍କ ହାତରେ ଗୋଟିଏ ଗୋଟିଏ ଦୈନିକ ଖବର କାଗଜ । ସେମାନଙ୍କ ମଧ୍ୟରେ ଖୁବ୍ ଉଚ୍ଚ ସ୍ୱରରେ ଯୁକ୍ତିତର୍କ ଚାଲିଥାଏ । କେହି କାହାକୁ ଶୁଣୁନଥାନ୍ତି । ଦେଶର ଅର୍ଥନୈତିକ, ରାଜନୈତିକ, ସାମାଜିକ, ରାଜସିକ, ତାମସିକ, ସମସ୍ତ 'କ' ଶେଷ ଶବ୍ଦ ଉପରେ ତର୍କମା ଚାଲିଥାଏ । ରାଜରାସ୍ତାରେ ଚାଲିଥିବା ପଥିକ ଏ ପ୍ରକାର ନୂତନ ଧରଣର ଏକ ତର୍କପ୍ରତିଯୋଗିତା ଦେଖି ସେମାନଙ୍କୁ ଘେରି ଠିଆ ହୋଇଥାନ୍ତି ।

ପ୍ରଥମ ବୃଦ୍ଧ ଜଣଙ୍କ କହିଲେ ଦେଖ ଯୁବକ, ଏ ଦେବଭୂମି ଭାରତରେ ଉତ୍କଳସ୍ୟ ଦେଶନାସ୍ତି । ଆମର ପୂର୍ବପୁରୁଷମାନେ ମହାନ ରଥୀ ଥିଲେ । ସେମାନଙ୍କ ଦେଶସେବା, ସତ୍ୟାନୁବର୍ତ୍ତିତା, ତ୍ୟାଗ ଏବଂ ମହାନ ଆଦର୍ଶ ଲାଗି ଏହି ଉତ୍କଳ ଦେଶ ଭାରତ ଭୂଖଣ୍ଡରେ ପ୍ରସିଦ୍ଧି ଲାଭ କରିଥିଲା । ବର୍ତ୍ତମାନ ଏସବୁ କଅଣ ଚାଲିଛି ? ସମାଜରେ ଦୁର୍ନୀତି, ଭ୍ରଷ୍ଟାଚାର, ବିଶ୍ୱାସଘାତକତା, ଅସତ୍ୟ, ଅସହିଷ୍ଣୁତା, ହିଂସା, ପରଶ୍ରୀକାତରତା—ଏକୁ ଦେଖି ଆମ ଦେହ କିମିତି ସହିବ କହିଲ ? ଆମର ପ୍ରତ୍ୟେକ ରକ୍ତ ମାଂସ ସତ୍ୟ, ଧର୍ମ, ନ୍ୟାୟ ଉପରେ ଗଢ଼ା । ଏସବୁ ଆମେ ଦେଖିଲେ

ବରଦାସ୍ତ କରି ପାରିବୁ ? କହିବୁ, ନଷ୍ଟସ୍ଥ କହିବୁ । ତୁମେ ସବୁ ଯୁବକ ଆଦର୍ଶ, ଧର୍ମ, ସତ୍ୟ ପଥରେ ଚାଲ । ତୁମର ଅନ୍ୟାୟ ଭ୍ରଷ୍ଟାଚାରକୁ ଆକ୍ଷେପ କରି କହିଲେ ଚିଡୁଚ କାହିଁକି ? ସହିବା ଭାବ ଶିକ୍ଷାକର ।

ତାଙ୍କ କଥାଶୁଣି ଯୁବକ ଜଣକ ଧରିଥିବା ଖବର କାଗଜକୁ ହଲାଇ କଅଣ କହିବାକୁ ଗଲାବେଳକୁ ଆରବୃଦ୍ଧ ଜଣକ ହାତଟେକି କହିଲେ କିଓ ସେମିତି କାହିଁକି ଚିଡ଼ିଯାଉଛ ! ଅଯ୍ୟଧର, ସେ ବୁଢ଼ାବାବୁ ଯାହା କହିଲେ ସେ ସବୁକୁ ଏ କାନରେ ପୂରାଇ ସେ କାନରେ ବାହାର କରିଦିଅ । ହଇଓ କେଉଁ ଯୁଗରେ ଏ ସବୁ ନଥିଲା ? ଆମେ ସବୁ ଏକାଠି କାମ କରୁଥିଲୁ । ସେ ସମୟରେ ଯାହା ଯାହା ଘଟୁଥିଲା ଆମେ ଜାଣିଚୁ । ଏବେ ଆମେ ବଞ୍ଚିଛୁ ବୋଲି ପାଟିକରି ଯାହା କହୁଚୁ ତୁମେମାନେ ଶୁଣୁଛ । କିନ୍ତୁ ଆମେ କେତେଦୂର ସତ୍ୟ କଥା କହୁଛୁ କିଏ ଜାଣିଛୁ ? ଆମ ସାଙ୍ଗ ଲୋକ ସବୁ ତ ପ୍ରାୟ ଗଲେଣି । ଆମ କଥା ଉପରେ ଆଉ ଟୀକା-ଟିପଣୀ ଦବା ଲୋକ କିଏ ଅଛି ? ତାଙ୍କ କଥା ଉପରେ ମୁଁ କହିବି ମୋ କଥା ଉପରେ ସେ କହିବେ । ଆମେ ଦିଜଣ ଏଇମିତି କୁହାକୁହି ହଉଛୁ ବୋଲି ତୁମକୁ ମଜା ଲାଗୁଛି ଶୁଣିବାକୁ । କିନ୍ତୁ ଯୁବକ, ଆମେ ଆଉ କେତେଦିନ ବଞ୍ଚିବୁ କହିଲ ? ଆମଠାରୁ ନୀତିବାକ୍ୟ ଶୁଣ । ବୃଦ୍ଧ ବୟସ୍କ ଲୋକମାନଙ୍କୁ ଦେଖି ଶିଖ । ଆମ ମୁହଁ ଏଣିକି ତେଣିକି ହେଲେ କଅଣ ହେଲା ? କିନ୍ତୁ ଏଇକଥା ଉପରେ 'ଏକ' । ବୃଦ୍ଧ-ମାନଙ୍କ କଥା ଉପରେ ତୁମେ ଏବର ଟୋକା ହୋଇ ଟିପ୍‌ପଣୀ ଦବା କଅଣ ଠିକ୍ ?

ଯୁବକ ଜଣକ ତାଙ୍କ କଥା ଶୁଣି କହିଲେ, ଆଜ୍ଞା, ଆମେ ଆଉ କଅଣ ଆପଣଙ୍କୁ ସମ୍ମାନ ଦେଖଉନୁ ? କିନ୍ତୁ ଆପଣତ ଆମକୁ ବଢ଼ିବାକୁ ଦଉନାହାନ୍ତି । ଟିକିଏ ମୁଣ୍ଡ ଟେକିଲେ ଆପଣଙ୍କ ଆଖି ବୁଲି ଯାଉଛି । ଆପଣ ବର, ଓସ୍ତ ଗଛପରି ରହିଲେ । ଆପଣଙ୍କ ଚେର ଟାଣ କଲେ । ଆମେ ଟିକିଏ କଅଁଳିଲା ବେଳକୁ ଏଣ୍ଡୁଅ ପୂରାଇ ଝୁଙ୍କିବାକୁ ବସିଛନ୍ତି ।

ଯୁବକଙ୍କ ଟାଣଟାଣ କଥାଶୁଣି ବୃଦ୍ଧ ଦୁହେଁ କ୍ରୁଦ୍ଧ ହୋଇ ଉଠିଲେ । କହିଲେ ଭୋ ଭୋ ଯୁବକ ! ଆମେ ବରଗଛ ଓସ୍ତଗଛ ହୋଇପାରୁ; ମାତ୍ର ତୁମକୁ ଅର୍ଜୁନ ଗଛ କରାଇ ଦେବୁନାହିଁ । ଯଦି ତୁମେ ଅର୍ଜୁନ ଗଛରୂପେ କାୟା ବିସ୍ତାର କର, ତୁମ ଗଛରେ ଲକ୍ଷ୍ମୀ ପେଚା ବସା ବନ୍ଧାଇବୁ ।

ତାଙ୍କ କଥାଶୁଣି ଯୁବକ ଜଣକ ହାତରେ ଧରିଥିବା କାଗଜକୁ ହଲାଇ ଖୁବ୍ ଜୋରରେ ପାଟି କରିବା ଆରମ୍ଭ କରିଦେଲେ ।

ରାସ୍ତା ଉପରେ ବୃଦ୍ଧ ଆଉ ଯୁବକଙ୍କ ମଧ୍ୟରେ ଖୁବ୍ ଉଚ୍ଚ ସ୍ୱରରେ ପାଟିତୁଣ୍ଡ

ଆରମ୍ଭ ହୋଇଗଲା ! କିଏ ଗୃହିଣୀ ଆଙ୍ଗୁଠି ଦେଖାଇ କହୁଲାଣି ତ କିଏ ବାଇଟା । ଏଇ ସମୟରେ ବଜାର ପରିଭ୍ରମଣ ସାରି ଓ୍ୱାପସ ଯାଉଥିବା ସର୍ବଜନାଦୃତ ଶ୍ରେଷ୍ଠ ଷଣ୍ଢ ଏଇ ତିନିଜଣଙ୍କ ଆଡ଼କୁ ମୁଣ୍ଡମାଡ଼ି ଚାହିଁକି ଆସିଲା ।

ମାରଣା ଷଣ୍ଢକୁ ଦେଖି ଦୁଇବୃଦ୍ଧ ଜଣେ ଏପଟକୁ ଆଉ ଜଣେ ସେପଟକୁ ପ୍ରାଣ ବିକଳରେ ଦଉଡ଼ିଲେ । ଯୁବକ ଜଣକ ମାରଣା ଷଣ୍ଢକୁ ସାମ୍ନା କରିବାକୁ ଯାଇ ହାଁ ହାଁ ପାଟି କରୁଥାନ୍ତି । ମାତ୍ର ଷଣ୍ଢଟି ପାଟିତୁଣ୍ଡ ଶୁଣିସିବାରୁ ମୁଣ୍ଡ ଉଠାଇ ଗୋଟି ଗୋଟି ହୋଇ ରାଜରାସ୍ତାରେ ଚାଲିଲେ । ବଜାରର ଲୋକମାନେ ଜାଣନ୍ତି, ଯେତେବେଳେ ବାଇଟା ଦୋକାନୀ କିମ୍ବା ଦୋକାନୀ ଆଉ ଗରାଖ ମଧ୍ୟରେ କଳି-ତକରାଳ କରନ୍ତି ଏ ଷଣ୍ଢ ଶୁଣିପାରିଲେ ଯେଉଁଠି ଥିବ ସେଠୁ ଆସି ଗଣ୍ଡଗୋଳ ଜାଗା ଉପରେ ହାଜର ହୁଏ । ଆଜି ମଧ୍ୟ ପାଟିତୁଣ୍ଡ ଶୁଣି ସେ ହାଜର ହୋଇ ଯାଇଛି ।

ଷଣ୍ଢ ଚାଲିଯିବାର ଦେଖି ବୃଦ୍ଧ ଦୁଇଜଣ ଯୁବକ ପାଖକୁ ଫେରିଲେ । ପ୍ରଥମ ବୃଦ୍ଧ କହିଲେ ମୁଁ ଜାଣେ ତୁମ୍ଭେ ଯୁବକ ବଡ଼ ଚତୁର । ଆଗରୁ ଷଣ୍ଢ ଅଣାଇବାର ବନ୍ଦୋବସ୍ତ କରିଥିଲ ଏବଂ ଆମକୁ ଖଣ୍ଡିଆ ଖାବରା କରିବାର ସମସ୍ତ ପ୍ରକାର ସୁଚିନ୍ତିତ ବ୍ୟବସ୍ଥା କରି ଚତୁରତାର ସହିତ ଆମ ସଙ୍ଗେ ଏଠାରେ କଥାବାର୍ତ୍ତା ଜମାଇଥିଲ । ଆମକୁ ପ୍ରାଣରେ ମାରିବାର ପ୍ଲାନରେ ତୁମ୍ଭେ ଥିଲ । ମାତ୍ର ସତ୍ୟ, ନ୍ୟାୟ ଧର୍ମରେ ଚାଲୁଥିବା ଯୋଗୁ ଷଣ୍ଢତ ଛାର, ସିଂହ ବି ଆମର କିଛି କରିପାରିବ ନାହିଁ ।

ତାଙ୍କ କଥା ଶୁଣି ଆର ବୃଦ୍ଧ ଜଣକ କହିଲେ, କାହିଁକି ଅଯଥାରେ ଆପଣ ସେ ଯୁବକଙ୍କ ଉପରେ ଦୋଷାରୋପ କରୁଛନ୍ତି ? ଆପଣ କାନ୍ଧରେ ନାଲି ଗାମୁଛା ପକାଇଥିବା ଯୋଗୁ ଷଣ୍ଢ ନାଲି ଗାମୁଛା ଦେଖି ଆମଆଡ଼େ ଧସେଇ ପଶିଲା । ନହେଲେ ସେ ଆପଣଙ୍କ ପାଖକୁ କାହିଁକି ଆସିଥାନ୍ତା ?

ତାଙ୍କ କଥା ଶୁଣି ପ୍ରଥମ ବୃଦ୍ଧ ଜଣକ ଆହୁରି ରାଗିଯାଇ କହିଲେ, ଆପଣଙ୍କ ଲାଗି ଏ ଯୁବସମାଜର ଅଧୋପତନ ଘଟୁଛି । କେତେବେଳେ ତାଙ୍କପଟ ହୋଇ କହୁଛନ୍ତି ତ କେତେବେଳେ ଆମପଟ । ଆପଣଙ୍କୁ କିଏ ନକାଲେ ବିଶ୍ୱାସ କରି-ହେବନି । ଆପଣଙ୍କ କୂଟ କପଟରେ ଭଗବାନ ସୁଦ୍ଧା ପଶି ପାରିବେନି ।

ଦୁଇଜଣଙ୍କ ମଧ୍ୟରେ ବଚସା ଆରମ୍ଭ ହୋଇଗଲା । ଯୁବକ ଜଣକ ମୁଠା ଘସିବାରେ ଲାଗିଲା । ଏତେଦିନ ପରେ ଦୁଇବୁଢ଼ା ଠିକ୍‌ଏ ମୁହାଁମୁହିଁ ଲାଗୁଛନ୍ତି । ଲାଗନ୍ତୁ, ଆହୁରି ଜୋର୍‌ରେ ଲାଗନ୍ତୁ ।

ରାସ୍ତାରେ ଜମିଥିବା ଜନସାଧାରଣ ବହୁ ସମୟ ଧରି ଏ ଘଟଣା ଦେଖୁ-

ଥିଲେ । ସେମାନଙ୍କ ଭିତରୁ କେତେଜଣ ଭଦ୍ରବ୍ୟକ୍ତି ବିନମ୍ର ଭାବରେ ଆସି ଦୁଇ ବୃଦ୍ଧଙ୍କ ସାମ୍ନାରେ ହାତଯୋଡ଼ି ଠିଆହେଲେ । ତାଙ୍କୁ ଦେଖି ଦୁଇଜଣ ଏକା ସ୍ୱରରେ କହିଲେ—କିଓ କଅଣ ହେଲା ? ଆପଣମାନେ ହାତଯୋଡ଼ି ଏପରି ଠିଆ ହୋଇଛନ୍ତି କାହିଁକି ?

ତାଙ୍କ କଥା ଶୁଣି ଜନସାଧାରଣଙ୍କ ପ୍ରତିନିଧି କହିଲେ, ଅଜ୍ଞା, ଆପଣମାନଙ୍କ କଥା ବହୁତ ସମସ୍ତ ଧିର ଶୁଣିଲୁ । ଆପଣମାନେ ଆମର ଗୁରୁଜନ ବୟସ୍କ, ପିତୃ-ସମାନ । ଆପଣ ବିଜ୍ଞ, ଗୁଣି ବ୍ୟକ୍ତି । ଆପଣମାନେ ଆମ୍ଭମାନଙ୍କୁ ନିଜ ଗୁଣରେ ସଦ୍‌ବୁଦ୍ଧି ଦେଇ ଏହି ସମାଜକୁ ଠିକ୍ ଭାବରେ ଚଳାଇବା ପାଇଁ ପ୍ରେରଣା ଦେବା ହୁଅନ୍ତୁ । ଯେଉଁ ଯୁବକମାନେ ଭୁଲ୍ କରୁଛନ୍ତି ସେମାନେ କିପରି ଠିକ୍ ବାଟକୁ ଆସିବେ ସେମାନଙ୍କୁ ସଦୁପଦେଶ ଦିଅନ୍ତୁ । ତାପରିବର୍ତ୍ତେ ସବୁ ସମୟରେ ଆପଣମାନଙ୍କ ପରି ବିଜ୍ଞବ୍ୟକ୍ତି ଯଦି ନିଜ ନିଜ ମଧ୍ୟରେ ତର୍କ ବିତର୍କ କରିବେ, ତାହେଲେ ଆମ୍ଭେମାନେ ଆପଣଙ୍କଠାରୁ ଶିଖିବୁ କଅଣ ? ମଣିଷ ଜନ୍ମହେଲେ ବାଳୁତ ହୁଏ ଯୁବକ, ହୁଏ ପୁଣି ବୃଦ୍ଧ । ବର୍ତ୍ତମାନ ଏଇ ଯୁବକମାନଙ୍କ ଉପରେ ଦେଶକୁ ଚଳାଇବାର ଭାର ପଡ଼ିଛି । କାଳଚକ୍ରର ପରିବର୍ତ୍ତନ ମଧ୍ୟରେ ସେଇମାନେହିଁ ଏହି ଚଳନ୍ତି ଚକ ସଙ୍ଗେ ମିଶି ଚାଲିବେ ଏବଂ ଚଳେଇବେ । ପରିବର୍ତ୍ତନ ରଥ ଚକକୁ କେହି ରୋକି ପାରିବେ ନାହିଁ । ଖାଲ ଢ଼ିପ ଏ ରଥପକ୍ଷେ କିଛି ନୁହେଁ । ସବୁକୁ ପଛକୁ ପକାଇ ଏ ରଥ ଚକ ଚାଲିବ । ତେଣୁ ଆମେମାନେ ବିନୀତ ଅନୁରୋଧ କରୁଛୁ, ଦୁହେଁ ମିଶି ଯାଆନ୍ତୁ । ଏଇ ରଥଚକ ଚଳେଇବାକୁ ଆମକୁ ସାହାଯ୍ୟ ଦିଅନ୍ତୁ । ଆମକୁ ସଦୁପଦେଶ ଦିଅନ୍ତୁ ।

ଏଇ ସମୟରେ ହଠାତ୍ ତାଳି ହେଲା । ସମବେତ ଜନତା ତାଳି ମାରି ରାଜପଥ କମ୍ପାଇଦେଲେ । ବୃଦ୍ଧ ଦୁଇଜଣ ମୁହଁ ବୁଲାଇ ପରସ୍ପରକୁ ଚାହିଁଲେ । ଦୁଇଜଣଙ୍କ ଆଖି ଛଳଛଳ ହୋଇଉଠିଲା । ଦୁହେଁ ଦୁହିଁକୁ କୋଳାଗ୍ରତ କଲେ । ଯୁବକ ଜଣକ ସେମାନଙ୍କ ପାଦଧୂଳି ନେଇ ମୁଣ୍ଡରେ ଲଗାଇଲେ ।

ଇନ୍ଦ୍ର ଏସବୁ ଦେଖି ମନେମନେ ଭାବିଲେ ଆହା ଆଜ ଯଦି କେତେଟା ବର୍ଷ ପୂର୍ବରୁ ଏହା ଘଟିଥାନ୍ତା ତାହେଲେ ଏ ଦେଶର ମୁହଁ ଅନ୍ୟ ପ୍ରକାରେ ହୋଇଥାନ୍ତା ।

( ୪୦ )

ଇନ୍ଦ୍ରଦେବ ଏଇ କେତେଦିନ ମର୍ତ୍ତ୍ୟଗସ୍ତ କରି ଦେଶରେ ଚାଲିଥିବା ରାଜନୀତି, ଅର୍ଥନୀତି, ସଂସ୍କୃତି, ଦେଶପ୍ରୀତି, ପ୍ରିୟାପ୍ରୀତି, ପିଟାପିଟି, ଟଣାଟଣି ସବୁ

ବିଷୟରେ କିଛି କିଛି ଜ୍ଞାନ ଅର୍ଜନ କଲେ । କିନ୍ତୁ ତାଙ୍କ ମୁଣ୍ଡରେ ଗୋଟିଏ ବିଷୟ ପଶିପାରୁ ନଥାଏ । ଯୁବକ ଆଉ ବୃଦ୍ଧ ଭିତରେ ଗଢ଼ି ଉଠିଥିବା ବାଦବିବାଦକୁ ଚିନ୍ତା କରି ଗଲାବେଳକୁ ଦେଖିଲେ, କଟେଣ୍ଟ ସାମ୍ନାପାଖ ପାଚେଣ୍ଟି ପଛପଟ ବରଗଛ ମୂଳେ କେତେ ଗୁଡ଼ିଏ ମଫସଲ ବାସିନ୍ଦା ବସିଥାନ୍ତି । ସେମାନେ କାହାକୁ ଅପେକ୍ଷା କରିବା ପରି ଜଣା ପଡୁଥାଏ ।

ଇନ୍ଦ୍ର ଯାଇ ସେଇ ବରଗଛ ମୂଳେ କିଛି ସମୟ ପାଇଁ ଠିଆହେଲେ । ଠିଆହୋଇଥିବା ସମୟରେ ସେ ଶୁଣିବାକୁ ପାଇଲେ ଯେ ଏଇ ମଫସଲି ଭାଇମାନେ ସାଲେପୁର ଅଞ୍ଚଳରୁ ଆସିଥାନ୍ତି । ତାଙ୍କ ଗାଁ 'ଓରତ' ବୋଲି କୁହାକୋହି ହେଉଥିଲେ । କଥା ହେଲା, ତିନିବର୍ଷ ତଳେ ଏ ଅଞ୍ଚଳରେ ଯେଉଁମାନଙ୍କର ଜର୍ସି ଗାଈ ବାଛୁରୀଥିଲା ସେମାନେ ବାଛୁରୀକୁ ପୁଷ୍ଟିକର ଖାଦ୍ୟ ଖୁଆଇ ଲାଳନ ପାଳନ କରି ବଡ଼ କରିବାକୁ ସରକାରଙ୍କଠାରୁ ଗୋଖାଦ୍ୟ ଋଣ ଆଣିଥିଲେ । ଏହି ସ୍କିମ୍ ଅନୁସାରେ ଯେଉଁମାନଙ୍କର ଜର୍ସି ବାଛୁରୀ ଥିଲା ସେମାନେ ୨୭୦୦ ଟଙ୍କାର ଗୋଖାଦ୍ୟ ସେଇ ଅଞ୍ଚଳର ପଶୁ ଡାକ୍ତରଙ୍କ ଜରିଆରେ ବର୍ଦ୍ଧକରେ ପାଇବେ । ଏଥିରେ ଋଣଗ୍ରହିତାମାନେ ସରକାରଙ୍କ ତରଫରୁ ସବ୍‌ସିଡ଼ି ପାଇବେ ୫୮୦୦ଙ୍କା । ତିନିବର୍ଷ ମଧ୍ୟରେ ୨୭୦୦ ଟଙ୍କାର ଗୋଖାଦ୍ୟ ନେଇ ବାଛୁରୀକୁ ବଡ଼ କରାଇ ତା'ଠାରୁ କ୍ଷୀର ଆମଦାନୀ କରି ଋଣ ପରିଶୋଧ କରିବେ । ଋଣଗ୍ରହିତା ଗ୍ରାମାଞ୍ଚଳବ୍ୟାଙ୍କ ଜରିଆରେ ଏଇ ଋଣ ପାଇଲେ । ବହୁ ଭାଇ ଋଣ ନେଲେ । ଋଣ ବଣ୍ଡ ଦସ୍ତଖତ କଲାପରେ ପ୍ରତ୍ୟେକ ମାସରେ ସେ ଅଞ୍ଚଳରେ ପଶୁଡ଼ାକ୍ତର, ଗୋଖାଦ୍ୟ ଆଗରୁ ଧାର୍ଯ୍ୟ ହୋଇଥିବା ଅନୁପାତରେ ଯୋଗାଇ ଦେବା କଥା ।

କିନ୍ତୁ ଏଇ ଭାଇମାନେ କହୁଥାନ୍ତି ତାଙ୍କ ଅଞ୍ଚଳରେ ବହୁ ବ୍ୟକ୍ତି ଏହି ଗୋଖାଦ୍ୟ ଋଣ ନେଇ ତିନିବରଷ ମଧ୍ୟରେ ମାତ୍ର ସାତ ଆଠ ବସ୍ତା ଗୋଖାଦ୍ୟ ପାଇଲେ, ଯାହାର ବଜାର ଦାମ୍ ୬୦୦ରୁ ୭୦୦ ଟଙ୍କାରୁ ଅଧିକ ନୁହେଁ ।

ଠିକ୍ ସମୟରେ "ଗୋ ଖାଦ୍ୟ" ନପାଇବାରୁ, ସେ ବିଷୟରେ ପଶୁ ଡାକ୍ତରଙ୍କ ପାଖେ ଗୁହାରି କରିବାରେ ସେ ତାଙ୍କୁ ବୁଝାଇ ଦେଲେ ଯେ, ସରକାରଙ୍କ 'ଗୋଖାଦ୍ୟ' ଯୋଗାଇ ଦେବାକୁ ନିଯୁକ୍ତ ହୋଇଥିବା କଣ୍ଟ୍ରାକ୍ଟରଙ୍କ ଅବହେଳା- ଏବଂ ପଳାୟନ ଇତ୍ୟାଦି ଯୋଗୁ ସେମାନେ ଗୋଖାଦ୍ୟ ଜର୍ସି ବାଛୁରୀମାନଙ୍କ ପାଇଁ ଯୋଗାଇ ପାରୁନାହାନ୍ତି । ଋଣ ଗ୍ରହିତାମାନେ ଥରେ ନୁହେଁ, ପାଞ୍ଚଥର ପଶୁଡ଼ାକ୍ତର ଖାନାରୁ ବ୍ଲକ ଅଫିସ ହୋଇ ଫେରିଲେ ।

ଯେଉଁମାନେ ଏମାନଙ୍କ ମଧ୍ୟରେ ଗୁଲିକ୍ ଥିଲେ, ସେମାନେ ପଶୁ ଡାକ୍ତରଙ୍କ

ପାଖେ ରିପୋର୍ଟ କଲେ ଯେ, ଜର୍ସି ବାଛୁରୀ 'ମରିଗଲା' । ପ୍ରକୃତରେ କେତେ-ଜଣଙ୍କର ବାଛୁରୀ ମଲେ, ବାକି କେତେଜଣ ତାଙ୍କ ଗାଁରେ ଯେଉଁ ଗାଈ ବାଛୁରୀ ମଲେ ତାକୁ ଧରି ରିପୋର୍ଟ କଲେ । ବ୍ୟାଙ୍କ ଋଣ ଦବା ପୂର୍ବରୁ ବାଛୁରୀ ଉପରେ ଇନ୍‌ସୁରାନ୍‌ସ ହୋଇଥିଲା । ତେଣୁ ଡ଼ାକ୍ତରଙ୍କ ସୁପାରିଶରେ ସେମାନେ ଋଣ କରିବା-ପାଇଁ ବର୍ଣ୍ଡ ଦେଇଥିବା ଟଙ୍କା ପାଇଗଲେ । ବ୍ୟାଙ୍କ ସେବକ ଇନ୍‌ସୁରାନସରୁ ଆଦାୟ କଲା ।

ମାତ୍ର ଯେଉଁମାନେ ପ୍ରକୃତରେ ବାଛୁରୀ ପାଳିଲେ, ଖାଦ୍ୟ ଅଭାବରୁ ହାତରୁ ଆଣି ଖୋଇଲେ, ବର୍ତ୍ତମାନ ସେମାନେ ହଇରାଣରେ ପଡ଼ିଛନ୍ତି ।

ଋଣ ପରିଶୋଧର ସମୟ ହେଲା ତିନିବର୍ଷ । ତିନିବର୍ଷ ପୂରିଗଲାରୁ ଏବେ ବ୍ୟାଙ୍କ ପ୍ରତ୍ୟେକ ଋଣ ଗ୍ରହୀତାଙ୍କୁ ଟ ୧୮୦୦ଙ୍କା ସୁଝିବାକୁ ବାଧ କରୁଛି । ବର୍ତ୍ତମାନ ସେମାନେ ପଶୁଡାକ୍ତରଙ୍କ ଠାରୁ ଛଅ, ସାତଶହ ଟଙ୍କାର ଜିନଷ ପାଇ ଟ୧୮୦୦ଙ୍କା ଦବାକୁ ବସିଲେଣି । ବ୍ୟାଙ୍କ ବାଲାଙ୍କୁ କହିଲେ ସେ ଏ ବିଷୟ କିଛି ଜାଣନ୍ତିନି ବୋଲି କହୁଛନ୍ତି । ସେମାନେ ବର୍ଣ୍ଡ ଦସ୍ତଖତ କରିଛନ୍ତି । ବ୍ୟାଙ୍କ ଟଙ୍କା ଦେଇଛି । ତେଣୁ ଟଙ୍କା ଫେରସ୍ତ ନେବ । ଏଣେ ପଶୁଡାକ୍ତର କହୁଛନ୍ତି ସେ କଣ୍ଟ୍ରାକ୍ଟର କାହିଁକି 'ଗୋଖାଦ୍ୟ' ଦେଲାନି, ତାକୁ ଯେ ନିଯୁକ୍ତ କରିଥିଲା ତାଙ୍କ ପଶ୍ଚର । ସେ କିଛି ଏ ବିଷୟରେ କହିପାରିବେନି ।

ଏବେ କରାଯିବ କ'ଣ ? ବ୍ୟାଙ୍କରୁ ଟଙ୍କା ଗଲା । ଗାଈ ବାଛୁରୀ ମଲେ । କିଛି ମିଛ ସତରେ ଇନ୍‌ସୁରାନସ ନେଲା । ବାକି ଠିକ୍ ଛଅ, ସାତ ଶହ ଟଙ୍କାର ଜିନଷ ନେଇ ଟ୧୮୦୦ଙ୍କା ଦେବେ । ସରକାରଙ୍କ ଟଙ୍କା ତେବେ ଗଲା କୁଆଡେ ? ଏତେ ସୁନ୍ଦର ସ୍କିମ୍ ଫସରଫାଟି ଗଲା । ଲୋକମାନେ ହଇରାଣ ହୋଇମଲେ । ଭଲ ସ୍କିମ୍ ବଦନାମ ହେଲା । ଋଣଗ୍ରହୀତାମାନେ ବର୍ତ୍ତମାନ ଖାଲୁ ନାଙ୍ଗୁଡ଼ ଧରି ଘରଘର ହୋଇ ବୁଲୁଛନ୍ତି ।

( ୫୧ )

ଗୋଟିଏ ଅତ୍ୟନ୍ତ ଅମାନୁଷିକ ଘଟଣା ଇନ୍ଦ୍ରଙ୍କ ମନରେ ଦାରୁଣ ଦୁଃଖ ଦେଲା । ସେଦିନ ଇନ୍ଦ୍ର ଶହିଦନଗର ଦେଇ ଫେରୁଥାନ୍ତି । ଫେରିଲା ବାଟରେ ଦେଖିଲେ ସେହି ଅଞ୍ଚଳର ଦୁର୍ଯୋଧନ ମହାରଣା ବୋଲି ଜଣେ ଦିନ ମଜୁରିଆକୁ ଗୋଟେ ଗାଡ଼ି ପଛପଟୁ ଧକ୍‌କା ଦେଇ ପଳେଇଗଲା । ଲୋକଟି ରାସ୍ତାଉପରେ ପଡ଼ିଗଲା । ମୁଣ୍ଡରେ ଆଘାତହେବା ଦ୍ୱାରା ସଙ୍ଗେ ସଙ୍ଗେ ଉଦ୍‌ଉଦିଆ ଖରାରେ ରାସ୍ତା

ଉପରେ ପଡ଼ି ରହିଲା । ହଠାତ୍ କେହି ଲୋକ ତା ପାଖକୁ ସାହାଯ୍ୟ ଦବାକୁ ଆସିଲେନି ।

ଏଇ ସମୟରେ କେତେଜଣ ବେକାର ଶିକ୍ଷିତ ଯୁବକ ସେଇବାଟ ଦେଇ ଗଲବେଳେ, ଗରିବ ଦିନମଜୁରିଆର ଏ ଅବସ୍ଥା ଦେଖି ସଙ୍ଗେ ସଙ୍ଗେ ମିଳିମିଶି ରାଜଧାନୀ ହସପିଟାଲକୁ ନେଲେ । ଲୋକଟି ନିହାତି ଗରିବ ହୋଇଥିବା ଦୃଷ୍ଟିରୁ, ତାପାଖେ କିଛି ପଇସା ନଥାଏ । ମାତ୍ର ଡ଼ାକ୍ତର ଲେଖିଦବା ଔଷଧ ନଦେଲେ, ତାର ମୃତ୍ୟୁ ହେବାର ଆଶଙ୍କା ବେଳକୁ ବେଳ ବଢୁଥାଏ । ବେକାର ଯୁବକମାନେ ତାଙ୍କ ପକେଟରେ ଯାହା ପଇସାଥିଲା ଗୃନ୍ଦା କରି ଔଷଧ ଦେଲେ । ସେମାନଙ୍କ ମଧ୍ୟରୁ ଜଣେ ଡାକ୍ତରଖାନାରେ ଜଗି ବସିଲେ । ଅନ୍ୟମାନେ ପାଳି କଲେ ।

ଗୋଟେ ଦିନପରେ ଡ଼ାକ୍ତର କହିଲେ ରୋଗୀକୁ କଟକ ବଡ଼ ଡାକ୍ତରଖାନାକୁ ନବାକୁ ହେବ । ମୁଣ୍ଡରେ ଆଘାତ ଲଗିଥିବା ଦୃଷ୍ଟିରୁ ମସ୍ତିଷ୍କ ବିଭାଗ ଏହାକୁ ଦେଖିବା ନିହାତି ଜରୁରୀ ।

ଭୁବନେଶ୍ୱରଠାରୁ କଟକ ପର୍ଯ୍ୟନ୍ତ ଆମ୍ବୁଲାନ୍‌ସରେ ନବାପାଇଁ ସରକାରୀ ରେଟରେ ୧୦୦ଟଙ୍କା ଦରକାର । ବେକାର ଯୁବକମାନେ ଦେଲେ । ସେମାନଙ୍କ ଭିତରୁ ଦୁଇଜଣ ଆହତ ବ୍ୟକ୍ତିଟିକୁ ନେଇଗଲେ କଟକ ବଡ଼ଡ଼ାକ୍ତରଖାନାକୁ । କାଜୁଆଲିଟିରେ ପହଞ୍ଚିଲାପରେ, ପ୍ରାୟ ଏକଘଣ୍ଟା ଅପେକ୍ଷା କରିବାକୁ ପଡ଼ିଲା । ଡ଼ାକ୍ତର ତା'ଆଗରୁ କୁଆଡ଼େ ଯାଇଥାନ୍ତି । ଡ଼ାକ୍ତର ଆସିଲା ପରେ ପରେ ରୋଗୀକୁ ଦେଖି ଓ୍ୱାର୍ଡକୁ ନବାକୁ ଲେଖିଦେଲେ ।

ସେ ଲେଖିଦେବା ପରେ ନେଇଁ କିରାଣୀ ବାବୁ ଖାତାରେ ଚଢ଼େଇ ଓ୍ୱାର୍ଡକୁ ପଠେଇବେ ସେ ପାଉଣା ମାଗିଲେ । ବେକାର ଟୋକା ଜଣକ ଲୋକଟିର ଅବସ୍ଥା ଦେଖାଇ, ତାଙ୍କ ପାଖେ ପଇସା ନାହିଁ କହିଲା ପରେ ବି ବାବୁ ଜଣକ କାଗଜ ଦିଉନଥାନ୍ତି । ଶେଷକୁ ବେକାର ବାବୁ ଜବରଦସ୍ତ କାଗଜ ଛଡ଼େଇ ଆଣି ଓ୍ୱାର୍ଡକୁ ଗଲେ । ଖଟର ଅଭାବ ହେତୁ ରୋଗୀଙ୍କୁ ତଳେ ଶୋଇବାକୁ ପଡ଼ିଲା । ମାତ୍ର ତାଙ୍କର ବହୁ ଅନୁରୋଧ ସତ୍ତ୍ୱେ ବି ରୋଗୀଙ୍କୁ ଖଣ୍ଡେ ବିଛଣା ଚଦର ଦିଆଗଲା ନାହିଁ । ଯିବା ପୂର୍ବରୁ ବେହେରାମାନେ ଷ୍ଟ୍ରେଚରରେ ନେବାପାଇଁ ମଧ୍ୟ ପାଉଣା ମାଗି ବସିଥିଲେ । ବେକାର ଯୁବକ ୨ଜଣ ମିଶିକରି ଓ୍ୱାର୍ଡ ପର୍ଯ୍ୟନ୍ତ ବେହେରା ମାନଙ୍କୁ ପଇସା ନଦେଇ ରୋଗୀକୁ ବୋହିନେଲେ ।

ଓ୍ୱାର୍ଡରେ ପଶିଲା ପରେବି ତାଙ୍କର ଦୁରବସ୍ଥା ଶେଷ ହେଲାନି । ସବୁ ପାଇଁ ପଇସାର ଡ଼ିମାଣ୍ଡ । ସେମାନେ ଦେଖୁଥାନ୍ତି, ଡ଼ାକ୍ତରମାନେ କେତେକ ନିର୍ଦ୍ଦିଷ୍ଟ

ରୋଗୀମାନଙ୍କ ସେବାରେ ତତ୍ପର । ମାତ୍ର ଅନ୍ୟମାନେ ସେଇପରି ଗଢ଼ୁଥାନ୍ତି । ଡାକିଲେ ମଧ୍ୟ କେହି ଶୁଣିବାକୁ ପ୍ରସ୍ତୁତ ନୁହନ୍ତି ।

ବେକାର ଯୁବକ ଜଣଙ୍କର ଜଣେ ବନ୍ଧୁ ନୂଆହୋଇ ଡାକ୍ତର ହୋଇ ସେଇଠି ଥାନ୍ତି । ସେ ଯାଇ ତାଙ୍କୁ ଗୁହାରି କଲେ ଗରିବ ଲୋକଙ୍କୁ ସାହାଯ୍ୟ କରିବା ପାଇଁ । ମାତ୍ର ସେ ରୋକଠୋକ ମନା କରିଦେଲେ । ଉତ୍ୟକ୍ତ ବନ୍ଧୁଙ୍କଠାରୁ ପାଉଣା ପାଇଁ ହଇରାଣ ହେବା କଥାଶୁଣି, ଡାକ୍ତରଜଣକ କହିଲେ, ଏଥିରେ ଆଶ୍ଚର୍ଯ୍ୟ ହବାରେ କିଛି ନାହିଁ । ମନ୍ତ୍ରୀଙ୍କଠାରୁ ଆରମ୍ଭ କରି ଯନ୍ତ୍ରୀମାନେ ମଧ୍ୟ ପଇସା ନଉଛନ୍ତି । ଡାକ୍ତରମାନେ କାହିଁକି ରୋଗୀଙ୍କ ଠାରୁ ଆଦାୟ କରିବେନି ।

ବେକାର ବନ୍ଧୁ କହିଲେ ତୁମ୍ଭେମାନେ ଆମ ଦେଶର ଶହେରୁ ମାତ୍ର ୨ଜଣ ଲୋକଙ୍କୁ ଦେଖି ଏପରି କଥା କହୁଚ । ତୁମମାନଙ୍କ ତଳେ ଆଉ ଯେ ୯୮ଜଣ ଏ ଦେଶର ନାଗରିକ ଦାରିଦ୍ର୍ୟର ସୀମାରେଖା ତଳେ ରହିଛନ୍ତି, ତାଙ୍କ ଆଡ଼କୁ କେବେ ଦୃଷ୍ଟି ଦେଇଛ କି ?

ଡାକ୍ତର ବନ୍ଧୁ କହିଲେ, ବେକାର ଥିଲା ପର୍ଯ୍ୟନ୍ତ, ଏମିତି ଆମେ ବଡ଼ ବଡ଼ କଥା କହି ପାଟି କରୁଥିଲୁ । ଯେଉଁଦିନ ଚାକିରି ମିଳିଲା ଠିକ୍ ତା ପରଦିନ ଠାରୁ ତ ପଇସା ଆଦାୟରେ ଲାଗି ପଡ଼ିଛୁ । ତୁ ବେକାର ଅଛୁ, ଚାକିରି ପାଇଲେ ତ ଏଇଆ କରିବୁ ।

ବେକାର ଯୁବକ ଉତ୍ୟକ୍ତ ହୋଇ କହିଲେ, ମୋ ପାଖେ ଖଣ୍ଡେ ଛୁରୀ ଥିଲେ, ମୁଁ ତତେ ହତ୍ୟା କରିବାକୁ ପଛେଇ ନଥାନ୍ତି ।

ତା'କଥା ଶୁଣି ତ ଡାକ୍ତର ବନ୍ଧୁ କହିଲେ, ତୁ କେତେ ଲୋକଙ୍କୁ ହତ୍ୟା କରିବୁ ? କମଳ ଯାକତ ବାଲା । ବରଂ ତୋ କଥା ଶୁଣି ପୁଲିସବାଲା ବାନ୍ଧି ନେବେ । ଯା ପଳା । ଏମିତି କେତେ ଲୋକ ନିତି ରାସ୍ତା ଦୁର୍ଘଟଣାରେ ମରୁଛନ୍ତି । ଆଉ ଗୋଟେ ଅଧିକା ମଲେ ଦେଶର କ'ଣ କ୍ଷତି ହୋଇଯିବ ?

କଟକ ବଡ଼ ଡାକ୍ତରଖାନାରୁ ବାହାରି ଇନ୍ଦ୍ର ରାଣୀହାଟ ପାଖେ ପହଞ୍ଚିଲେ । ଏଇ ଗସ୍ତ ଭିତରେ ସେ ଥରେ ଦୁଇଥର କଟକ ପରିଭ୍ରମଣରେ ଆସିଥିଲେ । କଟକ ସହର ତାଙ୍କ ଦେଖିବାରେ କେତେ ଗୁଡ଼ିଏ ଘଟଣା ପାଇଁ ପ୍ରସିଦ୍ଧ । ଏହା ଅତି ପୁରାତନ ସହର । ଏଠାରେ ଲୋକମାନେ ସକାଳ ହେଲମାତେ ନଦୀ ବାଲିଠାରୁ ଆରମ୍ଭ କରି ଘର ପାଖ ନାଳ ଉପର ଡ୍ରେନ ପର୍ଯ୍ୟନ୍ତ ସବୁଆଡ଼େ 'ପାଇଖାନା' ଖୋଲି ଦିଅନ୍ତି । ଏଠାକାର ବାସିନ୍ଦା କୁହନ୍ତି, ଯେଉଁମାନେ ଏଇ ଡ୍ରେନ ପାଇଡ଼ ଘରମାନଙ୍କରେ ଅଛନ୍ତି ସେମାନଙ୍କ ସ୍ୱାସ୍ଥ୍ୟ ଅନ୍ୟ ସହର ବାସିନ୍ଦାମାନଙ୍କଠାରୁ ଅତି

ଉଚ୍ଚ କୋଟୀର । ସେଇଥିଯୋଗୁ ପୁରୁଣା କଟକବାଲାଙ୍କୁ ଲକ୍ଷେ ଟଙ୍କା ଦେଲେ ବି ସେମାନେ ଏପରି ସୁଗନ୍ଧଯୁକ୍ତ ସହରକୁ ଛାଡ଼ି ଯିବାକୁ ଆଗଭର ହୁଅନ୍ତି ନାହିଁ ।

ସେହିପରି କଟକ ଦହିବରା, କଟକୀ ଗୁଟ ରାସ୍ତା ଉପରେ ବିକ୍ରି ହୁଏ । ଆଳୁଦମ ନାଲି ଟକ ଟକ । ସନ୍ଧ୍ୟାବେଳକୁ ଗାଡ଼ି ଲଗେ, ଲୋକେ ଲାଇନକରି ଏସବୁ କିଣନ୍ତି, ଖାଆନ୍ତି, ଆମିବିକ ଡ଼ିସେଣ୍ଟ୍ରିରେ ପଡ଼ି ଡାକ୍ତରକୁ ପଇସା ଦିଅନ୍ତି । ତଥାପି ସେମାନଙ୍କ ମନରେ ଚିନ୍ତା ନାହିଁ କି ଚେତନା ନାହିଁ ।

ସବୁଠାରୁ ବଳି ଇନ୍ଦ୍ର ଦେଖିଲେ କଟକୀ ମଶା । ସନ୍ଧ୍ୟା ନହେଉଣୁ ସୁନ୍ଦର ବଂଶୀ ବାଦନରେ କଟକୀ ବାସିନ୍ଦା ମାନଙ୍କର ମନ କିଣିନିଅନ୍ତି ।

ଅନ୍ୟ ସବୁ ସହରରେ ଟିକିଏ ନିଶ୍ୱାସ ମାରିବା ପାଇଁ ଜାଗା ଥାଏ । ମାତ୍ର ଏଠାରେ ସେସବୁ ନାହିଁ । ରାସ୍ତା ନଥାଇ ସିନେମା ହଲ ପାଇଁ ଲାଇସେନସ । ରାସ୍ତା ଉପରେ ବଜାର, ସବୁକିଛି । କଟକ ସହର ପାଇଁ ସବୁ କିଛି ଛାଡ଼ । ନହେଲେ ବଡ଼ ଡ଼ାକ୍ତରଖାନାରେ ରୋଗୀଙ୍କ ଅବସ୍ଥା ଏପରି ହୁଅନ୍ତା କିପରି ?

ଏଇମିତି ଭାବି ଭାବି ଫେରୁ ଫେରୁ ଇନ୍ଦ୍ର ଗୋଟିଏ ସିନେମା ହଲ ପାଖେ ପହଞ୍ଚି ଗଲେ । ସେଠାରେ ସେ ଦେଖିଲେ ଦୁଇଜଣ ଯୁବକ ହାତରୁ ପଇସା ଦେଇ ଟିକେଟ କିଣି ଲୋକମାନଙ୍କୁ ସିନେମା ଦେଖିବାକୁ ପଠାଉଛନ୍ତି । ଇନ୍ଦ୍ର ଏ ଘଟଣା ଦେଖି ତାଜୁବ ହୋଇଗଲେ । ଖରାଦିନେ ବଦାନ୍ୟ ବ୍ୟକ୍ତିମାନେ ଧର୍ମ କରିବାକୁ ଦହିପାଣି ଧରି ରାସ୍ତା କଡ଼ରେ 'ପାଣିଛତ୍ର' ଖୋଲିଥାନ୍ତି । ମାତ୍ର ଏଠାରେ ଏମାନେ ସିନେମା ଟିକେଟ 'ଛତ୍ର' ଖୋଲିଥିବା ଦେଖି ଇନ୍ଦ୍ର ଟିକିଏ ପାଖକୁ ଗଲେ । ତାଙ୍କୁ ବି ଗୋଟେ ଟିକେଟ ମିଳିଗଲା । ମାତ୍ର ଏସବୁ ଟିକେଟ ନିମ୍ନ ଶ୍ରେଣୀର ।

ଟିକେଟ ଦେଲାପରେ ଦେଇଥିବା ଦୁଇଜଣ ଲୋକ କହିଲେ—'ହେ ମଫସଲିଆ ବାବୁ, ଶୁଣ ଶୁଣ । ଆପଣଙ୍କୁ ଆମେ ଏ ଟିକେଟ ଦେଲୁ, ଆପଣ ଆମର ଗୋଟେ କାମ କରିବେ । କାମଟି ହେଲା—ସିନେମାରେ ଯେତେବେଳେ ହିରୋ ବାହାରିବ, ମାରିବେ ତାଳି । ପୂରା ହଲ କମ୍ପାଇ ତାଳି ମାରିବେ । ହିରୋ ଯେଉଁଠି ଗୀତ ବୋଲି ବୋଲି ହିରୋଇନ୍ ସଙ୍ଗେ ନାଚିବ କିମ୍ବା ଭିଲଆନକୁ ମୁଥ ମାରି ମାରି ପକେଇ ଦେବ, ସେଠି ପୂରା ଠିଆ ହୋଇ ଯାଇ ତାଳିମାରିବେ । ଶିଶୁଳି ମାରିବେ । ଦରକାର ପଡ଼ିଲେ ଚଉକିରୁ ଗୋଟେ ଦଇଟା ହାତ ଭାଙ୍ଗିଦେବେ, କିଛି ଯାଏ ଆସେ ନାହିଁ । ମହାରଣା ତାକୁ ଆମେ ମରାମତି କରିଦେବୁ ବୋଲି ସିନେମା ହଲ ମାଲିକଙ୍କ ସଙ୍ଗେ କଥା ଉଠିଛି ।

ଇନ୍ଦ୍ର କହିଲେ ମୁଁ ନିଶ୍ଚୟ ତାଳି ମାରିବି । କିନ୍ତୁ ମହାଶୟ ଏପରି କଅଣ ପାଇଁ କରିବାକୁ ପଡ଼ୁଛି ?

ତାଙ୍କ କଥା ଶୁଣି ବାବୁ ଦିଜଣ କହିଲେ ଆପଣ ଜାଣନ୍ତିନି ଆମ ଚଳଚ୍ଚିତ୍ର ଜଗତରେ ଓଡ଼ିଶାରେ ଦିଇଟା ନୂଆ ଟୋକା ଡ଼ାଇରେକ୍ଟର ବାହାରିଛନ୍ତି । ଏ ଦିଜଣ ଡ଼ାଇରେକ୍ଟର ମଧ୍ୟ ଏକ ଗୋଷ୍ଠୀର ଥିଲେ । ମାତ୍ର ଏବେ ଅଲଗା । ଜଣଙ୍କର ପିକ୍‌ଚର କାଲି ଗୋଟେ ସିନେମା ହଲରେ ପଡ଼ିଲା । ଆଜି ଆମ ଡାଇରେକ୍ଟରଙ୍କ ପିକ୍‌ଚର ଏଠି ରିଲିଜ ହୋଇଛି । ଯଦି ତାଳିମାଡ଼ ଆଉ ଶିଶୁବି ଶବ୍ଦ ନହୁଏ, ଲୋକ କହିବେ ଛବିଟା ଫ୍ଲପ୍ ହୋଇଗଲା । ତାହେଲେ ଆମ ଡ଼ାଇରେକ୍ଟରଙ୍କ ମୁହଁ ରହିବଟି ? ତେଣୁ ଏଇ ପଥ ଆମେ ବାଛି ନେଇଛୁ । ଯାଉ କିଛି ପଇସା କିଛି ଚିନ୍ତା ନାହିଁ । ତାଳି ମାଡ଼ହେଲେ କାଲି ଖବର କାଗଜରେ ବାହାରିବ । ଡାଇରେକ୍ଟରଙ୍କ ଭୂରି ଭୂରି ପ୍ରଶଂସା ଘରିଆଡ଼େ ବ୍ୟାପିଯିବ । ନୂଆ ନୂଆ ପ୍ରଡ୍ୟୁସରମାନେ ଆସି ଏ ଡ଼ାଇରେକ୍ଟରଙ୍କୁ ତାଙ୍କ ଛବିରେ କାମ କରିବାକୁ ପ୍ରବର୍ତ୍ତାଇବେ ।

ଏକଥା ଶୁଣି ଇନ୍ଦ୍ର କହିଲେ—ଆପଣମାନେ ସବୁ କିଏ ?

ବାବୁ ଦି'ଜଣ କହିଲେ—ଆମକୁ ଚିହ୍ନିପାରୁନ ? କେତେଟା ଓଡ଼ିଆ ଛବି ଦେଖିଲଣି ? ଏ ଛବି ଦେଖ, ଆଉ ଯେଉଁ ଛବି ନାଁ କହୁଛୁ ତାକୁ ଦେଖ । ଦେଖିଲେ ଆମକୁ ତା ଭିତରେ ଦେଖିପାରିବେ । ଆମେ ସବୁ ସାଇଡ଼ ଆର୍ଟିଷ୍ଟ୍ । ଆର୍ଟିଷ୍ଟ୍ ହୋଇ ଆମ ଡ଼ାଇରେକ୍ଟରଙ୍କ ପାଇଁ ଏତିକି ସାକ୍ରିଫାଇସ କରିପାରିବୁନି ?

ଇନ୍ଦ୍ର କହିଲେ ନିଶ୍ଚୟ ନିଶ୍ଚୟ । ନହେଲେ ଓଡ଼ିଆ ଚଳଚ୍ଚିତ୍ରର ଅଧୋପତନ ଘଟିବ । ଓଡ଼ିଆ ସଂସ୍କୃତି ନର୍କରେ ପଡ଼ିବ । ଆପଣମାନଙ୍କ ପରି ବଳ୍ପ ଯୁବକମାନେ ଏସବୁକୁ ଟେକି ନଧରିଲେ କିଏ ଆଉ ସେମାନଙ୍କୁ ଟେକି ଧରିବେ ? ଆପଣଙ୍କ ସାକ୍ରିଫାଇସ କେବଳ ଡ଼ାଇରେକ୍ଟରମାନଙ୍କ ପାଇଁ ନୁହେଁ, ସାରା ଓଡ଼ିଆ ଜାତିର ସଂସ୍କୃତି ପାଇଁ ଏକ ମହାନ ସାକ୍ରିଫାଇସ ।

( ୪୬ )

ଇନ୍ଦ୍ର ମର୍ତ୍ତ୍ୟ ଗସ୍ତରେ ଏତେ ବ୍ୟସ୍ତ ରହିଲେ ଯେ, ସ୍ୱର୍ଗକୁ ଫେରିବା କଥା ବିଲକୁଲ୍ ଭୁଲିଗଲେ । ଯାହା କହନ୍ତି, ମାନବ ଜନମ ଦୁର୍ଲ୍ଲଭ ଏବଂ ଦେବତାମାନେ ମାନବ ଜନ୍ମକୁ ଈର୍ଷା କରନ୍ତି, ଇନ୍ଦ୍ର ତାହା ନିଜେ ଏହି ରହଣି କାଳ ମଧ୍ୟରେ ଅନୁଭବ କଲେ । ଏ ପୃଥିବୀରେ ତାଙ୍କଠାରୁ ବଳି କେତେ ଇନ୍ଦ୍ର ଯେ ଅଛନ୍ତି, ସେ

କଲନା କରି ପାରୁନଥିଲେ । ସ୍ୱର୍ଗରେ ତ ଇନ୍ଦ୍ରଙ୍କ କାର୍ଯ୍ୟକଳାପ, ମିଳାମିଶା, ନାଚ, ଗୀତ ସବୁ ଉପରେ କିଛି କଟକଣା ଅଛି, ମାତ୍ର ମର୍ତ୍ତ୍ୟର ଇନ୍ଦ୍ରମାନଙ୍କ ପାଇଁ ସେ ସବୁ କିଛିନାହିଁ । ନୋ ରେଷ୍ଟ୍ରିକ୍‌ସନ ।

ଇନ୍ଦ୍ର ମନେ ମନେ ଭାବୁଥିଲେ, କପରି କୁହାବୋଲି କରି ଯଦି ଏ ପୃଥିବୀରେ କିଛିଦିନ ଇନ୍ଦ୍ର ବନି ଯାଆନ୍ତେ, ତାହେଲେ ତାଙ୍କ ଜୀବନଟା ସାର୍ଥକ ହୋଇ ଯାଆନ୍ତା । ସ୍ୱର୍ଗଟାରେ ଅଛି ବା କଅଣ ? ଏ ମଣିଷମାନେ ସେଠାକୁ ଯାଇ କିଛି ଦେଖି ନାହାନ୍ତି ବୋଲି ସବୁବେଳେ ସ୍ୱର୍ଗ ସ୍ୱର୍ଗ ହୋଇ ବୋବାଳି ପକାଉଛନ୍ତି । ଥରେ ଯଦି ଯାଇ ବୁଲି ଆସନ୍ତେ, ତାହେଲେ ବୁଝନ୍ତେ ଯେ, ପୁରୀଆ (ପୁରୀ ବାସିନ୍ଦା) ମାନେ ଭାଙ୍ଗ ଟିକିଏ, ଛେନା ଆଉ ଛଙ୍କା ଡ଼ାଲମା ଖାଇ ଖାଇ ଦିକ୍‌ଦାରିଆ ହେଲେ ମଧ୍ୟ ତାକୁ ଖାଇବା ଛଡ଼ା ଆଉ ତାଙ୍କର ଅନ୍ୟ ପନ୍ଥା ନଥିଲି ପରି ସ୍ୱର୍ଗିଆ ମାନେ (ସ୍ୱର୍ଗରେ ବାସ କରୁଥିବା ବ୍ୟକ୍ତିବିଶେଷ) ଏକ ପ୍ରକାରିଆ ଜିନିଷ ଖାଇ, ପିଇ, ପିନ୍ଧି, ବ୍ୟବହାର କରି ଏକାବେଳକେ ଦିକ୍‌ଦାରିଆ ହୋଇ ଗଲେଣି । ସେ ସିନା ମର୍ତ୍ତ୍ୟ ଗସ୍ତରେ ଏତେଦିନ ରହିଲେ ବୋଲି ସବୁକଥା ଜାଣିଲେ, ନହେଲେ ଏସବୁ ବୁଝିଥାଆନ୍ତେ କୁଆଡ଼ୁ ? ଏସବୁ କଥାତ କେବଳ ମହାପ୍ରଭୁ ବିଷ୍ଣୁଙ୍କୁ ଜଣା-ଥିଲି । ସେଇଥିଲାଗି ସେ ଦେବତାମାନଙ୍କୁ "ପରିତାଣାୟଂ ସାଧୁନାଂ ବିନାଶାୟ ଚ ଦୁଷ୍କୃତାମ୍, ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ" କହି, ଚିଡା କାଟି କିଛି ଦିନ ସ୍ୱର୍ଗରୁ ଖସି ମର୍ତ୍ତ୍ୟରେ ବେଶ୍ ମଉଜ କରି ଯାଉଥିଲେ । ଗୋପରେ ରାଧାଙ୍କୁ ବସାଇ ଷୋଳ ସହସ୍ର ଗୋପୀମାନଙ୍କ ସଙ୍ଗେ କେଳି କଲେ, ତାପରେ ଦ୍ୱାରକାରେ ଅଷ୍ଟ ପାଟ ମହିଷୀ ରଖିଲେ ।

ଶେଷକୁ ମହାଭାରତ ଯୁଦ୍ଧରେ ଟିକିଏ ଗୁଲିବାଜି ଖେଳି କହିଲେ କଅଣନା ମର୍ତ୍ତ୍ୟରୁ ଦୁଷ୍ଟ ଦୁର୍ଯ୍ୟୋଧନକୁ ନିପାତ କରି ସତ୍ୟ ଶାନ୍ତି ପ୍ରତିଷ୍ଠା କଲେ । ମଣିଷ ଗୁଡ଼ାକ ଟିକିଏ ବୋକା । ତେଣୁ ତାଙ୍କୁ ଠକାଠକି କରି ବେଶ୍ କୃଷ୍ଣ ସାଜି ମହାପ୍ରଭୁ ବିଷ୍ଣୁ ସ୍ୱର୍ଗକୁ ଫେରିଲେ । ଏବେ ଯୋଗନିଦ୍ରାରେ ଶୋଇଛନ୍ତି । ପୁଣି ସ୍ୱର୍ଗରେ ବୋର ଲାଗିଲେ ବାହାରିବେ ।

ଇନ୍ଦ୍ର ମନେ ମନେ ତାଙ୍କ ଉପରେ ରାଗୁଥିଲେ । ସବୁ ଏକା ଏକା ଏନ୍‌ଜଏ କରୁଛନ୍ତି, ଅଥଚ ତାଙ୍କୁ ଟିକିଏ ଏ ବିଷୟରେ ସୂଚନା ବି ଦେଉନାହାନ୍ତି । ସ୍ୱର୍ଗରେ ପୂରା ଡ଼ିକ୍ଟେଟରସିପ ଚଳେଇଛନ୍ତି । ମର୍ତ୍ତ୍ୟ ତ ସ୍ୱର୍ଗଠାରୁ ବହୁଗୁଣରେ ଭଲ ।

ତା'ଛଡ଼ା ଏ ଭାରତ ଦେଶ ସବୁଠାରୁ ଭଲ । ଏଠା ଡ଼ିମୋକ୍ରାସିରେ ସମସ୍ତେ ଇନ୍ଦ୍ର ବନିବାର ସୁଯୋଗ ବି ଅଛି । ପୁଣି ଏ ଡ଼ିମୋକ୍ରାସିରେ ତୁମର

'ଅଧିକାର' ସବୁବେଳେ ପୂରାମାତ୍ରାରେ ଦାବୀ କରିପାରିବ । ମାତ୍ର ଦେଶପାଇଁ କି ସମାଜପାଇଁ ତୁମେ ତୁମ ଦାୟିତ୍ୱ ନତୁଲାଇଲେ କିଛି ଚିନ୍ତା ନାହିଁ । ସେ ସବୁକୁ ମାରି ଗୁଲି ।

ଇନ୍ଦ୍ର ଦେଖିଲେ ଏଠାକାର ଇନ୍ଦ୍ରମାନେ କିପ୍ରକାର ଆରାମରେ ଅଛନ୍ତି । ଧନ ଧାନ୍ୟ, ଗୋପ ଲକ୍ଷ୍ମୀ, ଐରାବତ, ଉଚ୍ଚୈଃଶ୍ରବା, ପାରିଜାତ, ଶଚୀଫଚି କେତେ ଯେ ଉଦ୍‌ଭିପୋତା, ନାରଦଙ୍କ ବୋପା ବି ତା ହିସାବ ରଖି ପାରିବେନି ! ମାତ୍ର ସ୍ୱର୍ଗରେ ତାଙ୍କ ଇଚ୍ଛାରେ ସେ କିଛି କରି ପାରିବେ ?

ଇନ୍ଦ୍ର ମନେ ମନେ ଭାବୁଥିଲେ, ଆଉ କିଛିଦିନ ମର୍ତ୍ତ୍ୟ ଗସ୍ତରେ ରହିଗଲେ ଭଲ ହୁଅନ୍ତା । ମାତ୍ର ବିଧିର ବିଧାନ ବୋଧେ ଅଲଗା । ବିଷ୍ଣୁ ତ ମହାଗୃଲୁ ଦେବତା । ସେ ଯୋଗନିଦ୍ରାରେ ଅବା ଆଖିଖୋଲି ଶୋଇଲେ କଅଣ ହେଲା, କିଏ କୁଆଡ଼େ ଯାଉଛି ଆସୁଛି ସବୁ ଖବର କ୍ଲୋଜ ସରକିଟ ଟେଲିଭିଜନରେ ଦେଖିଲାପରି, ତାଙ୍କ ଟେଲିଭିଜନ ଲଗାଇ ଦେଇ ଓଳନପୁର ଖବର ରଖୁଥିବନ୍ତି । ଇନ୍ଦ୍ର ମର୍ତ୍ତ୍ୟ ଗସ୍ତରେ ବିମୋହିତ ହୋଇ ଯିବା ଦେଖି ସେ ଶଚୀ ଦେବୀଙ୍କୁ ଇନ୍ଦ୍ରଙ୍କ ମନୋଭାବ କଥା କଡ଼ଲେସ ଟେଲିଫୋନରେ କହି ସାରିଲେଣି ।

ପ୍ରଭୁଙ୍କଠାରୁ ଖବରଟା ପାଇଲା ପରେ ଶଚୀଦେବୀଙ୍କ ସ୍ୱର୍ଗରେ ରହେ କିଏ ! ମନେ ମନେ କହିଲେ ଦେଖାହେ, ମୋତେ କହିକରି ଗଲେ ଜଲଦି ଫେରିଲେ ଆଉଥରେ ସାଙ୍ଗରେ ନେଇକରି ଯିବେ । ତେଣେ ମର୍ତ୍ତ୍ୟକୁ ଗଲାପରେ ମତେ ଭୁଲି ସେଠି କଅଣ ସେ କଲେଣି କିଏ ଜାଣିଛି ! ମନରେ ଏଥର ଭାବ ସେ ମର୍ତ୍ତ୍ୟ ଗସ୍ତରେ ଯିବେ ବୋଲି ନିଷ୍ପତ୍ତି କଲେ ।

## ( ୪୩ )

"କାନ୍ଦିଲେ କହେବ କଣ୍ଣନ୍ତୁ ଗମନ', ଇନ୍ଦ୍ର କ ସହର ଗ୍ଭୁଡ଼ିବ" ?

ଇନ୍ଦ୍ର ଦେଖିଲେ, ବୈଷ୍ଣବ ପାଣି ଲିଖିତ ସୁଆଙ୍ଗରେ ଇନ୍ଦ୍ର ପାଟ କରୁଥିବା ଲୋକଟି ବେଶ୍ ସୁନ୍ଦର ଆକଟିଂ କରୁଛି । ରାସ୍ତାକଡ଼ରେ ହେଉଥିବା ସୁଆଙ୍ଗ ତାଙ୍କୁ ଭାରି ଭଲ ଲାଗିଲା । ଆହୁରି ଭଲ ଲାଗିଲା ଇନ୍ଦ୍ର ପାଟ୍ କରୁଥିବା ପାଟିସ୍ୱର, ଆଉ ତା ସାଙ୍ଗକୁ କନପିଟ୍ ପାର୍ଟିଙ୍କ ଢୋଲକି ମାଡ଼ ।

ଇନ୍ଦ୍ର ମନେ ମନେ ଓଡ଼ିଆ କବିଙ୍କୁ ବହୁତ ଧନ୍ୟବାଦ ଦେଲେ । ତାଙ୍କ

ତୁଣ୍ଡରୁ ବାହାରି ପଡ଼ିଲା, "ହେ ଓଡ଼ିଆ କବି ବୈଷ୍ଣବ ବାବୁ, ତୁମେ ଅମର ହୁଅ। ତୁମର ସୃଷ୍ଟି ସବୁଦିନ ପାଇଁ ଓଡ଼ିଆ ନାଟ୍ୟ ସାହିତ୍ୟର ମୁଖ ଉଜ୍ଜ୍ୱଳ କରୁ"।

କିନ୍ତୁ ସେ ଶୁଣିଲେ ଏଇ ଓଡ଼ିଆ କବି ବୈଷ୍ଣବ ପାଣି, ଜୀବନକାଳ ମଧ୍ୟରେ ଘର ଘର ବୁଲି ପାଣ୍ଡୁଲିପିଗୁଡ଼ିକ, ଟଙ୍କେ ଦୁଇଟଙ୍କାରେ ପେଟ ପାଇଁ ବିକି କରି ଗୁଜୁରାଣ ମେଣ୍ଟାଉଥିଲେ। ତାଙ୍କ ଗାଁବାଲାମାନେ ତାଙ୍କୁ ଗାଁରେ ବାସ ନ ଦେବାରୁ ନଦୀକୂଳ ଗଛମୂଳେ ରହି ନିଜର ଶେଷ ଜୀବନ ଦୁଃଖ ଦୈନ୍ୟ ନୈରାଶ୍ୟ ମଧ୍ୟରେ କଟାଇ ମୃତ୍ୟୁବରଣ କଲେ। ତାଙ୍କର ମୃତ୍ୟୁର ବହୁକାଳ ପରେ ଏବର ଲେଖକ ଗୋପାଳ ଶ୍ରୋତ୍ରିୟଙ୍କ କୃପାରୁ କବିଙ୍କୁ ଲୋକେ ଚିହ୍ନିଲେ। ଏବେ ଓଡ଼ିଆମାନେ ବୁଝୁଛନ୍ତି ବୈଷ୍ଣବଆଟା ପିଲା ନୁହେଁ ଗୋଟେ ସୁନାମୁଣ୍ଡା ଥିଲା। ସିଆଙ୍କ ଲେଖି ନଥିଲା ଯେ, ଓଡ଼ିଆ ସାହିତ୍ୟ ସଂସ୍କୃତି ପାଇଁ ମହାନ ଅବଦାନ ଦେଇଗଲା"। ଏବେ ସେ କଥା ବୁଝିବାପରେ ସମସ୍ତେ ତାଙ୍କର "ଜୟନ୍ତୀ" ପାଳନ କରୁଛନ୍ତି।

ଅବଶ୍ୟ ଏ ଉତ୍କଳ ଦେଶ ଦିନେ ଉତ୍କୃଷ୍ଟ କଳାପାଇଁ ପ୍ରସିଦ୍ଧି ଲାଭ କରିଥିଲା। ସେତେବେଳେ ସେମାନେ କଳା ଏବଂ କଳାକରଙ୍କୁ ଠିକ୍ ଚିହ୍ନି ପାରୁଥିଲେ। ସେଥିଲାଗି ଆଠଗଡ଼ କବି ରଥେ ଶୂଳୀ ମୁହଁରୁ ଖସିଲେ। ତାଙ୍କୁ ଦେଖି ସେ ସମୟର ଅନ୍ୟ ଜଣେ ଗୁଣୀମାନୀ କବି ଯଦୁମଣି ଲେଖିଲେ—

"ଭଲ ଗହଣା—
ଝମଣା ଖୋଳରେ
ପାଇଲେ ହଣା"।

ସେତେବେଳେ ଗୁଣୀ ଗୁଣୀକୁ ଚିହ୍ନୁଥିଲା। ସେ ସମୟ ଏବେ ଗଲାଣି। ଏବେକାର ଲୋକମାନେ ଆଉ ଏବେ ଜୀବଦ୍ଦଶା ଭିତରେ ଗୁଣୀ କଳାକାରଙ୍କୁ ଚିହ୍ନି ପାରୁନାହାନ୍ତି। ଜୀବନରେ ଥିବା ପର୍ଯ୍ୟନ୍ତ ତା' ଗୋଡକୁ ଟଳକୁ ଟଳକୁ ଟାଣିବା ଏମାନଙ୍କର ଏକ ସଉକ। କିଛି ନହେଲେ, ତା ନାଁରେ ଧଇଟା ବେନାମୀ ଦରଖାସ୍ତ ପକାଇ ବଦନାମ କରିଦେବା ପାଇଁ ପଛୁନ୍ତି ନାହିଁ। ମାତ୍ର ଏଇ ଗୁଣୀ ଜ୍ଞାନୀ ଲୋକମାନେ ମରିଗଲାପରେ ଏ ଜାତି ହଠାତ୍ ସଜାଗ ହୋଇ ଉଠି 'ଜୟନ୍ତୀ' ପାଳନ କରେ। ସଭା ସମିତି, ବକ୍ତୃତା ମାଧ୍ୟମରେ ଲୁହ ଲହୁ ଗଡାଏ। ଏପରିକି, ଭେ, ଭେ କ୍ରନ୍ଦନ କରେ। ସଭାସ୍ଥଳରେ ବକ୍ତୃତା ଦେଲାବେଳେ ଏମିତି ଭାବବିହ୍ୱଳ ହୋଇପଡ଼େ ଯେ, ଦେଖଣାହାରିମାନେ ଭାବନ୍ତି, ଆହା ଆହା, କବି ଯଦି ବଞ୍ଚିଥାନ୍ତେ, ତାହେଲେ ଏ ଭଦ୍ରବ୍ୟକ୍ତି ନିଶ୍ଚୟ ତାଙ୍କର ଗୋଟେ କିଛି ଟେକି

ଧରିଥାନ୍ତେ । ତେଣୁ ଏଇ ଉତ୍କଳ ଭୂମିରେ, ସମସ୍ତେ ମଲାପରେ ମରଣୋତ୍ତର ସମ୍ମାନ ଲାଭ କରନ୍ତି । କିନ୍ତୁ ଜୀବଦ୍ଦଶାରେ ତେନ୍ତୁଳି ପଖାଳ ଖାଇ ମରନ୍ତି ।

ରାସ୍ତାକଡ଼ର ସୁଆଙ୍ଗ ପାଟିଅରମାନଙ୍କୁ ଇନ୍ଦ୍ର ପ୍ରାୟ ମୁଗ୍ଧ ହୋଇ ଦେଖୁଥାନ୍ତି । ଢୋଲକି ମାଡ଼ ସାଙ୍ଗକୁ ଆମ୍ବୁଆଳି ପବନ ପରିବେଶକୁ ଆହୁରି ଆମୋଦଦାୟକ କରି ତୋଳୁଥାଏ । ଏଇ ସମୟରେ ଇନ୍ଦ୍ର ପାର୍ଟି କରୁଥିବା ପାଟିଅର, ସୁନ୍ଦରୀ ଲଳନାଙ୍କର ହାତକୁ ନିଜ ଆଡ଼କୁ ଭିଡ଼ିଆଣି, ହାଃ ହାଃ ହାଃ ହୋଇ ଅଟ୍ଟହାସ କରି ରଙ୍ଗମଞ୍ଚ ଫଟାଇ ଦେଲେ ।

ତାଙ୍କ ଅଟ୍ଟହାସ୍ୟ ଶୁଣି ସୁନ୍ଦରୀ ଲଳନା ତାଙ୍କ ଡ଼ାଇଲଗରେ କହିଲେ, 'ଆରେ ଆରେ ପାପିଷ୍ଠ ଇନ୍ଦ୍ର ! ସତୀ, ପତିବ୍ରତା ନାରୀର ଅଭିଶାପରେ ଦିନେ ତୁ ସହସ୍ର ଯୋନିରେ ପରିଣତ ହୋଇଥିଲୁ । ଏବେ ମୋ ଅଭିଶାପରେ···ଏତିକି କହିଲାବେଳକୁ ସଭା ଭିତରେ ଛଦ୍ମ ବେଶରେ ଇନ୍ଦ୍ର, ତାଙ୍କ ପାର୍ଟ ଦେଖି ଏମିତି ମଜ୍ଜି ଯାଇଥିଲେ ଯେ, ତାଙ୍କ ହାତ ହଠାତ୍ ଉଠି ଯାଇ 'ହାଁ' 'ହାଁ' ପାଟିରୁ ବାହାରି ପଡ଼ିଲା । ସେତିକିବେଳକୁ ପଞ୍ଝେ ଦଣ୍ଡା ବାଳୁଙ୍ଗା ଟୋକା ହୋ ହୋ ହୋଇ ହସି ଉଠିଲେ । ଇନ୍ଦ୍ର ବଡ଼ ଲଜ୍ଜିତ ହେଲେ । ମାତ୍ର ମନେ ମନେ ଭାବିଲେ, ସତେ ହେ, ଏ କବିଟା କି ଜୀବନ୍ତ ଲେଖା ଲେଖିଛି ! ସ୍ୱର୍ଗକୁ ଯାଇଛି କି ନାହିଁ ଜଣାନାହିଁ । ଦେଖିବା, ସ୍ୱର୍ଗ କି ନର୍କରେ ଯେଉଁଠି ଥିବ ତାଙ୍କୁ ବାହାର କରିବାକୁ ହେବ । ତାଙ୍କୁ ଉପଯୁକ୍ତ ସମ୍ମାନ ଦେବାକୁ ପଡ଼ିବ ।

ସୁଆଙ୍ଗ ଭିତରୁ ତଡ଼ା ଖାଇ ଗଳିରାସ୍ତା ମୁଣ୍ଡରେ ପହଞ୍ଚିଲା ବେଳକୁ ଇନ୍ଦ୍ରଙ୍କ ଛାତିପାଖେ ଝୁଲୁଥିବା ଟ୍ରାନ୍ସମିସନ୍ ଯନ୍ତ୍ରଟା କେଁ କେଁ ହୋଇ ଶବ୍ଦକଲା । ଇନ୍ଦ୍ର ଜାଣି ପାରିଲେ ସ୍ୱର୍ଗରୁ କଲ ଆସିଛି । ହ୍ୟାଲୋ କହିଲା ବେଳକୁ ସେପଟୁ ଶଚୀ ଦେବୀଙ୍କ ପାଟି ଶୁଣାଗଲା ।

ଶଚୀଙ୍କ ପାଟିଶୁଣି ଇନ୍ଦ୍ର ପୁଣିଥରେ ନଶୁଣିଲା ପରି ପାଟିକଲେ ହ୍ୟାଲୋ ହ୍ୟାଲୋ !

ତାଙ୍କ ପାଟି ଶୁଣି ଶଚୀ ଦେବୀ ସେପଟରୁ ଗର୍ଜିଉଠି କହିଲେ—କଅଣ ମର୍ତ୍ତ୍ୟ ଗସ୍ତରେ ଯାଇ କାଲ ହୋଇ ଗଲଣିକି ? ତୁମକୁ କେତେଆଡ଼େ ଖୋଜିଲିଣି । ଘଣ୍ଟାଏ ହେଲା ହ୍ୟାଲୋ ହ୍ୟାଲୋ ହେଉଛି । କୁଆଡ଼େ ଯାଇଥିଲ ? ଶୀଘ୍ର ପଳେଇ ଆସିବ କହି ଗଲଣି ତ ଗଲଣି ତୁମର ପତ୍ତା ବି ମିଳୁନି ।

ଇନ୍ଦ୍ର କିଛି କହିବା ପୂର୍ବରୁ ଶଚୀ ଦେବୀ ପୁଣି କହିଲେ—ହଉ ଶୁଣ; ମୁଁ କାଲି ସକାଳୁ ଯାଇ ମର୍ତ୍ତ୍ୟରେ ପହଞ୍ଚୁଛି । ମୋ ପାଇଁ ସବୁ ବନ୍ଦୋବସ୍ତ କରି ରଖିଥିବ । ଏକା ଏକା ଗସ୍ତରେ ଯାଇ ବେଶ୍ ମଜା ମାରୁଛ । ଇନ୍ଦ୍ର ତାଙ୍କ କଥା ଶୁଣି କାତର ହୋଇ କହିଲାବେଳକୁ ଶଚୀ ଦେବୀ ଠୋ ଠା କରି ଏମିତି କହିଲେ ଯେ ଇନ୍ଦ୍ର ଚୁପ୍ ହୋଇଗଲେ । ତେଣୁ ସେ ବାଧହୋଇ କହିଲେ ହଉ ହେଲା କାଲି ସକାଳୁ ସକାଳୁ ଜଗନ୍ନାଥ ଅଧିଷ୍ଠିତ ଓଡ଼ିଶା ପ୍ରଦେଶର ରାଜଧାନୀ ଭୁବନେଶ୍ୱର ସେକ୍ରେଟାରିଏଟ ସାମ୍ନା ପ୍ୟାରେଡ଼ ପଡ଼ିଆରେ ଅବତରଣ କରିବ । ଏଠାରେ ମଧ୍ୟ ଦରକାରବେଳେ ମର୍ତ୍ତ୍ୟର ବଡ ବଡ଼ ଇନ୍ଦ୍ର ଶଚୀ ହେଲିକପ୍‌ଟରରେ ଅବତରଣ କରନ୍ତି । ପ୍ରଶସ୍ତ ପଡ଼ିଆ ପଡ଼ିଛି ତୁମ ଯାନ ଅବତରଣ କରିବାକୁ ।

ଶଚୀଦେବୀ ଇନ୍ଦ୍ରଙ୍କଠାରୁ ଜାଗାର ନାଁ, ଟାଇମ୍ ସବୁ ଟିପି ନେଲେ । ସେଇ ହିସାବରେ ପୁଷ୍ପକଯାନର ଡ୍ରାଇଭରକୁ ବୁଝାଇ ନଦେଲେ ସେ ଏପଟେ ସେପଟେ ଲଗେଇ ଦେଲେ, ଅସୁବିଧାରେ ପଡ଼ିବେ । ନୂଆ ଜାଗାତ ।

ଇନ୍ଦ୍ର ସିନା ଶଚୀକୁ ତାଙ୍କ ମର୍ତ୍ତ୍ୟଗସ୍ତରେ ଯୋଗ ଦେବାକୁ କହିଦେଲେ, ମାତ୍ର ତାଙ୍କ ପାଇଁ ରହିବା, ଖାଇବା, ଯିବା ଆସିବା ବ୍ୟବସ୍ଥା ନକଲେ ନଚଳେ । ସେ ସିନା ବ୍ରାହ୍ମଣ ବେଶରେ ଗାମୁଛା ପିନ୍ଧି କାମ ଚଳେଇ ନେଉଥିଲେ, ଏବେ ଶଚୀ ଦେବୀଙ୍କ ପରି ସୁନ୍ଦରୀ ରମଣୀକୁ ଧରି କୁଆଡ଼େ ବାହାରିବେ ? ତାଙ୍କର ଏ ମଫସଲ ବ୍ରାହ୍ମଣିଆ ଚେହେରା ସାଙ୍ଗକୁ ଶଚୀଙ୍କ ଅନିନ୍ଦ୍ୟ ସୁନ୍ଦରୀ ରୂପ ଯୋଗ ହେଲେ, ସେକ୍ରେଟାରିଏଟ, ପ୍ୟାରେଡ଼ ପଡ଼ିଆ ବାହାରକୁ ବାହାରିଲା ବେଳକୁତ ଦଣ୍ଡାବାଲୁଙ୍ଗା, ଲମ୍ବା କାଲିଆ ପିଲ୍ଲା ଧରିବେ । ଦରକାର ପଡ଼ିଲେ, 'ଆବେ ଏ ଟୋକିକୁ କୁଆଡୁ ଉଡ଼େଇ ଆଣିଛୁ' କହି ଦୁ'ଧକ୍କା ପକାଇ ଶଚୀଙ୍କୁ ତାଙ୍କ ପାଖରୁ ଟାଣି ନେଇ ଯିବା ଅସମ୍ଭବ ନୁହେଁ । ତାଙ୍କ ବଜ୍ର ଏଠି ତ କାହିଁ କରିବନି । ଏଠି ଏମାନେ ଯେଉଁ ବମ ବାହାର କଲେଣି, ତାଙ୍କ ବଜ୍ର ଯେ ଶବ୍ଦ ଶୁଣିଲା ମାତ୍ରେ ଆଡ଼କାନିଆ ହୋଇ ପଳାୟନ କରିବ । ପୁଣି କାହାପାଖେ ଗୁହାରି କରିବେ ?

ଅବଶ୍ୟ ଏଠାରେ ଗୁହାରି ଶୁଣିଲା ବାଲା ହେଲେତ ପୁଲିସ । ଦଣ୍ଡା-ବାଲୁଙ୍ଗାଙ୍କ ହାତରେ ଶଚୀ ପଡ଼ିଲେ କୌଣସି ମତେ କୁହାବୋଲା କରି ଫେରେଇ ଆଣି ପାରିବେ । ମାତ୍ର ଶଚୀଦେବୀଙ୍କ ପରି ରୂପବତୀ ହବ ପୁଲିସ ବାଲାଙ୍କ ହାତରେ ପଡ଼ି ଥରେ ଥାନାକୁ ଯାଆନ୍ତି, ତାହେଲେ କଥା ସରିଲା । ଶଚୀଦେବୀ ତାଙ୍କ ସ୍ତ୍ରୀ ବୋଲି ମର୍ତ୍ତ୍ୟରେ ତାଙ୍କ ପାଖେ କି ପ୍ରମାଣ ଅଛି ? ପୋଲିସବାଲାତ 'ପ୍ରମାଣ' ନ ପାଇଲେ କିଛି ଜିନଷ ଜିମାରେ ଦିଅନ୍ତିନି । ସେ ହଜିଯାଇଥିବା ଗାଈ, ବଳଦ,

ଛେଲ କ ମଣିଷ ହୁଅନ୍ତୁ ତାଙ୍କୁ ମର୍ତ୍ତ୍ୟରେ ବା ଚହ୍ନୁଚ୍ଛି କଏ ଯେ, ତାଙ୍କ ପକ୍ଷରେ ପ୍ରମାଣ ଦେବ ? ଶେଷକୁ ପ୍ରମାଣ ଅଭାବରୁ ଶଚୀ ଦେବୀ ଥାନାରୁ ଖଲ୍‌ଳ ନହୋଇ ଥାନା ବଡ଼ ବାବୁ ଜିମାରେ ରହିବେ, ଯେପରି ହଜିବା ଗାଈ ବଡ଼ ବାବୁଙ୍କ ଘରେ ଲାଳନ ପାଳନ ହୁଅନ୍ତି । ଇନ୍ଦ୍ର ଏସବୁ କଥା ଭାବିଲାବେଳକୁ ତାଙ୍କ ମୁଣ୍ଡଟା କେମିତି ଗୋଳମାଳିଆ ଧରିଲା । କୁଆଡ଼େ ଯିବେ, ପୁଣି ମାଇକିନିଆମାନଙ୍କୁ ସାଙ୍ଗରେ ଧରିଲାମ ନେ—ପଡ଼ିଲା ବିପଦ ।

## ( ୪୪ )

ସ୍ୱର୍ଗରୁ ଶଚୀଦେବୀ ଆସି ମର୍ତ୍ତ୍ୟ ଗସ୍ତରେ ଯୋଗଦେବା କଥା ଶୁଣି, ଇନ୍ଦ୍ରଙ୍କ ମୁଣ୍ଡ ପୂରା ଘାବରେଇ ଯାଇଥିଲା । ବୁଝନ୍ତୁ, ଏଇଟା ତ ସ୍ୱର୍ଗ ନୁହେଁ ମର୍ତ୍ତ୍ୟ ; ଏଠାରେ ଗୋଟେ ମାଇକିନିଆକୁ ସାଙ୍ଗରେ ନେଇ ଗସ୍ତ କରିବା କଅଣ ସହଜ !

ହଠାତ୍ ତାଙ୍କର ମନେ ପଡ଼ିଲା କୁବେରଙ୍କ କଥା । ପଇସା ତ ନହାତି ଦରକାର ! ସଙ୍ଗେ ସଙ୍ଗେ ଖବର ଟ୍ରାନସମିଟ କଲେ ।

କୁବେର, ଇନ୍ଦ୍ରଙ୍କ ଅବସ୍ଥା ବୁଝି କହିଲେ କିଛି ଚିନ୍ତା କରନ୍ତୁ ନ ଆଜ୍ଞା, ସଙ୍ଗେ ସଙ୍ଗେ ଟଙ୍କା ପଇସା ଯାହା ଦରକାର ପଠାଇ ଦେଉଛି । ଆପଣ ଯେଉଁଠି ବସିଥାନ୍ତୁ ।

ଇନ୍ଦ୍ର କିଛି ସମୟ ଅପେକ୍ଷା କଲାପରେ ପୁଷ୍ପ ସମୁଦ୍ର କୂଳ ଦେଇ, କୁବେରଙ୍କ 'ଗୃହ' ଇନ୍ଦ୍ରଙ୍କ ଆଗରେ ଉଭାହୋଇ ଟଙ୍କା ପଇସା, ସୁନା ରୂପା—ଯାହା ଦରକାର ଦେଇଗଲେ ।

ହାତରେ ପଇସା ପଡ଼ିଲା ପରେ ଇନ୍ଦ୍ରଙ୍କ ମୁଣ୍ଡରେ ବୁଦ୍ଧି ପଶିଲା । ଭାବିଲେ, ଏଣେ ତେଣେ, ଧର୍ମଶାଳା କି କାହା ବାରଣ୍ଡା, ଦୋକାନ ଘରେ ତ ଶଚୀଙ୍କୁ ଧରି ରହି ହବନି । ଭଲ ପାଞ୍ଚତାରକା ହୋଟେଲରେ ରହିବାକୁ ପଡ଼ିବ । ପାଞ୍ଚ ତାରକା ହୋଟେଲର ତ ଆଉ ଅଭାବ ନାହିଁ ! ମାତ୍ର ସେଠାକୁ ଯିବାକୁ ହେଲେ ସେଇପରି ପୋଷାକ ଦରକାର ।

ସେ ସଙ୍ଗେ ସଙ୍ଗେ ଚାଲିଲେ ଓଡ଼ିଶା ନମ୍ବର ସାହୁବାବୁଙ୍କ 'ବ୍ୟୁରେକ୍ରାଟ୍' ଟେଲରିଂ ଦୋକାନକୁ । ଧୋତି ପିନ୍ଧା ବ୍ରାହ୍ମଣଙ୍କୁ ଦେଖୁ ଦେଖୁ ସାହୁବାବୁ ନାକ ଟେକିଲେ । ଇନ୍ଦ୍ର, ତାଙ୍କ କଥା ଠଉରେଇ କହିଲେ—କିଛି ଚିନ୍ତା କରନ୍ତୁ ନ ଆଜ୍ଞା ! କାହାର ଯଦି ମୋ ମାପକୁ ଗୁଡ଼ିଏ ସୁଟ୍ ତିଆରି ହୋଇ ଆପଣଙ୍କ

ଦୋକାନରେ ତେଲଭର ପାଇଁ ଟଙ୍କା ହୋଇଛୁ, ଦେଇ ଦଅନ୍ତୁ । ସେଥିପାଇଁ ମୁଁ ଡବଲ୍ ଦାମ ଦେବ ।

ସାହୁ ପୁଅ ପୂରା ବ୍ୟବସାୟୀ । ସଙ୍ଗେ ସଙ୍ଗେ ଇନ୍ଦ୍ରଙ୍କ ଆଗ ପଛ ମାପ କରି ଗୋଟେ ହାଲ ସୁଟ୍ ବାହାର କରଦେଲେ । ମନେ ମନେ ଭାବିଲେ, ସୁଟ୍ କନା କେଉଁ ବା ଅଭାବ ? ଏବେ କଳାମନ୍ଦିରକୁ ଲୋକ ପଠାଇ ନେଇ ଆସିବେ, ମାପ ତ ଅଛୁ, କରଦେବେ । ଡ଼ବଲ ଦାମ୍ ଦବାକୁ ବ୍ରାହ୍ମଣ କହୁଚ ଯେତେବେଳେ ଏମିତି ଗୋଟେ ଗରାଖ ଛାଡ଼ିବା ଉଚିତ ହବନି ।

ସୁଟ୍ ଧରି ଇନ୍ଦ୍ର ସାହୁ ବାବୁଙ୍କ ଦୋକାନରୁ ବାହାରି, ମାଷ୍ଟର କାଣ୍ଟିନ ଛକରୁ ହଲେ କଳା ଚଷମା, ଗୋଟେ ଫେଲଟ୍ କ୍ୟାପ କିଣି ନେଲେ ।

ତା'ପର ଦିନ ଭୋରୁ ଭୋରୁ ଇନ୍ଦ୍ର ସେକ୍ରେଟାରିଏଟ୍ ସାମ୍ନା ପାଟଲୀ ଗଛ ମୂଳେ ନୂଆ ସୁଟ୍, ଚଷମା, ଫେଲ୍ଟ କ୍ୟାପ୍ ପିନ୍ଧି ଶଚୀ ଦେବୀଙ୍କୁ ଅପେକ୍ଷା କରିଥାନ୍ତି, ଏଇ ସମୟରେ ଶଚୀ ଦେବୀ ସ୍ୱର୍ଗଯାନରୁ ପଡ଼ିଆ ମଝିରେ ଅବତରଣ କଲେ । ଅବତରଣ କଲାପରେ ଡ୍ରାଇଭରକୁ ଫେରିଯିବାକୁ ନିର୍ଦ୍ଦେଶ ଦେଇ ଇନ୍ଦ୍ରଙ୍କୁ ଖୋଜିଲେ ।

ସକାଳୁ ସକାଳୁ ନିଶୁନ ପଡ଼ିଆ । କାହାକୁ ନପାଇ ଶଚୀ ଭାବିଲେ, "ମଲା, ଏଠି କଅଣ ସବୁ ଭୁଲି ଗଲେନା କଅଣ ?

ଏତିକିବେଳେ ଇନ୍ଦ୍ରଙ୍କ ଖଙ୍କାରଖାଇ ଶବ୍ଦ ଶୁଣି ଶଚୀ ଲେଉଟି ଦେଖିଲେ, ଇନ୍ଦ୍ର ପୂରା ହିନ୍ଦୀ ଫିଲ୍ମ ସ୍ମଗଲର ପରି ଗଛ ତଳେ ଠିଆ ହୋଇଛନ୍ତି । ସେ ପାଖକୁ ଯାଇ ପଚାରିଲେ "କିଏ, ତୁମେ ଇନ୍ଦ୍ର ନା ଆଉ କିଏ ?"

ଇନ୍ଦ୍ର ତାଙ୍କ କଥା ଶୁଣି ଗମ୍ଭୀର ହୋଇ କହିଲେ 'କଅଣ ଚିହ୍ନି ପାରୁନ ? ବୁଝିଲ, ଏଇଟା ମର୍ତ୍ତ୍ୟ; ସ୍ୱର୍ଗ ନୁହେଁ ଯେ ଜରିଲଗା ପାଟ ପତନି ପିନ୍ଧି ଲଙ୍ଗୁଡ଼ ଘୋଷାରି ଘୋଷାରି ବୁଲୁଥିବ । ଦେଖ, କମିତିଆ ଜିଗ୍‌ଜାମ୍ କନାର ସୁଟ୍ । ସୁନ୍ଦର ଗାଭାସ୍କର, ଅମିତାଭ ବଚନ ଏକୁ ପିନ୍ଧି ବୁଲୁଛନ୍ତି ମ !

ତାଙ୍କ କଥାଶୁଣି ଶଚୀ ଦେବୀ କହିଲେ—ମଲା, ସେ ଗୁଡ଼ାକ କିଏମ ? ଆହେ ତୁମେ ଇନ୍ଦ୍ର ଟି ? ଏ ଅଧାପୂରା ପୋଷାକ ପିନ୍ଧି ଏ ଗଛ ମୂଳଟାରେ ଠିଆ ହୋଇଛ କଅଣ ପାଇଁ ?

ଇନ୍ଦ୍ର କହିଲେ, ପାଟି କରନି । ତୁମପାଇଁ ମାଣିଆବନ୍ଧ ମଠା ଆଣିଛି । ଏ ସ୍ୱର୍ଗ ପୋଷାକ ସବୁ ଖୋଲ । ଏବେ ଭୋର ହୋଇଛି ବୋଲି - ଲୋକ କେହି

ତୁମକୁ ଦେଖି ନାହାଁନ୍ତି । ନହେଲେ ଯାହାପାଟିର ସ୍ୱାମୀ ପର କହି ଦେଉ ଥାଆନ୍ତେଣି ।

ଶଚୀ କିଛି କହିବା ପୂର୍ବରୁ ଇନ୍ଦ୍ର, ତାଙ୍କ ଦେହରେ ମାଣିଆବନ୍ଧ ସିଲ୍କ ଉପ୍ରବୁଟା କୁମ୍ଭପକା ଶାଢ଼ୀଟା ଗୁଡ଼ାଇ ଦେଲେ । ଶଚୀ ତରବରରେ ଶାଢ଼ୀଟା ପିନ୍ଧି ପକାଇଲା ପରେ, ତାଙ୍କ ଦେହରେ ଏକ ପ୍ରକାର ନୂତନଭାବ ସୃଷ୍ଟି ହେଲା । ସେ ଇନ୍ଦ୍ରଙ୍କ ହାତ ଉପରେ ହାତରଖି ରାସ୍ତାକୁ ବାହାରିଲେ ।

( ୪୪ )

ପ୍ୟାରେଡ଼ ପଡ଼ିଆରୁ ବାହାରି ଇନ୍ଦ୍ର ଟ୍ୟାକ୍‌ସି ଷ୍ଟାଣ୍ଡ ପାଖକୁ ଯାଇ, ଟିକିଏ ଦୂରରୁ ଷ୍ଟାଇଲ ମିଶା ସ୍ୱରରେ ଡ଼ାକିଲେ—ଟ୍ୟାକ୍‌ସି !

ପଗ୍ ଆମ୍ବ ଟାକୁଆକୁ ରହଣିଆ ମାଛି ବେଢ଼ିଲା ପରି, 'ଇନ୍ଦ୍ର' ଆଉ ଶଚୀ ଦେବୀଙ୍କୁ ଦେଖି ଦେଖି ଟୋକାଳିଆ ଟ୍ୟାକ୍‌ସି ଡ୍ରାଇଭରମାନେ ପେଁ ପାଁ ଭେଁ ଭାଁ କରି ତାଙ୍କ ଗାଡ଼ି ବାହାର କଲେ । ତାଙ୍କ ଭିତରୁ କିଏ କହୁଥାଏ, ତେଲୁଗୁ ଦେଶମ୍ ଫିଲ୍ମଷ୍ଟାର ଅସି କଲାଙ୍କ ଷ୍ଟୁଡ଼ିଓକୁ ଯିବାକୁ ବସିଛି ବୋଧେ । ସାଙ୍ଗରେ ଯେ ଅଛି, ଜୟପ୍ରଦା କି ଶ୍ରୀଦେବୀ ହେଲାପରି ଜଣା ପଡ଼ୁଛି । ଆଉ ଜଣେ କହୁଥାଏ ନାହିଁବେ, ମାଡ୍ରାସୀ ଚଳଚ୍ଚିତ୍ର ନାୟକ ସଙ୍ଗରେ ନୂଆ ହିରୋଇନ୍ ।

ଗୋଟେ ନୂଆ ଟ୍ୟାକ୍‌ସିରେ ବସି, ଇନ୍ଦ୍ରଦେବ ଆଉ ଶଚୀଦେବୀ ପାଞ୍ଚ ତାରକା ହୋଟେଲକୁ ଗଲେ । କିଛି ସମୟ ପରେ ଗୋଟେ ବଡ଼ ହୋଟେଲ ମଧ୍ୟରେ ପଶୁ ପଶୁ ଶଚୀଙ୍କ ଆଖି ହୋଟେଲ ଭିତରେ ଏବଂ କାନ୍ଥରେ ମଢ଼ା ଯାଇ- ଥିବା ସୁନ୍ଦର ନାରୀ ମୂର୍ତ୍ତିମାନଙ୍କ ଉପରେ ପଡ଼ିଲା । ସେ ଟିକିଏ ମୂର୍ତ୍ତିମାନଙ୍କ ପାଖକୁ ଯାଇ ଗୁହାଁଗୁହିଁ କଲେ । ତାଙ୍କ ସଙ୍ଗେ ନିଜେ ପିନ୍ଧିଥିବା ଶାଢ଼ୀ ଇତ୍ୟାଦିକୁ ମ୍ୟାଚ କରାଉଥାନ୍ତି ।

ଦୁ'ତିନିଟା ହୋଟେଲ ଦେଖିଲା ପରେ, ଗୋଟେ ହୋଟେଲରେ ରହିବାକୁ ସେମାନେ ନିଷ୍ପତ୍ତି କଲେ । ରୁମ୍ ଭିତରକୁ ଗଲା ପରେ ଶଚୀ ପଚାରିଲେ ହଇହେ— ଏ ହୋଟେଲ ଗୁଡ଼ାକର ଦୁଆର ମୁହଁରୁ ଆରମ୍ଭ କରି, ଘର ଭିତର ପର୍ଯ୍ୟନ୍ତ ସବୁ ଠାରେ ଏ ଅର୍ଦ୍ଧନଗ୍ନ ନାରୀମୂର୍ତ୍ତି କଅଣ ପାଇଁ ରଖିଛନ୍ତି ? କେଉଁଠି ଫଟୋ ତ, କେଉଁଠି ପଥର ମୂର୍ତ୍ତି । କାହିଁ, କାର୍ତ୍ତିକେୟ, ଗଣେଶଙ୍କ ପରି ସୁନ୍ଦର ଟୋକାଙ୍କ ମୂର୍ତ୍ତି ତ କେଉଁଠି ଆଖିରେ ପଡ଼ିଲାନି ? ଏ ହୋଟେଲେ ମାନଙ୍କରେ ବେଶି ଯରମାଣରେ ନାରୀ ମିଳନ୍ତି ନାଁ । କଅଣ ?

ଇନ୍ଦ୍ର ତାଙ୍କ କଥା ଶୁଣି କହିଲେ, ତୁମେ ଆସୁ ଆସୁ ଏତେ କଥା ଉପରେ

ଇନ୍‌କ୍ୱାଏରି ଆରମ୍ଭ କଲଣି ? ଶୁଣ ଏ ଓଡ଼ିଶାଦେଶ ଦିନେ କଳା ସଂସ୍କୃତି ଲାଗି ପୃଥିବୀ ବିଖ୍ୟାତ ଥିଲା । ଏହାର ପ୍ରତ୍ୟେକ ମନ୍ଦିର ଗାତ୍ରରେ କଳା ନିପୁଣତାର ପରାକାଷ୍ଠା ଫୁଟି ଉଠିଥିଲା । ତୁମେ ଯେତେବେଳେ କୋଣାର୍କ, ପୁରୀ, ରାଜରାଣୀ, ଲିଙ୍ଗରାଜ ମନ୍ଦିର ଦେଖିବ, ସେତେବେଳେ ନିଜେ ବୁଝି ପାରିବ ଓଡ଼ିଆ କାରିଗର-ମାନଙ୍କ କୃତି । ମନ୍ଦିର ମାନଙ୍କରେ ଏ ଯେଉଁ ମୂର୍ତ୍ତିମାନ ଦେଖିବ, ସେ ସବୁ ମୂର୍ତ୍ତି ମନ୍ଦିର ଗାତ୍ରରେ ପ୍ରତିଷ୍ଠା ମୂଳରେ ଧର୍ମମୂଳକ, ସାମାଜିକ ଗୂଢ଼ତତ୍ତ୍ୱର ନିଗୂଢ଼ ରହସ୍ୟ ଅନ୍ତର୍ନିହିତ ରହିଛି । କିନ୍ତୁ ବର୍ତ୍ତମାନ ଏହି ପଞ୍ଚତାରକା ହୋଟେଲମାନଙ୍କରେ ସେ ସବୁ ମୂର୍ତ୍ତିମାନଙ୍କର ଫଟୋଚିତ୍ରର ମଡ଼େଲ ଆଣି ରଖିବାର ଉଦ୍ଦେଶ୍ୟ କଅଣ ଓଡ଼ିଆ ପୁଅମାନେ ଜାଣନ୍ତିକି ? ମୂର୍ତ୍ତି ପ୍ରଦର୍ଶନ ଓଡ଼ିଆ କଳାକାରଙ୍କ ମାନ ବଢ଼େଇବାକୁ ରଖା ଯାଇନାହିଁ । ବିଦେଶୀ ପର୍ଯ୍ୟଟକ, ଦେଶୀ ମଦ୍ୟପଙ୍କ ଆଖିକୁ ଲାଖି ରଖିବା ପାଇଁ ବନ୍ଦୋବସ୍ତ କରାଯାଇଛି । ଏସବୁ ନୈସର୍ଗୀସ୍ଥ ସୌନ୍ଦର୍ଯ୍ୟପୂର୍ତ୍ତି ବସ୍ତୁମାନଙ୍କର ସ୍ଥାନ କଅଣ ଏହିପରି ଚଳଚଞ୍ଚଳ କ୍ଷଣଭଙ୍ଗୁର କୋଳାହଳମୟ ସ୍ଥାନ !

ଲୋକ ଦେଖାଣିଆକୁ ହୋଟେଲ ମାଲିକମାନେ କହୁଛନ୍ତି ଓଡ଼ିଶାର କଳା, ସ୍ଥାପତ୍ୟ, ସଂସ୍କୃତିକୁ ଆମେ ଆମ ହୋଟେଲ ଭିତରେ ସୁରେଇ ରଖି ହଜାର ହଜାର ଦର୍ଶକଙ୍କ ଆଖି ଆକର୍ଷଣ କରି, ଓଡ଼ିଆଙ୍କ ମାନ ବଢ଼ାଉଛୁ । ଯାହାଠାରୁ ବଡ଼ ଓଡ଼ିଆଙ୍କ ପାଇଁ ଆଉ କଣ କରି ପାରିବୁ ? ମାତ୍ର ସେମାନଙ୍କ ମନୋଭାବକୁ ଭିତରିଆ କରି ବୁଝିଲେ, ଜାଣିପାରିବ ଯେ ଓଡ଼ିଆ ସଂସ୍କୃତି, କଳା, ସ୍ଥାପତ୍ୟ ବିଷୟ ଜାଣିବାକୁ ସେମାନେ ଥରେମାତ୍ର ଚେଷ୍ଟା ନକରି, ବିକୃତ ମନୋଭାବ ନେଇ ଏପରି ମୂର୍ତ୍ତି-ମାନଙ୍କୁ ପ୍ରଦର୍ଶନ କରୁଛନ୍ତି । ଯଦି ପରୀକ୍ଷା କରିବାକୁ ଚାହଁ, ଏବେ ହୋଟେଲ ରୁମରୁ ବାହାରି, ହୋଟେଲରେ କାମ କରୁଥିବା ମ୍ୟାନେଜରଠାରୁ ଆରମ୍ଭ କରି ମାଲିକ ପର୍ଯ୍ୟନ୍ତ ସମସ୍ତଙ୍କୁ ପଚାର—କେହିହେଲେ କୌଣସି ମୂର୍ତ୍ତି, କିମ୍ବା ଫଟୋ ଚିତ୍ର ବିଷୟରେ କିଛି କହି ପାରିବେନି । ସୁନ୍ଦରୀ ସ୍ତ୍ରୀଙ୍କ ଅର୍ଦ୍ଧନଗ୍ନ ମୂର୍ତ୍ତି ହିଁ ସେମାନଙ୍କ ପାଖେ ସବୁ କିଛି । ଏ ଓଡ଼ିଆ ବୁଦ୍ଧିମାନେ ବୁଝି ନାହାନ୍ତି, ବେଳ ପଡ଼ିଲେ ବୁଝିବେ ଯେ !

ସେ ଯାହାହେଉ, ଏବେତ ତୁମେ ଆସି ମର୍ତ୍ତ୍ୟରେ ପହଞ୍ଚିଗଲଣି । ମୁଁ ସିନା ଏକୁଟିଆରେ ଗସ୍ତ କରୁଥିଲି, ଏବେ ସାଙ୍ଗହୋଇ ଗସ୍ତରେ ବାହାରିବା । ବହୁ କଥା ଦେଖିବ, ବହୁ କଥା ଶୁଣିବ, ବହୁ କଥା ଜାଣିବ, କେବଳ ଟିକିଏ ଧୈର୍ଯ୍ୟ ଧରିଲେ ହେଲା ।



